# ଅନେକରେ ଏକ

ପ୍ରଫେସର ଶତ୍ରୁଘ୍ନ ନାଥ



**ଅନେକରେ ଏକ**—ଲେଖକ : ପ୍ରଫେସର ଶତ୍ରୁଘ୍ନ ନାଥ, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୭୫୩୦୦୨, ପ୍ରଚ୍ଛଦ : ବିଜୟ ପ୍ରଧାନ, ଡି.ଟି.ପି. : ୟୁନିଟେକ୍, କଟକ, ମୁଦ୍ରଣ : ରୟାଲ ହାଫ୍‌ଟୋନ କୋ., କଟକ ।



**ANEKARE EKA**–Author :Prof. Satrughna Nath, Publisher : Sahadev Pradhan, *Friends' Publishers*, Binodbehari, Cuttack-753 002, Orissa (India), D.T.P. : Unitech, Cuttack, Cover Design : Bijaya Pradhan, Printer : Royal Halftone Co., Cuttack.

First Edition : **2000**

Price : **Rs. 55**

ISBN 81-7401-320-2

# ନିଜ ତରଫରୁ

ଅସୁମାରି ଓ ବିଚିତ୍ର ସୃଷ୍ଟି, କିନ୍ତୁ ସ୍ରଷ୍ଟା ଏକ । 'ଆଦ୍ୟରୁ ଅନାଦି ଏକ' । ଜୀବ ଅନେକ, ଆତ୍ମା ଏକ । ପ୍ରାଣୀକୁଳ ଚର ଅଚର, ଉଡ଼ା, ବୁଡ଼ା—ଚଉଖାନୀ, ବିଚିତ୍ରବର୍ଣ୍ଣା ଓ ବିଭିନ୍ନ । ସଚ୍ଚିଦାନନ୍ଦ ସତ୍ତା ସବୁଥିରେ ପୂରି ରହିଛନ୍ତି, ଏକ, ଅଦ୍ୱିତୀୟ, ବିଶ୍ୱୈକାତ୍ମତା, ବିଭେଦ ମଧ୍ୟରେ ଅଭେଦ । ଯାହାନାହିଁ ଭାରତେ ତାହା ନାହିଁ ଜଗତେ—ଏହି ତୁଣ୍ଡ କଥାଟି ସତ୍ୟ ପ୍ରମାଣିତ ହୁଏ ବିଶାଳ ଭାରତରେ ଉତ୍ତରରେ ନଗଧିରାଜ ଓ ଅନ୍ୟ ତିନି ଦିଗରେ ମହୋଦଧି ପରିବେଷ୍ଟିତ ଭୂଖଣ୍ଡର ବିଭିନ୍ନ ପ୍ରାକୃତିକ, ସାମାଜିକ ଓ ଅର୍ଥନୈତିକ ଜୀବନରେ । ଏକକାଳୀନ ବିଭିନ୍ନ ସ୍ଥାନର ଜଳବାୟୁ, ଭୂପ୍ରକୃତିର ଗଠନ ଓ ଖାଲଢ଼ିପର ପାର୍ଥକ୍ୟ ଆଣିଦିଏ ଅଧିବାସୀମାନଙ୍କ ଖାଦ୍ୟ, ବେଶପୋଷାକ, ବ୍ୟବସାୟ ଆଦିର ଅସମାନତା । ଧର୍ମ, ଭାଷା ଓ ପ୍ରଦେଶ ନାନା ପ୍ରକାରର । ଏହା ସତ୍ତ୍ୱେ ଅନ୍ତଃସ୍ୱର ଭାବରେ ଏକ ଧ୍ୱନି ଓ ସାଂସ୍କୃତିକ ଚେତନା, ଅନେକରେ ଏକ । ଏହାହିଁ ଭାରତୀୟତା, ଆମେ ସବୁ ଭାରତୀୟ । ଏକ ଆତ୍ମା ଭାରତର । ଆକୁମାରୀ ହିମାଳୟ ଏକ, ଏହାହିଁ ଆମ ରାଷ୍ଟ୍ର ଚେତନା ଓ ରାଷ୍ଟ୍ରୀୟ ସଂହତି । ଏହା ଆମକୁ ସୁଦୃଢ଼ କରୁଛି । ଆମେ ବଳିଷ୍ଠ ହୋଇଛୁଁ । ଆମ ଉଦାହରଣ ହେଉଛି ମଇଁଷି ଶିଂଘ ଫଟା କିନ୍ତୁ ଯୁଝିଲା ବେଳକୁ ଗୋଟା ।

ବିଭିନ୍ନ ସମୟରେ ପ୍ରକାଶିତ ଓ ଏହି ପୁସ୍ତକ 'ଅନେକରେ ଏକ'ରେ ସନ୍ନିବେଶିତ ପ୍ରବନ୍ଧଗୁଡ଼ିକୁ ଠାଏ ଠାଏ ପରିବର୍ତ୍ତନ କରିଛି । ତଥାପି ସେସବୁ ପତ୍ରପତ୍ରିକାର ସମ୍ପାଦକମାନଙ୍କ ନିକଟରେ କୃତଜ୍ଞତା ଜଣାଉଛି ।

ମୋର ପୁରାତନ ଛାତ୍ର, ପ୍ରଖ୍ୟାତ ତଥା ପୁରସ୍କୃତ ପ୍ରଧାନ ଶିକ୍ଷକ ଶ୍ରୀମାନ ପ୍ରଫୁଲ୍ଲ କୁମାର ବିଶୋଇ ଏହି ସଙ୍କଳନର ମୂଳଲେଖାକୁ ସଜାଡ଼ିଛନ୍ତି ଓ କେତେକ ସ୍ଥାନରେ ପୁନର୍ଲିଖନ କରିଛନ୍ତି । ମୁଁ ତାଙ୍କୁ ମୋ ଆଶୀର୍ବାଦ ଜଣାଉଛି ।

—ଶତ୍ରୁଘ୍ନ ନାଥ

# ସୂଚୀ





# ଧର୍ମନିରପେକ୍ଷ ରାଷ୍ଟ୍ର ଓ ସ୍ୱାଧୀନ ନାଗରିକ

ଧର୍ମାଚରଣ ହେଉଛି ଅନ୍ତରର ଆନ୍ତରିକ ଅନୁଭୂତି । ହୃଦିକନ୍ଦରର ଆବେଗମୟ ଆହ୍ୱାନ । ବିବେକର ଡାକ । ବାହ୍ୟ ଏବଂ ଆନ୍ତର ଦିଗରୁ ସ୍ୱେଚ୍ଛାକୃତ ଅଭିମୁଖିତା । ଜୀବ ସୃଷ୍ଟିରେ ଜୀବନର ସଞ୍ଚାର କିଏ ଓ କାହିଁକି କରିଛନ୍ତି ? ଏହି ଜଟିଳ ପ୍ରଶ୍ନର ଚିରନ୍ତନ ଅନୁଶୀଳନ । ଏହି ଅନୁଶୀଳନ ଜୀବନବ୍ୟାପୀ ଓ ପରମ୍ପରାକ୍ରମେ ଚାଲିଛି ଓ ଚାଲିବ । ତେଣୁ ଏହା ବ୍ୟକ୍ତି-ସାପେକ୍ଷ । ଅତଏବ ଏଥିପାଇଁ ନାଗରିକ ସ୍ୱାଧୀନ ହେବା ସ୍ୱାଭାବିକ । ଧର୍ମାଚରଣ କ୍ଷେତ୍ରରେ ନାଗରିକର ସ୍ୱାଧୀନତାକୁ ସୁନିଶ୍ଚିତ ଓ ସୁରକ୍ଷିତ କରିବାପାଇଁ ରାଷ୍ଟ୍ର ଧର୍ମନିରପେକ୍ଷ ହେବା ଆବଶ୍ୟକ । କାରଣ ରାଷ୍ଟ୍ର ଯଦି ନିର୍ଦ୍ଦିଷ୍ଟ ଧର୍ମଭିତ୍ତିକ ହୁଏ, ତେବେ ନାଗରିକ-ସ୍ୱାଧୀନତା ସଙ୍କୁଚିତ ଓ ସୀମିତ ହୋଇଯାଏ । ବସ୍ତୁତଃ ସ୍ୱାଧୀନତା ରହେ ନାହିଁ କହିଲେ ଚଳେ । ସୁତରାଂ ଧର୍ମ-ନିରପେକ୍ଷ ରାଷ୍ଟ୍ର ଓ ସ୍ୱାଧୀନ ନାଗରିକ ପରସ୍ପର ସହାୟକ । ଜୀବନର ସମୃଦ୍ଧି ଓ ସାର୍ଥକତା ଏପରି ସ୍ଥଳରେ ସହଜସିଦ୍ଧ ହୁଏ ।

ଏହି ପୁସ୍ତକରେ ଉତ୍କଳମଣି ଗୋପବନ୍ଧୁଙ୍କ ଚିନ୍ତା ସ୍ମରଣୀୟ–

*ସ୍ୱାଧୀନ ମାନବର ଜନ୍ମ ଅଧିକାର*

*ସ୍ୱାଧୀନ ଭାଷଣ ଆଉ ସ୍ୱାଧୀନ ବିଚାର*

*ସ୍ୱାଧୀନ ଜୀବନ ପୁଣି ସ୍ୱାଧୀନ ସମିତି*

*ଚାରିସ୍ତମ୍ଭେ ମାନବର ସମାନ ସଂସ୍କୃତି*

ଆମ ଦେଶର ରାଷ୍ଟ୍ର କଳ୍ପନା ଓ ନାଗରିକ-ସ୍ୱାଧୀନତା ସମ୍ବନ୍ଧରେ ଚିନ୍ତା କରାଗଲାବେଳେ ଭାରତୀୟ ଆଦର୍ଶ, ପରମ୍ପରା, ବିଶ୍ୱରେ ଏହି ସମ୍ବନ୍ଧୀୟ କ୍ରମ ପରିବର୍ତ୍ତନ ଓ ଆମ ବାସ୍ତବତା ପ୍ରତି ଦୃଷ୍ଟି ଦେବାକୁ ହେବ । ପ୍ରଥମତଃ ଆମ ରାଷ୍ଟ୍ର ନିର୍ମାତାଗଣ ଭାରତୀୟ ଆଦର୍ଶ ଓ ପରମ୍ପରା ଦ୍ୱାରା ବିଶେଷ ପ୍ରଭାବିତ ହୋଇଛନ୍ତି । ବ୍ୟକ୍ତି ହେଉଛି ଅମୃତର ସନ୍ତାନ । ଜୀବ ସୃଷ୍ଟିରେ ମାନବଜୀବନ ପରମ ଓ ଚରମ ଉତ୍କର୍ଷର ପରିଚାୟକ । ତାର ସମ୍ଭାବନା ଅସୀମ । ତେଣୁ ଜୀବ, ବିଶେଷକରି ମାନବ ପ୍ରତି ସମ୍ମାନ, ସହନଶୀଳତା, ଧୈର୍ଯ୍ୟ ଆଦି ଯୁଗେ ଯୁଗେ ମାନବିକ ସମ୍ପର୍କରେ ପ୍ରକାଶ କରାଯାଇଛି । ପରିବର୍ତ୍ତନ-ସହାୟକ ଆଶା

ଅମାପ ମାତ୍ରାରେ ଆମ ଚିନ୍ତାନାୟକ ତଥା ଜନସାଧାରଣଙ୍କୁ ଅନୁପ୍ରାଣିତ କରିଛି । ପରାଧୀନତାର ଶୃଙ୍ଖଳ ଛିନ୍ନ ହୋଇଗଲେ ସ୍ୱାଧୀନତାର ସୂର୍ଯ୍ୟ ସମସ୍ତ ଅନ୍ଧକାର ଦୂର କରିଦେବ ଓ ଜନଜୀବନ ସମ୍ପୂର୍ଣ୍ଣ ଆଲୋକିତ ହେବ । Constitutent Assemblyରେ ପଣ୍ଡିତ ନେହେରୁଙ୍କ ଭାଷଣ ହେଉଛି ରାଜନୈତିକ ଆବଶ୍ୟକତା ଓ ଆଶାବାଦର ଏକ ଜ୍ୱଳନ୍ତ ଉଦାହରଣ । ସେଥିରୁ କେତୋଟି ପଂକ୍ତି ହେଉଛି :

"There will be no full freedom in this country or in the world as long as a single human being is unfree. There will be no complete freedom as long as there is starvation, hunger, lack of clothing, lack of necessities of life and lack of opportunity of growth for every single human being."

ଗାନ୍ଧୀ, ନେହେରୁ ଆଦି ମନୀଷୀଙ୍କ ସ୍ୱପ୍ନର ଭାରତ ପାଇଁ ସମ୍ପୂର୍ଣ୍ଣ ସ୍ୱାଧୀନତା, ପ୍ରତ୍ୟେକ ନାଗରିକଙ୍କ ପାଇଁ ତଥା ବିଶ୍ୱ ପାଇଁ ଓ ଭାରତ ପାଇଁ । କେବଳ ରାଜନୈତିକ କୃତି ନୁହେଁ, ସାମାଜିକ, ଅର୍ଥନୈତିକ, ସାଂସ୍କୃତିକ ଆଦି ମାନବଜୀବନର ବିଭିନ୍ନ ବିଭାବ ପାଇଁ କୃତି ଓ ପୂର୍ତ୍ତି ଆବଶ୍ୟକ ।

ଦ୍ୱିତୀୟତଃ, ରାଷ୍ଟ୍ରର କଳ୍ପନା ଆଜି ପୋଲିସ ରାଷ୍ଟ୍ର ନୁହେଁ । ଦଣ୍ଡ ଓ ଦମନର ରାଷ୍ଟ୍ର ନୁହେଁ । ଅସ୍ପୃଶ୍ୟତା ପରି ବର୍ଣ୍ଣ ବିଦ୍ୱେଷୀ ମନୋଭାବ ସାମାଜିକ ଓ ଜନ ଜୀବନର କଳଙ୍କ ହୋଇ ରହିଛି । ଏହାକୁ ସମୂଳେ ଉତ୍ପାଟନ କରି ମାନବ ଜୀବନରେ ଅବାଧ ଘାତ ପ୍ରତିଘାତ ଓ ଆତ୍ମନିୟନ୍ତ୍ରଣର ବିକାଶ ପାଇଁ ସୁଯୋଗ ଦେବାରେ କାହାରି ଦ୍ୱିମତ ନାହିଁ । କିନ୍ତୁ ପୋଲିସ ରାଷ୍ଟ୍ରରେ ଶାସନ ଓ ଶାସିତ ମଧ୍ୟରେ ସର୍ବାଧିକ ତଥା କ୍ରମବର୍ଦ୍ଧିଷ୍ଣୁ ଦୂରତା ସୃଷ୍ଟି କରାଯାଇଛି । ଶାସିତର ନିରକ୍ଷରତା, ଦୁଃଖ, ଦୟନୀୟତା ଓ ବ୍ୟଥାକୁ ପୁଞ୍ଜିକରି ଶାସକ ସମୃଦ୍ଧ ହୁଅନ୍ତି । ଏହା ଆଜି ଅବାଞ୍ଛନୀୟ ଓ ଅନାବଶ୍ୟକ ଭାବନା । ଅଥଚ ଆଧୁନିକ ଯୁଗରେ ଜନମଙ୍ଗଳ ରାଷ୍ଟ୍ରର ଭାବନା ସର୍ବସ୍ୱୀକୃତ । ଏହା ଫଳରେ ସାମାଜିକ ଅନ୍ୟାୟକୁ ଦୂର କରାଯାଇ ପାରିବ । ସର୍ବବିଧ ବିଷମତାର ମାତ୍ରା କମାଇ ଦିଆଯାଇ ଅଧିବାସୀଙ୍କ ନୈତିକ ଓ ଭୌତିକ ଉନ୍ନତି ସାଧନ କରାଯାଇପାରିବ । ଏ ପ୍ରକାର ଚିନ୍ତାଧାରା ଭାରତୀୟ ଆଦର୍ଶ ଓ ପରମ୍ପରାର ଏକାନ୍ତ ଅନୁକୂଳ । ଆମ ରାଷ୍ଟ୍ର ସେଥିପାଇଁ ପ୍ରତିଜ୍ଞାବଦ୍ଧ । ଏହାହିଁ ଆମର ବୈଶିଷ୍ଟ୍ୟ ଓ ସର୍ବଜନ ଆଦୃତ । ଏହା ଲକ୍ଷ୍ୟ କରିବାର କଥା ଯେ ଆମ ଦେଶରେ ନାଗରିକ ମୌଳିକ ଅଧିକାର କେବଳ ଘୋଷଣା କରାଯାଇ ନାହିଁ, ଏସବୁକୁ ସ୍ପଷ୍ଟ କରି ସମ୍ବିଧାନର ଅନ୍ତର୍ଭୁକ୍ତ କରାଯାଇଛି । ଏହା କରିବାର ଆବଶ୍ୟକତା ଏହି ଯେ–( ୧ ) ଆମ

ଶାସକବର୍ଗ ନିରଙ୍କୁଶ ଓ ସ୍ୱେଚ୍ଛାଚାରୀ କ୍ଷମତାର ଅଧିକାରୀ ହୋଇପାରିବେ ନାହିଁ, (୨) ରାଷ୍ଟ୍ରର ସାମାଜିକ ଓ ଅର୍ଥନୈତିକ ପ୍ରତିଶ୍ରୁତିଗୁଡ଼ିକୁ କାର୍ଯ୍ୟକାରୀ କରାଯାଇପାରିବ ଓ (୩) ଭାରତର ବିଭିନ୍ନ ସଂଖ୍ୟାଲଘୁ ଶ୍ରେଣୀର ଲୋକମାନଙ୍କ ନିରାପତ୍ତା ଓ ସ୍ୱାର୍ଥର ସୁରକ୍ଷା ପାଇଁ ଧୀରେ ଧୀରେ ନିଶ୍ଚିତ କରାଯାଇ ପାରିବ ।

ତୃତୀୟତଃ, ଭାରତୀୟ ସମାଜରେ ଧର୍ମ, ଭାଷା ଆଦିର ବହୁଳତା ଓ ବିଭିନ୍ନତା ରହିଛି । ଏ ସବୁ ଅବଶ୍ୟ ଆମ ଦେଶରେ ଶାନ୍ତି, ମୈତ୍ରୀ, ପ୍ରୀତି, ପ୍ରଗତି ଓ ସମୃଦ୍ଧିର ଉତ୍ସାହପ୍ରଦ ଭିତ୍ତିଭୂମି ସୃଷ୍ଟି କରେ । କିନ୍ତୁ ସେଥିରେ ଏହା ବ୍ୟବହାର କରାଯାଇ ନ ପାରିଲେ ଅନ୍ତର୍ବିବାଦ, ଦ୍ୱନ୍ଦ୍ୱ ଓ ବିସମ୍ବାଦ ହୋଇପାରେ । ଏହା ଫଳରେ ଆଭ୍ୟନ୍ତରୀଣ ବିଶୃଙ୍ଖଳା ଜାତ ହୁଏ । ଦେଶ ଦୁର୍ବଳ ହୋଇଯାଏ । ଏହାର ପରିଣତି ହୁଏ ବହିଃ ଶତ୍ରୁଙ୍କର ଆକ୍ରମଣ ତଥା ଦେଶର ସ୍ୱାଧୀନତା ଓ ସ୍ୱାଭିମାନ ଘୋର ବିପଦର ସମ୍ମୁଖୀନ ହୁଏ । ଏହାଛଡ଼ା ଆମ ସାଧାରଣ ଜୀବନରେ ଆମେ ସାଧାରଣତଃ ଗଣତନ୍ତ୍ରକୁ ଗ୍ରହଣ କରିଛୁ । ବିଶେଷ କରି ଆମ ରାଜନୈତିକ ବ୍ୟବସ୍ଥାରେ ଗଣତାନ୍ତ୍ରିକ ଢାଞ୍ଚା ଓ ପଦ୍ଧତି ଆମେ ଆଦରି ନେଇଛୁ । ଏଣୁ ଏହା ଅଭିଜ୍ଞତାର ବିଷୟ ଯେ କ୍ଷମତାସୀନ ସଂଖ୍ୟାଗରିଷ୍ଠ ଶାସକବର୍ଗ ସେମାନଙ୍କ ଧର୍ମ ଧାରଣାକୁ କ୍ଷମତାରେ ନଥିବା ସଂଖ୍ୟାଲଘୁ ଲୋକଙ୍କ ଉପରେ ନିଜ କ୍ଷମତା ବଳରେ ଜବରଦସ୍ତ ଲଦିଦେବେ । ଏହା ଭୟଙ୍କର ବିପଦ ସୃଷ୍ଟି କରିବ । ସାମାଜିକ ଅବ୍ୟବସ୍ଥା ଭୀଷଣ ରୂପ ଧାରଣ କରିବ । ତେଣୁ ସମ୍ବିଧାନରେ ବିବେକର ସ୍ୱାଧୀନତାକୁ ସ୍ୱୀକୃତି ଦିଆଯାଇଛି । ଭାରତକୁ ଧର୍ମ-ନିରପେକ୍ଷ ରାଷ୍ଟ୍ର ଭାବରେ ଘୋଷଣା କରାଯାଇଛି । ଧର୍ମ ଦୃଷ୍ଟିରୁ ସଂଖ୍ୟାଲଘୁମାନଙ୍କ ସ୍ୱାର୍ଥର ସୁରକ୍ଷା ପାଇଁ ବ୍ୟବସ୍ଥା କରାଯାଇଛି । ଧର୍ମ-ନିରପେକ୍ଷ ରାଷ୍ଟ୍ରର ଧାରଣା ଅତ୍ୟାବଶ୍ୟକ ହୋଇପଡ଼ିଛି ।

ଏହା ସ୍ମରଣ କରିବାର କଥା ଯେ ୧୯୭୬ ମସିହାରେ ଆମ ସମ୍ବିଧାନର ୪୨ତମ ସଂଶୋଧନ କରାଯାଇ ରାଷ୍ଟ୍ରର ସ୍ୱରୂପରେ 'ସମାଜବାଦୀ ଓ ଧର୍ମନିରପେକ୍ଷ'କୁ ସ୍ଥାନ ଦିଆଗଲା । ଏହା ଫଳରେ ଐକ୍ୟବଦ୍ଧ, ସାର୍ବଭୌମ, ଧର୍ମନିରପେକ୍ଷ, ସମାଜବାଦୀ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ଭାବରେ ଭାରତକୁ ଗଠନ କରିବାର ସ୍ୱପ୍ନ ଓ ଶପଥ ନିଆଯାଇଛି । ସମ୍ବିଧାନର ମୌଳିକ କର୍ତ୍ତବ୍ୟ ଶୀର୍ଷକ ଅଧ୍ୟାୟରେ ସ୍ପଷ୍ଟ ଘୋଷିତ କରାଗଲା ଯେ ଭାରତର ସାର୍ବଭୌମତ୍ୱ, ଏକତା ଏବଂ ଅଖଣ୍ଡତାର ସୁରକ୍ଷା କରିବା ସଙ୍ଗେ ସଙ୍ଗେ ଏସବୁର ଟେକ ରଖିବା ଓ ଧର୍ମ, ଭାଷା, ଅଞ୍ଚଳ କିମ୍ବା ଜନପଦ ଜନିତ ବିଭିନ୍ନତାକୁ ଅତିକ୍ରମ କରି ଭାରତର ଜନସାଧାରଣଙ୍କ ମଧ୍ୟରେ ସୌସାମ୍ୟ ଏବଂ ଭ୍ରାତୃତ୍ୱର ସୌହାର୍ଦ୍ଦ୍ୟକୁ ମଧ୍ୟ ଉତ୍ସାହିତ କରିବା ଭାରତର ପ୍ରତ୍ୟେକ ନାଗରିକଙ୍କର କର୍ତ୍ତବ୍ୟ ହେବ । ଏହି ଘୋଷଣା ବହୁ ଉଚ୍ଚ ପ୍ରଶଂସିତ

ହୋଇଛି ଏବଂ ଏହି ପରିପ୍ରେକ୍ଷୀରେ ଧର୍ମନିରପେକ୍ଷ ରାଷ୍ଟ୍ର ଭାବନା ସମ୍ବନ୍ଧରେ ବିଚାର କରାଯିବ ।

ସମ୍ବିଧାନର ୨୫ରୁ ୨୮ ଧାରାଗୁଡ଼ିକରେ ଧର୍ମ ପାଳନର ସ୍ୱାଧୀନତା ସ୍ଥାନ ପାଇଛି । କେବଳ ବ୍ୟକ୍ତିବିଶେଷ ନୁହେଁ, ଏପରିକି ଧାର୍ମିକ ସମ୍ପ୍ରଦାୟ ମଧ୍ୟ ଏହି ଧର୍ମ ସମ୍ବନ୍ଧୀୟ ସ୍ୱାଧୀନତାର ଅଧିକାର ସାବ୍ୟସ୍ତ କରିପାରିବେ । ସମସ୍ତ ଧର୍ମ ସମାନ ସାମ୍ବିଧାନିକ ସୁରକ୍ଷା ଉପଭୋଗ କରିପାରିବେ ଓ ସେଥିରେ କୌଣସି ଧର୍ମ ପ୍ରତି ଅନୁକମ୍ପା କିମ୍ବା ବାଛବିଚାର କରାଯାଇ ପାରିବ ନାହିଁ । ପ୍ରତ୍ୟେକ ବ୍ୟକ୍ତିଙ୍କ ପାଇଁ ବିବେକର ସ୍ୱାଧୀନତା ସୁନିଶ୍ଚିତ କରାଯାଇଛି । ସ୍ୱାଧୀନ ଭାବରେ ଧର୍ମପାଳନ, ଏହାର ସ୍ୱୀକାର ଓ ପ୍ରସାର ସମ୍ବନ୍ଧରେ ତାଙ୍କ ପାଇଁ ସୁନିଶ୍ଚିତ କରାଯାଇଛି । ଏହା ଅବଶ୍ୟ ସେ ଏପରି କରିବେ ଯଦ୍ୱାରା ସାଧାରଣ ଶୃଙ୍ଖଳା, ସ୍ୱାସ୍ଥ୍ୟ, ନୈତିକତା ଓ ଅନ୍ୟାନ୍ୟ ମୌଳିକ ଅଧିକାର ସମ୍ପୃକ୍ତ ବ୍ୟବସ୍ଥାରେ କୌଣସି ଆଞ୍ଚ ଆଣିବେ ନାହିଁ ।

'ଧର୍ମନିରପେକ୍ଷ'ର ସଂଜ୍ଞା ନିରୂପଣ କରିବା ସହଜସାଧ୍ୟ ନୁହେଁ । ସମ୍ବିଧାନ ମଧ୍ୟ ଧର୍ମର ସଂଜ୍ଞା ସ୍ଥିର କରି ନାହାନ୍ତି । ଏହା ଫଳରେ ଏବାବଦରେ ନାନା ପ୍ରତିକ୍ରିୟା ଓ ପ୍ରସ୍ତାବନା ଦେଖିବାକୁ ମିଳେ । କେତେକ ଏହାର ସମାଲୋଚନା କରିଛନ୍ତି । କେହି କେହି ଭାବବିହ୍ୱଳ ବା ଉଦାସୀନ ହୋଇ ପଡ଼ିଛନ୍ତି, ଅନ୍ୟ କେତେକ ଲୋକ ଆଶାର ଆକାଶକୁସୁମ ତୋଳି ନାହାନ୍ତି । ତଥାପି ସେମାନେ ଧର୍ମନିରପେକ୍ଷ ରାଷ୍ଟ୍ର ଓ ସ୍ୱାଧୀନ ନାଗରିକ ସମ୍ବନ୍ଧରେ ସାମ୍ବିଧାନିକ ବ୍ୟବସ୍ଥା ଓ ରାଜନୀତି ବିଜ୍ଞାନ ବିଶାରଦ ତଥା ରାଜନୈତିକ ନେତୃବର୍ଗଙ୍କ ପର୍ଯ୍ୟାଲୋଚନା ଯୋଗୁଁ ଆଶାବାଦୀ ହୋଇଛନ୍ତି । କିନ୍ତୁ ଧର୍ମନିରପେକ୍ଷତା ଓ ନାଗରିକ ସ୍ୱାଧୀନତା ବିଷୟରେ ଜନସଚେତନତା ସୃଷ୍ଟି କରି ଏ ପ୍ରକାର ନାଗରିକ ଓ ରାଷ୍ଟ୍ରକୁ ଶକ୍ତିଶାଳୀ କରିବାକୁ ପଦକ୍ଷେପ ଆହୁରି ସକ୍ରିୟ ହେବା ଉଚିତ । ଜାତୀୟ ଚେତନା ଓ ନାଗରିକର ଚରିତ୍ର ସଙ୍ଗଠିତ ହେବା ଆବଶ୍ୟକ ।

ଧର୍ମନିରପେକ୍ଷତାର ବୈଶିଷ୍ଟ୍ୟ ବୁଝି ଏହାର ସଫଳ ରୂପାୟନ ଦିଗରେ କର୍ମପନ୍ଥା ସ୍ଥିର କରିବା ପୂର୍ବରୁ ଧର୍ମନୀତି ଓ ରାଷ୍ଟ୍ରନୀତିର ପ୍ରୟୋଗ ପରିସର ଏବଂ ସାଧନ ପ୍ରକ୍ରିୟା ସମ୍ବନ୍ଧରେ ଆଲୋଚନା କରିବା ଆବଶ୍ୟକ । ଧର୍ମ ଓ ରାଷ୍ଟ୍ର ନିଜ ନିଜର ସ୍ୱତନ୍ତ୍ର ଆଭିମୁଖ୍ୟ ଓ ସାଧନ ସ୍ଥିର କରି ମାନବ ଜୀବନର ଦୁଇ ବିଭିନ୍ନ କର୍ମଧାରାରେ କାର୍ଯ୍ୟକରେ । ଧର୍ମରେ ସେ ଆଶ୍ରିତ ହୁଏ, କିନ୍ତୁ ରାଷ୍ଟ୍ରର ନାଗରିକ ଭାବରେ ସେ ନିର୍ମାତା ଓ ରକ୍ଷାକାରୀ ଭୂମିକା ଗ୍ରହଣ କରେ । ଭୌତିକ ସୁବିଧା ସୁଯୋଗ, ସୁଖସମୃଦ୍ଧି ସୃଷ୍ଟି କରି ଐହିକ ସ୍ତରରେ ଜୀବନର

ଆଶା ଆକାଂକ୍ଷା ପୂରଣ କରେ ରାଷ୍ଟ୍ର । ଅଥଚ ଧର୍ମ ଐହିକ ଜୀବନକୁ ନିୟନ୍ତ୍ରିତ ଓ ପରିଚାଳିତ କରି ପାରତ୍ରିକ ଜୀବନ ପାଇଁ ସଦ୍‌ଗତିର ଦ୍ୱାର ଉନ୍ମୋଚନ କରେ । ଧର୍ମନୀତି ଓ ରାଷ୍ଟ୍ରନୀତି ମଧ୍ୟରେ ଦୁର୍ଭେଦ୍ୟ ପ୍ରାଚୀର ରହିଛି । ଗୋଟିଏ ଅନ୍ୟଟିରେ ହସ୍ତକ୍ଷେପ କରି ପାରିବ ନାହିଁ । ଭାରତୀୟ ପରମ୍ପରା ଅନୁସାରେ ସାମାଜିକ ଜୀବନର ଅବିଚ୍ଛେଦ୍ୟ ଅଙ୍ଗ ଭାବରେ ସଂସ୍କୃତି, ଧର୍ମ ଓ ଆଧ୍ୟାତ୍ମିକତାକୁ ଧରିନିଆଯାଇଛି । ଭାରତର ବିଭିନ୍ନ ଧର୍ମ ବିଶ୍ୱାସରେ ସହନଶୀଳତା, ସଦ୍‌ଭାବନା ଓ ଧର୍ମନିରପେକ୍ଷତା ତାତ୍ପର୍ଯ୍ୟ ଅର୍ଜନ କରିଛି । ପରମେଶ୍ୱର ହେଉଛନ୍ତି ଏକ ଓ ତାଙ୍କୁ ଲାଭ କରିବାପାଇଁ ଧର୍ମଧାରାଗୁଡ଼ିକୁ ବିଭିନ୍ନ ମାର୍ଗଭାବରେ ଗ୍ରହଣ କରିବାର ଉଦାର ମନୋଭାବ ପୋଷଣ କରାଯାଇଛି । ବିଭିନ୍ନ ଧର୍ମମତ ଓ ସାଂସ୍କୃତିକ ପରମ୍ପରା ପ୍ରତି ସମ୍ମାନ ଦେଖାଇବା ହେଉଛି ଭାରତୀୟ ଧର୍ମନିରପେକ୍ଷତାର ସାର କଥା । ଆଦି କାଳରୁ ଉପାସନା ଓ ବିଶ୍ୱାସ ବିଭିନ୍ନ ଭାବରେ ଆମ ଦେଶକୁ ଶାନ୍ତିପୂର୍ଣ୍ଣ, ମଞ୍ଜୁଳ ଓ ବର୍ଣ୍ଣାଢ଼୍ୟ କରିପାରିଛି । ଆମ ସଂସ୍କୃତି ସର୍ବଦା ଗ୍ରହଣକ୍ଷମ ଓ ଅନ୍ୟମାନଙ୍କୁ ଆଦରି ନେବାର ଦୃଷ୍ଟାନ୍ତ ପ୍ରଦର୍ଶନ କରିଛି । ଆମର ଧ୍ୟେୟ ହେଉଛି : ‘‘ଆନୋ ଭଦ୍ରାଃ କ୍ରତବୋ ୟନ୍ତୁ ବିଶ୍ୱତଃ’’ ବିଭିନ୍ନ ଦିଗରୁ ଉନ୍ନତ ଓ ଭଦ୍ର ଚିନ୍ତା ଆମ ଆଡ଼କୁ ଆସୁ । ଘୃଣା, ଅସୂୟା ଓ ବିଦ୍ୱେଷର ପ୍ରଶ୍ନ ନାହିଁ । ପକ୍ଷାନ୍ତରରେ ସମାନତା ହେଉଛି ଆମ ରାଷ୍ଟ୍ରର ନୀତି । ଲୋକଙ୍କର ଧର୍ମ, ଜାତି, ଲିଙ୍ଗ, ଜନ୍ମସ୍ଥାନ ଆଦି ନିର୍ବିଶେଷରେ ସମସ୍ତ ନାଗରିକ ଯେ ସମାନ ଏହା ଭାରତର ସମ୍ବିଧାନ ସାବ୍ୟସ୍ତ ଓ ସୁନିଶ୍ଚିତ କରିଛନ୍ତି । ଆହୁରି ମଧ୍ୟ ଧର୍ମ ଓ ଭାଷା ଦୃଷ୍ଟିରୁ ସଂଖ୍ୟାଲଘୁ ଶ୍ରେଣୀର ଲୋକମାନଙ୍କ ଭାଷା ଓ ଧର୍ମକୁ ସୁରକ୍ଷା କରିବାର ଦାୟିତ୍ୱ ରାଷ୍ଟ୍ର ଗ୍ରହଣ କରିଛି ।

ଅତଏବ ଧର୍ମନିରପେକ୍ଷତାର ଅର୍ଥ ହେଉଛି, ରାଷ୍ଟ୍ରର ନିଜସ୍ୱ ଧର୍ମ ନାହିଁ । ରାଷ୍ଟ୍ର ମଧ୍ୟ କୌଣସି ନିର୍ଦ୍ଦିଷ୍ଟ ଧର୍ମକୁ ଅଗ୍ରାଧିକାର ଦିଏ ନାହିଁ । ରାଷ୍ଟ୍ରୀୟ ଧର୍ମ ନାହିଁ, କିମ୍ବା କୌଣସି ନିର୍ଦ୍ଦିଷ୍ଟ ଧର୍ମ ରାଷ୍ଟ୍ରର ପୃଷ୍ଠପୋଷକତା ପାଇନାହିଁ, କିନ୍ତୁ ସାଧାରଣ ଜୀବନ ସହିତ ଧର୍ମ ସଂଶ୍ଳିଷ୍ଟ ହୋଇ ରହିଛି ଏବଂ ଜନଜୀବନରୁ ଧର୍ମକୁ ପୃଥକ କରାଯାଇ ନାହିଁ । ବସ୍ତୁତଃ ଆମ ରାଷ୍ଟ୍ର ଧର୍ମବହିର୍ଭୂତ । ଏହା ଧର୍ମରୁ ବିଚ୍ଛିନ୍ନ ଏବଂ ଧର୍ମ ସହିତ ଅସଂପର୍କୀକୃତ । ସେଥିପାଇଁ କୁହାଯାଏ ଯେ ଭାରତରେ ରାଷ୍ଟ୍ର ଅଧର୍ମୀ (irreligious) ବା ବିଧର୍ମୀ (antireligious) ନୁହେଁ । ରାଷ୍ଟ୍ର ଅଣଧର୍ମୀ (nonreligious) କୁହାଯାଇପାରେ । ଆମର ରାଷ୍ଟ୍ର-ଧର୍ମ ନଥିବା ହେତୁ ଏହା ପାକିସ୍ଥାନ ବା ଏପରି ଅନ୍ୟ ରାଷ୍ଟ୍ରପରି ଧର୍ମଭିତ୍ତିକ ନୁହେଁ । ଅଥଚ ବିଭିନ୍ନ ଧର୍ମଗୁଡ଼ିକୁ ବୁଝି ସେ ସବୁର ପୂର୍ଣ୍ଣାଙ୍ଗ ବିକାଶ ପାଇଁ ସୁଯୋଗ ଦିଆଯାଏ ।

ଏହି ପରିପ୍ରେକ୍ଷୀରେ ଏହା ସ୍ମରଣ କରିବାର କଥା ଯେ ଧର୍ମ ମାନବ-ସମାଜକୁ ବିଶ୍ୱବକ୍ଷରେ ଧାରଣ କରି ରଖେ । ମନୁଷ୍ୟକୁ ନିଜ ସହିତ, ତାଙ୍କ ପ୍ରତିବେଶୀଙ୍କ ସହିତ,

ରାଜ୍ୟ ତଥା ଦେଶବାସୀଙ୍କ ସହିତ ଓ ପରିଶେଷରେ ମାନବ-ସମାଜ ଓ ବିଶ୍ୱବାସୀଙ୍କ ସହିତ ଯାହା ସ୍ନେହ, ସଦିଚ୍ଛା ଓ ମମତା ଓ ପ୍ରୀତିର ରଜ୍ଜୁରେ ଏକାତ୍ମ କରେ ତାହାହିଁ ଧର୍ମ । ସତ୍ୟ, ଅହିଂସା, ପ୍ରେମ, ସଂଯମ, ସହନଶୀଳତା, ସାଧୁତା ଆଦି ହେଉଛି ଧର୍ମର ଅନ୍ତର୍ନିହିତ ପ୍ରକୃତି । ବେଳେବେଳେ ଏହି ଅନ୍ତରଙ୍ଗରୁ ବିଚ୍ୟୁତ ହୋଇ କେତେକ ଲୋକ ଧର୍ମର ବହିରଙ୍ଗ ଉପରେ ଧ୍ୟାନ ଦିଅନ୍ତି । ପୂଜାପାଠ, ରୀତିଗତି, ବେଶଭୂଷା, ସାଜସଜ୍ଜା, ସ୍ନାନମାର୍ଜନା ଆଦିକୁ ଜାବୁଡ଼ି ଧରନ୍ତି । ଧର୍ମର ଦ୍ୱାହି ଦେଇ କେବଳ ନିଜ ସ୍ୱାର୍ଥସିଦ୍ଧିକୁ ମୁଖ୍ୟ କରନ୍ତି । ଏକ ସଂକୀର୍ଣ୍ଣ ଗଣ୍ଡି ମଧ୍ୟକୁ ପ୍ରବେଶ କରି ଅନ୍ତର୍ଦାହକୁ ଭୁଲିଯିବାପାଇଁ ଧର୍ମଧ୍ୱଜା ଟେକି ଧରି ନିଜ ବଡ଼ିମାର ଢୋଲ ବାଡ଼ାନ୍ତି । ସେତେବେଳେ ଏହା ସାମ୍ପ୍ରଦାୟିକତାରେ ପରିଣତ ହୁଏ ।

ଏହି ଧାର୍ମିକ ଗୋଷ୍ଠୀର ନିଜର ନିର୍ଦ୍ଦିଷ୍ଟ ଅହଙ୍କାର, ଆଡ଼ମ୍ବର, ଅଭିଳାଷ ଓ ଅସୂୟାକୁ ରାଜନୀତିରେ ପ୍ରକାଶ କରନ୍ତି । ଅତଏବ ସାମ୍ପ୍ରଦାୟିକତା ହିଁ ଧର୍ମ-ନିରପେକ୍ଷତାର ବିରୋଧୀ ଓ ବିପରୀତ । ଧର୍ମନିରପେକ୍ଷତା ହେଉଛି ବିଭିନ୍ନ ଧର୍ମଧାରାରର ଏକ ସମନ୍ୱିତ ପ୍ରବାହ । ଧାର୍ମିକ ଗୋଷ୍ଠୀର ଦ୍ୱନ୍ଦ୍ୱକୁ ଏହା ମନେଇ ଦିଏ । ସାମ୍ପ୍ରଦାୟିକ ସଦ୍ଭାବର ପ୍ରତୀକ ହେଉଛି ଧର୍ମନିରପେକ୍ଷ ରାଷ୍ଟ୍ର । ସାମ୍ପ୍ରଦାୟିକତାର ପ୍ରଭାବରେ ଜାତୀୟ ସଂହତି ବିପର୍ଯ୍ୟସ୍ତ ହୋଇପଡ଼େ । ବିଚ୍ଛିନ୍ନତାବାଦୀ ଆଞ୍ଚଳିକ ମନୋଭାବ ପ୍ରବଳ ହୋଇଯାଏ । ଧର୍ମପ୍ରାଣତା କ୍ରମେ ଶୁଷ୍କ ଓ ଶୂନ୍ୟ ହୁଏ । ଏହା ଲକ୍ଷ୍ୟ କରିବାର କଥା ଯେ ବିଂଶ ଶତାବ୍ଦୀରେ ବିଶେଷ କରି ସ୍ୱାଧୀନତାର ଠିକ୍ ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ କାଳରେ ଧର୍ମନିରପେକ୍ଷତା ଅନେକାଂଶରେ ସଫଳ ହୋଇପାରି ନାହିଁ । ଏହାକୁ ବିଶ୍ଳେଷଣ କରି ଜନଜୀବନରେ ଏହାର ପ୍ରୟୋଗ ପାଇଁ ଆମର ବଳିଷ୍ଠ ଓ ବୈଜ୍ଞାନିକ ପଦକ୍ଷେପ ନିଆଯାଇ ପାରିନାହିଁ । ସାମ୍ପ୍ରଦାୟିକ ବିଦ୍ୱେଷର ଫଳ ସ୍ୱରୂପ ଭାରତ ବିଭାଜନ ସତ୍ୟ ହୋଇଛି । ଏଯାଏଁ ଏହି ଦାବି ଚାଲିଛି । ସମଗ୍ର ଦେଶରେ ବିଶେଷକରି ଉତ୍ତର ପ୍ରଦେଶ, ଗୁଜୁରାଟ, ପଞ୍ଜାବ, ତ୍ରିପୁରା ଆଦି ରାଜ୍ୟରେ ଏହାର ତାଣ୍ଡବ ଲୀଳା ଅମାନୁଷିକ ରୂପ ଗ୍ରହଣ କରିଛି ।

ଧର୍ମନିରପେକ୍ଷତା ସମ୍ବନ୍ଧରେ ଆମର ସ୍ପଷ୍ଟ ଧାରଣାର ଅଭାବ ଓ ଧର୍ମପ୍ରତି କାମଚ ଏବଂ ଉପରଠାଉରିଆ ଦୃଷ୍ଟିକୋଣ ହେତୁ ଧାର୍ମିକ ବିଚାରରେ ଅନେକ ସ୍ଥଳରେ ଆମେ ରାଜନୈତିକ ମନୋଭାବ ପୋଷଣ କରୁଛୁଁ । ସେତିକି ନୁହେଁ, ରାଜନୈତିକ ସ୍ତରରେ ସହଜ ଓ ସଦ୍ୟ ଲାଭ ପାଇବାପାଇଁ ଧାର୍ମିକ ମନୋଭାବ ପ୍ରଦର୍ଶନ କରୁଛୁଁ । ତେଣୁ ଧର୍ମନିରପେକ୍ଷତା ରାଜନୈତିକ ଅଳଙ୍କାରଠାରୁ ଅନ୍ୟ କିଛି ହେଉନାହିଁ । ଧର୍ମ ନାମରେ ଛଳନା କରି ରାଜନୈତିକ ଫାଇଦା ଉଠାଇବାହିଁ ସାର ହେଉଛି ।

ଧର୍ମନିରପେକ୍ଷ ରାଷ୍ଟ୍ର ଓ ସ୍ୱାଧୀନ ନାଗରିକ ମଧ୍ୟରେ ସମ୍ପର୍କକୁ ସୁସ୍ପଷ୍ଟ ଓ ପ୍ରାଞ୍ଜଳ କରିବାପାଇଁ ରାଜନୀତି ବିଜ୍ଞାନୀମାନଙ୍କ ବିଶ୍ଳେଷଣର ଅବତାରଣା କରିବା ଉଚିତ । ସେମାନଙ୍କ ମତରେ ସମ୍ବିଧାନ ସମର୍ଥିତ ମାନବିକ ଅଧିକାରର ଦୁଇଟି ଦିଗ ଅଛି– ( ୧ ) ଅସ୍ତିସୂଚକ ଓ ( ୨ ) ନାସ୍ତିସୂଚକ । ତଦନୁସାରେ ଧର୍ମ ବିଷୟରେ ସ୍ୱାଧୀନ ଅଧିକାରର ଅସ୍ତିସୂଚକ ଦିଗଟି ହେଉଛି–ସାଧାରଣ ଶୃଙ୍ଖଳା, ନୈତିକତା ଓ ସ୍ୱାସ୍ଥ୍ୟକୁ ଦୃଷ୍ଟିରେ ରଖି ସମସ୍ତଙ୍କର ଧର୍ମ ସମ୍ବନ୍ଧୀୟ ସ୍ୱାଧୀନ ଅଧିକାରକୁ ସୁରକ୍ଷିତ କରିବା ରାଷ୍ଟ୍ରର କର୍ତ୍ତବ୍ୟ । ରାଷ୍ଟ୍ର ସମସ୍ତ ନାଗରିକଙ୍କୁ ସମାନ ଦୃଷ୍ଟିରେ ଦେଖନ୍ତି । ସେମାନଙ୍କ ମଧ୍ୟରେ କୌଣସି ପ୍ରକାର ପାତର-ଅନ୍ତର କରିବା ରାଷ୍ଟ୍ର ପକ୍ଷରେ ବିଧେୟ ନୁହେଁ । ତେଣୁ ସ୍ୱଧର୍ମାନୁସରଣ କରିବାରେ ଓ ନାଗରିକତାର ସୁଫଳ ଏବଂ ଅଧିକାର ଉପଭୋଗ କରିବାରେ ସମାନ ସୁଯୋଗ ରାଷ୍ଟ୍ର ଦିଅନ୍ତି । ଏହା ଫଳରେ ସାମ୍ପ୍ରଦାୟିକ ନିର୍ବାଚନ ମଣ୍ଡଳୀ ନଥାଏ । ସାର୍ବଜନୀନ ଭୋଟ ଦାନ ପ୍ରଥା ଥାଏ । ସକଳ ଅଧିବାସୀଙ୍କ ସ୍ୱ ସ୍ୱ ଧର୍ମାନୁସରଣରେ ନିଜର ସ୍ୱାଧୀନତା ସୁରକ୍ଷିତ ହୁଏ । ଅବଶ୍ୟ କୌଣସି ଗୋଟିଏ ଧର୍ମକୁ ରାଷ୍ଟ୍ରନୀତିରେ ନିର୍ଦ୍ଦିଷ୍ଟ ସ୍ଥାନ ଦିଆଯାଏ ନାହିଁ । ପକ୍ଷାନ୍ତରରେ ଧାର୍ମିକ ବିଷୟରେ ସ୍ୱାଧୀନ ଅଧିକାରର ନାସ୍ତିସୂଚକ ଦିଗଟି ହେଉଛି–କୌଣସି ନିର୍ଦ୍ଦିଷ୍ଟ ଧର୍ମମତ ଓ ଧର୍ମାନୁସରଣ ପାଇଁ କାହାରିକୁ ବାଧ କରିବା ଆଇନତଃ ନିଷେଧ କରାଯାଇଛି । କୌଣସି ଏକ ନିର୍ଦ୍ଦିଷ୍ଟ ଧର୍ମ ସହିତ ଚିହ୍ନିତ କରୁଥିବା ଧର୍ମଭିତ୍ତିକ ବା ସାମ୍ପ୍ରଦାୟିକ ରାଷ୍ଟ୍ର ବିପରୀତ ପକ୍ଷ ଭାବରେ ଧର୍ମନିରପେକ୍ଷତାକୁ ଗ୍ରହଣ କରାଯାଏ । ଅଥଚ କୌଣସି ଧର୍ମବିଶ୍ୱାସକୁ ନିରୁତ୍ସାହିତ, ନିନ୍ଦିତ ବା ଗୌଣ ଭାବରେ ଗ୍ରହଣ କରାଯାଏ ନାହିଁ । ଏପରି ରାଷ୍ଟ୍ର ଧର୍ମପରାୟଣ କିମ୍ବା ବିଧର୍ମୀ ନୁହେଁ । ଏହା ମଧ୍ୟ ଅଧର୍ମୀ ନୁହେଁ । ଏହା ନିଜକୁ ଧର୍ମର ପୂଜା ପଦ୍ଧତି ଓ ଡଗ୍‌ମା (dogma) ଠାରୁ ଅନାସକ୍ତ କରି ରଖେ । ଜନସାଧାରଣଙ୍କ ସାମାଜିକ, ରାଜନୈତିକ ଓ ଅର୍ଥନୈତିକ କଲ୍ୟାଣ ସାଧନରେ ଏହା ଅନୁବ୍ରତୀ ହୋଇଥାଏ । ଏ ଦିଗରେ ନୈତିକ ଓ ଆଧ୍ୟାତ୍ମିକ ମୂଲ୍ୟବୋଧର ପ୍ରତିଷ୍ଠା ପ୍ରତି ଧ୍ୟାନ ରଖା ଯାଇଥାଏ ।

ଅତଏବ ରାଷ୍ଟ୍ର କୌଣସି ଓ କେତେକ ଧର୍ମାଶ୍ରିତମାନଙ୍କ ପ୍ରତିନିଧିତ୍ୱ କରେ ନାହିଁ । ଧର୍ମାଦି ନିର୍ବିଶେଷରେ ଜନସାଧାରଣଙ୍କ ସର୍ବବିଧ ହିତକାରୀ ସାଧନର ଭୂମିକା ରାଷ୍ଟ୍ର ଗ୍ରହଣ କରେ । ଏହାହିଁ ଧର୍ମନିରପେକ୍ଷ ରାଷ୍ଟ୍ରର କଳ୍ପନା ଓ ଭିତ୍ତିଭୂମି । ଧ୍ୱନି, ପୂଜା, ଧୂଆଁବାଣର ବିଷୟ; ଧର୍ମନିରପେକ୍ଷତା ନୁହେଁ । ଏହାକୁ ସମ୍ବିଧାନ ସମର୍ଥିତ କେବଳ ଏକ ରାଷ୍ଟ୍ରୀୟ ଲକ୍ଷ୍ୟ ଭାବରେ ଗ୍ରହଣ କରିଦେଲେ ଯଥେଷ୍ଟ ନୁହେଁ । ଏହା ଆଚରଣନିଷ୍ଠ ଜାତୀୟ ଚରିତ୍ରରେ

ପରିଣତ ହେବା ଉଚିତ । କେବଳ ବାକ୍ୟବୀର ହୋଇ ଏହାର ଜୟଗାନ ନ କରି ବଚନ, ଚିନ୍ତା ଓ କର୍ମର ସମନ୍ୱିତ ଧାରା ଏହାର ଅଙ୍ଗୀଭୂତ କରାଯିବା ଉଚିତ । ଜାତୀୟ ଐକ୍ୟ ଓ ସଂହତି ପାଇଁ ଏହା ଯେ ସାଧନ ହୋଇପାରେ, ଏହା ପ୍ରତିଷ୍ଠା କରାଯିବା ଉଚିତ । ସେ ଦୃଷ୍ଟିରୁ କେତେକ ସୂଚନା ଦିଆଯାଉଛି :

(୧) ରାଜନୀତିରୁ ଧର୍ମକୁ ବିଚ୍ଛିନ୍ନ କରାଯିବ । ରାଜନୈତିକ କ୍ଷମତା ଧର୍ମ ଉପରେ ପ୍ରତିଷ୍ଠିତ ହେବ ନାହିଁ । ଧର୍ମନିରପେକ୍ଷତା ହିଁ ରାଜନୈତିକ କର୍ତ୍ତୃତ୍ୱର ଉତ୍ସ ହୋଇ ରହିବା ଉଚିତ ।

ପୂର୍ବରୁ ଆଲୋଚନା କରାଯାଇଛି ଯେ ଧର୍ମ ମନୁଷ୍ୟର ବ୍ୟକ୍ତିଗତ ବ୍ୟାପାର ଏବଂ ରାଷ୍ଟ୍ରର ସ୍ଥାନ ଏହାର ଊର୍ଦ୍ଧ୍ୱରେ । ନାଗରିକମାନଙ୍କର ସଂଘକୁ ରାଷ୍ଟ୍ର ଭାବରେ ଅଭିହିତ କରାଯାଇପାରେ, କିନ୍ତୁ କୌଣସି ନିର୍ଦ୍ଦିଷ୍ଟ ଧର୍ମାନୁରାଗୀମାନଙ୍କ ଏକତ୍ରୀକରଣକୁ ରାଷ୍ଟ୍ର କୁହାଯିବ ନାହିଁ ।

ତେଣୁ ଏଥିପାଇଁ କଠୋର ଆଇନ ଲାଗୁ କରାଯିବ । ଜଣେ ରାଜନୀତିଜ୍ଞଙ୍କର ଧର୍ମାନୁରାଗ ରହିପାରେ । କିନ୍ତୁ ସେ ରାଜନୈତିକ ପ୍ରଶାସନିକ କ୍ଷମତାର ପ୍ରଭାବ ପକାଇ ନିଜ ଆଶ୍ରିତ ଧର୍ମର ପ୍ରସାର କଲେ ବା ସେହି ଧର୍ମକୁ ଉତ୍ସାହିତ କଲେ ବା ତାଙ୍କ ଧର୍ମାଶ୍ରିତ ବ୍ୟକ୍ତିଙ୍କ ପ୍ରତି ଅତ୍ୟଧିକ ସମର୍ଥନ କଲେ ଏହା ଆଇନ ଦୃଷ୍ଟିରେ ଅପରାଧ ହେବା ଉଚିତ । ବିକାଶ କ୍ଷେତ୍ରରେ ରାଷ୍ଟ୍ରନୀତି ପ୍ରଣୟନ ବା ପ୍ରୟୋଗ ବେଳରେ କୌଣସି ଧର୍ମର ବିଚାର ସେଥିରେ ସ୍ଥାନ ପାଇବ ନାହିଁ ।

(୨) ଧର୍ମାନୁଷ୍ଠାନକୁ ରାଜନୈତିକ ହିଂସା, କୂଟନୀତି, କପଟାଚାର ଆଦିର ଯଜ୍ଞପୀଠ ବା ଗନ୍ତାଘର କରାଯିବ ନାହିଁ । ଏହାର ପବିତ୍ରତା ସର୍ବଦା ରକ୍ଷା କରାଯିବ । ସେଥିପାଇଁ ନିର୍ଦ୍ଦିଷ୍ଟ ବ୍ୟବସ୍ଥାର ବିଧାନ କରାଯିବ ।

(୩) କୌଣସି କୌଣସି ସ୍ଥଳରେ ଅଲୌକିକତା, ଗୁଣିଗାରେଡ଼ି ଆଦି ହଟଚମଟ ସୃଷ୍ଟିକରି କେତେକ ଧର୍ମବିଶ୍ୱାସ ବା ବ୍ୟକ୍ତିର ଗୌରବପ୍ରତି ସମର୍ଥନ ପାଇବାପାଇଁ ସହଜ ମାର୍ଗର ଆଶ୍ରୟ ନିଆଯାଏ । ଧାର୍ମିକ ଉପଲବ୍ଧି ପାଇଁ ସାଧନା ଆବଶ୍ୟକ । ଏଥିପାଇଁ ନିଷ୍ଠା, ଏକାଗ୍ରତା ଓ ଭୋଗବିଳାସର ବର୍ଜନ ଉପରେ ଗୁରୁତ୍ୱ ଦିଆଯାଏ । ଏହା ଏକ ବିଜ୍ଞାନସମ୍ମତ ପ୍ରଣାଳୀ । ଏହା ସମୟ, ଶ୍ରମ ଓ ସାଧନା ସାପେକ୍ଷ । ଏଥିପାଇଁ ବ୍ୟକ୍ତି ଜୀବନରେ ପରାକାଷ୍ଠା ଅର୍ଜନ କରାଯାଏ । ତନ, ମନ ଓ ବଚନରେ ବିଶୁଦ୍ଧାଚାର ହାସଲ କରାଯାଏ ।

ଗୁଣିଗାରେଡ଼ି ଦ୍ୱାରା ତପୋନିଷ୍ଠାରୁ ବିଚ୍ୟୁତହୋଇ ଏକ ସହଜ, ଶସ୍ତା ଓ କ୍ଷମତା ଅର୍ଜନର ପନ୍ଥା ଗ୍ରହଣ କରାଯାଏ । ଏହା ସମାଜପାଇଁ କ୍ଷତିକାରକ । ସମାଜପାଇଁ ଏହା କୁତ୍ସିତ ଉଦାହରଣ । ଆବଶ୍ୟକ ପଡ଼ିଲେ ଏଥିପାଇଁ ଆଇନ ପ୍ରଣୟନ କରାଯାଇପାରେ କିନ୍ତୁ ଲୋକଶିକ୍ଷା ସର୍ବଥା ଅପରିହାର୍ଯ୍ୟ ।

(୪) ଏହା ଦେଖାଯାଏ, ଅସହିଷ୍ଣୁତା, ଦାରିଦ୍ର୍ୟ, ଗଣନିରକ୍ଷରତା, ବେକାରୀ ଆଦିରେ ସାମ୍ପ୍ରଦାୟିକ ବିଦ୍ୱେଷ ଓ ଉତ୍ତେଜନାର ବୀଜ ଛନ୍ଦି ହୋଇରହିଛି । ଅତଏବ ଲୋକମାନେ ଯେତେବେଳେ ସର୍ବନିମ୍ନ ଆବଶ୍ୟକତା ଓ ସୁବିଧା ସୁଯୋଗରୁ ବଞ୍ଚିତ ହୁଅନ୍ତି ଏବଂ ଅସହାୟ ଜୀବନ ଯାପନ କରନ୍ତି ସେତେବେଳେ ସେମାନେ ଧାର୍ମିକ ଓ ଅନ୍ୟାନ୍ୟ ସଂକୀର୍ଣ୍ଣ ସାମ୍ପ୍ରଦାୟିକତାର ଶରବ୍ୟ ହୋଇପଡ଼ନ୍ତି । ଏପରି ସ୍ଥଳରେ ରାଷ୍ଟ୍ର ଲୋକଙ୍କୁ ସୁବିଧାସୁଯୋଗ ଯୋଗାଇଦେଇ ସେମାନଙ୍କୁ ଅଭାବ ଅନଟନରୁ ରକ୍ଷାକରିବା ଉଚିତ । ଦାରିଦ୍ର୍ୟ ଦୂରୀକରଣପାଇଁ ଯୋଜାନଗୁଡ଼ିକୁ ନିଷ୍ଠାର ସହ କାର୍ଯ୍ୟକାରୀ କରିବା ଉଚିତ । ଗଣସଚେତନତା ଓ ବୃତ୍ତିଭିତ୍ତିକ ସାମର୍ଥ୍ୟର ବିକାଶପାଇଁ ସାକ୍ଷରତା ଅଭିଯାନ ନିରନ୍ତର ଚାଲୁରହିବ । ବୈଜ୍ଞାନିକ ଓ ବିଚାରବନ୍ତ ମନୋଭାବର ପ୍ରସାରପାଇଁ ରାଷ୍ଟ୍ର ତାହାର ସର୍ବବିଧ ମାଧମର ପ୍ରୟୋଗ କରିବା ଉଚିତ । ନିରକ୍ଷରତାପାଇଁ ଆମ ପଛୁଆମି ହିଁ ଅଜ୍ଞତା ଓ ଦୁର୍ବଳତାର ମୂଳ କାରଣ ହୋଇଛି । ଲୋକସଂଖ୍ୟାର ଦ୍ରୁତ ଅଭିବୃଦ୍ଧି ଆମ ବିକାଶ ଯୋଜନାର ସଫଳତା ପଥରେ ଏକ ବିରାଟ ଅନ୍ତରାୟ ହେଉଛି । ଲୋକମାନଙ୍କ ଅସନ୍ତୋଷ ବଢ଼ିବାରେ ଲାଗିଛି । ଏହିସବୁ କାରଣରୁ ଆମର ଅଧିକାଂଶ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ସମସ୍ୟାର ସୃଷ୍ଟି ହେଉଛି । ଜାତିଆଣପ୍ରଥା ଓ ସାମ୍ପ୍ରଦାୟିକତା ହେତୁ ଦେଶର ଅଖଣ୍ଡତାପ୍ରତି ବିପଦ ମଧ ମୁଣ୍ଡଟେକୁଛି । ସବୁ ସ୍ତରରେ ବିଭିନ୍ନ କର୍ମୀମାନଙ୍କର ଆନ୍ତରିକତା, ସାଧୁତା, ନିଷ୍ଠା ଓ ଜନସେବା ମନୋଭାବର ଅଭାବ ହେତୁରୁ ସାମାଜିକ ପରିବର୍ତ୍ତନରେ ବାଧା ଆସୁଛି । ଏହାଫଳରେ ବିଚ୍ଛିନ୍ନତାବାଦୀ ଓ ବିଭେଦକାରୀ ଶକ୍ତି ବଳବତ୍ତର ହୋଇ ଆମ ଜାତୀୟ ସଂହତି, ଐକ୍ୟ ଓ ଅଖଣ୍ଡତାକୁ ବିପନ୍ନ କରୁଛି । ତେଣୁ ସାମ୍ପ୍ରଦାୟିକ ବିଭେଦର ବୀଜକୁ ପୂରାପୂରି ନଷ୍ଟ କରିଦେବାକୁ ପଡ଼ିବ । ସମସ୍ତ ଧର୍ମର ମୌଳିକ ମୂଲ୍ୟବୋଧଗୁଡ଼ିକ ପ୍ରତି ଗୁରୁତ୍ୱ ଦିଆଗଲେ ଧର୍ମନିରପେକ୍ଷ ରାଷ୍ଟ୍ରର ଗଠନ ଯଥାରୀତି କରାଯାଇ ପାରିବ ।

ବିଭିନ୍ନ ପ୍ରତିଶ୍ରୁତି ସତ୍ତ୍ୱେ ଲୋକଙ୍କ ପାଇଁ ଦାନାଦାନା, ଚୁଲିଚାଳ, କାମଧନ୍ଦା, ବେମାର ପାଇଁ ଚିକିତ୍ସା, ସମସ୍ତଙ୍କ ପାଇଁ ସର୍ବୋତ୍ତମ ଶିକ୍ଷା, ରାସ୍ତାଘାଟ, ଯାନବାହନ ଆଦି ବାବଦରେ

ଆବଶ୍ୟକ ବ୍ୟବସ୍ଥା ଆଶାନୁରୂପ ହୋଇ ନପାରିବାରୁ ଅଶାନ୍ତି, ଅସ୍ଥିରତା ଓ ଅସନ୍ତୋଷ ବଢୁଛି । ଏହାହିଁ ଅସହିଷ୍ଣୁତା ଓ ହତାଶଭାବର ବଡ଼ କାରଣ ଏବଂ ଏହା ଫଳରେ ଲୋକମାନେ ଧର୍ମାନ୍ଧ ଓ ବିଭେଦକାରୀ ସଂକୀର୍ଣ୍ଣ ଶକ୍ତିର ଶିକାର ହୋଇପଡୁଛନ୍ତି । ସେମାନଙ୍କ ଉତ୍ତେଜନାପୂର୍ଣ୍ଣ ପ୍ରଚାର ଦ୍ୱାରା ଲୋକମାନେ ବିଚଳିତ ହୋଇ ବୁଡ଼ିଗଲା ଲୋକ କୁଟାଖିଅର ଆଶ୍ରୟ ନେଲା ପରି ଏମାନଙ୍କ ଚକ୍ରାନ୍ତରେ କବଳିତ ହେଉଛନ୍ତି । ଆମ ଯୋଜନା ପ୍ରଣୟନ ଓ ଏହାର କାର୍ଯ୍ୟକାରିତାରେ ବୁଦ୍ଧିମତ୍ତା, ନିଷ୍ଠା ଓ ବାରମ୍ବାର ସମୀକ୍ଷା କରାଯାଉଥିବ । ଆତ୍ମସନ୍ତୋଷର କୁହୁଡ଼ିରେ ନପହଁରି ଆତ୍ମଅସନ୍ତୋଷ ଯୋଗୁଁ ଦୃଢ଼ତା, ବିଚାର ଓ ଜନସମ୍ପର୍କ ଅଧିକ ସମୟରେ ପ୍ରତିଷ୍ଠିତ ହେବା ଉଚିତ । ବ୍ୟକ୍ତିର ବହୁ ଊର୍ଦ୍ଧ୍ୱରେ ରାଷ୍ଟ୍ର ଓ ସେଥିପାଇଁ ଆମେ ସମର୍ପିତ ଓ ସତର୍କ ରହିବା ।

(୫) ଦୁଇଟି କଥା ସ୍ମରଣ ରଖିବାକୁ ହେବ– (କ) ଧର୍ମନିରପେକ୍ଷ ରାଷ୍ଟ୍ର ପାଇଁ ଆବଶ୍ୟକ ଧର୍ମନିରପେକ୍ଷ ସଂସ୍କୃତି, ଅଭ୍ୟାସ ଓ ଚିନ୍ତା । ଏହା କ୍ରମେ ପରମ୍ପରାରେ ପରିଣତ ହେବ । ସେଥିରେ ପୁଷ୍ଟିତ ହେବ ସହାବସ୍ଥାନ, ସୌସାମ୍ୟ, ସମଦୃଷ୍ଟି, ସହିଷ୍ଣୁତା ଓ ଭ୍ରାତୃତ୍ୱ । ଏପ୍ରକାର ପରମ୍ପରାର ଚିରନ୍ତନ ସମର୍ଥନର ଅଭାବ ଘଟିଲେ ରାଷ୍ଟ୍ର ଧର୍ମନିରପେକ୍ଷ ହୋଇ କାଳକାଳକୁ ରହିପାରିବ ନାହିଁ । ଏହାମଧ୍ୟ ସଂଘବଦ୍ଧ ସତ୍ତା ଭାବରେ ତିଷ୍ଠି ପାରିବ ନାହିଁ । ବିଭିନ୍ନତା ମଧ୍ୟରେ ଐକ୍ୟ, ଏକାତ୍ମତା, ଅଖଣ୍ଡତା ଓ ଅବିଭକ୍ତତା କେବଳ ଧ୍ୱନିରେ ପରିଣତ ନହୋଇ ହୃଦୟରେ ସ୍ପନ୍ଦିତ ହେବ ।

(ଖ) ସେହିପରି ସ୍ୱାଧୀନ ନାଗରିକ ଯଦି ଲଗାମଛଡ଼ା ହୋଇଯାନ୍ତି ତାହେଲେ ସେ ସ୍ୱେଚ୍ଛାଚାରୀ ଆତତାୟୀ ହୁଅନ୍ତି । ସ୍ୱେଚ୍ଛାଚାରିତା ହେଉଛି ଏକ ଅପସ୍ୱାଧୀନତା ଓ କୌଣସି ସଂଘବଦ୍ଧତା ପାଇଁ ଛୁରିକା ସଦୃଶ ମାରାତ୍ମକ । ଧର୍ମାଚରଣ କ୍ଷେତ୍ରରେ ଏହା ଭୟଙ୍କର ଅଧାର୍ମିକ କାର୍ଯ୍ୟ । ଉପାସକ ଓ ଉପାସନା ପଦ୍ଧତି ତଥା କ୍ଷେତ୍ରର ବିଭିନ୍ନତା ସତ୍ତ୍ୱେ ଉପାସ୍ୟ ଯେ ଏକ ଓ ଅଭିନ୍ନ–ଏହି ଚିନ୍ତାର ପରିପନ୍ଥୀ । ଏହା ଫଳରେ ମୈତ୍ରୀ, ପ୍ରୀତି ଓ କରୁଣା ରହେନାହିଁ । ଅନ୍ୟର ଆଚରଣ, ଅନୁରାଗ ଓ ଆଶ୍ରୟ ପ୍ରତି ସମ୍ମାନ ଦେଖାଇବାକୁ ହେବ । ଅନ୍ୟର ମତ ଓ ମନୋଭାବକୁ ବୁଝିବା, ଜାଣିବା, ଶିଖିବା ଓ ଆନନ୍ଦାନୁଭବ କରିବାର ଦୃଷ୍ଟି ରଖାଯିବ । ହୃଦୟ ଦର୍ପଣରେ ନମ୍ରତା, ବିନୟ ଓ ବିଦ୍ୟାନୁରାଗ ପ୍ରତିଫଳିତ ହେବ ।

ଏହି ଉଭୟ ପ୍ରତି ଏକକାଳୀନ ଧ୍ୟାନ ଦିଆଗଲେ ନାଗରିକ ଓ ରାଷ୍ଟ୍ର ମଧ୍ୟରେ ବିକାଶବୃତ୍ତର (growth circle) ସମ୍ପର୍କ ସ୍ୱଭାବତଃ ସାଧିତ ହୁଏ । ଧର୍ମନିରପେକ୍ଷତା ଓ

ଧର୍ମୀୟ ସ୍ୱାଧୀନତା ପରସ୍ପର ପରିପୂରକ ହୁଏ । ନିରାପତ୍ତା ଓ ନ୍ୟାୟର ବିଚାର ରାଷ୍ଟ୍ର ଦିଏ । ବ୍ୟକ୍ତି ଧର୍ମାନୁସରଣରେ ସାହସୀ, ସହାନୁଭୂତିଶୀଳ ଓ ସହିଷ୍ଣୁ ହୁଏ ।

ଏଠାରେ ଆମେ ପୂର୍ବତନ ରାଷ୍ଟ୍ରପତି ଦାର୍ଶନିକ ସର୍ବପଲ୍ଲୀ ରାଧାକୃଷ୍ଣନଙ୍କ ଉକ୍ତି ସ୍ମରଣ କରିବା – ''ଇଟା ଓ ସିମେଣ୍ଟ, ଲୁହା ଓ କଳକବ୍‌ଜାରେ ସଭ୍ୟତା ଗଢ଼ି ଉଠେ ନାହିଁ । ଅଥଚ ନରନାରୀ ଓ ସେମାନଙ୍କର ସଦ୍‌ଗୁଣ ଓ ଚରିତ୍ରଦ୍ୱାରା ସଭ୍ୟତାର ବିକାଶ ସାଧିତ ହୁଏ ।'' ଏହି ସତ୍ୟକୁ ଦୃଷ୍ଟିରେ ରଖି ଆମ ଶିକ୍ଷା, ସାମାଜିକ ବ୍ୟବସ୍ଥା, ସମ୍ପର୍କ, ସଂସ୍କୃତି ଆଦିକୁ ସଜାଡ଼ି ଦେବାକୁ ପଡ଼ିବ ।

(୬) ସମାଜରେ, ସର୍ବତ୍ର ଓ ବିଶେଷକରି ଶିକ୍ଷାୟତନରେ ଆମେ ଆଧ୍ୟାତ୍ମିକ ଜୀବନଯାପନ କରିବାକୁ ଶିକ୍ଷା କରିବା । ସାମ୍ପ୍ରଦାୟିକ ଜୀବନ ନୁହେଁ, କାରଣ ଏହା ସଂକୀର୍ଣ୍ଣ, ସ୍ୱାର୍ଥପର ଓ ସ୍ୱେଚ୍ଛାଚାର । ଆମ ପାଇଁ ଆବଶ୍ୟକ ଆଧ୍ୟାତ୍ମିକ ଜୀବନ, କାରଣ ଏହା ପରାର୍ଥପର, ଅନାବିଳ ଓ ବିଶ୍ୱମଙ୍ଗଳକାମୀ । ଆତ୍ମଜୀବନର ଏହାହିଁ ସ୍ୱଚ୍ଛ ଓ ସତ୍ୟ ପ୍ରକାଶକ । ଏଥିରେ ପୂର୍ଣ୍ଣତାର ପ୍ରାପ୍ତି । ସତ୍ୟ, ଶିବ ଓ ସୁନ୍ଦର । ଏହାହିଁ ବସ୍ତୁତଃ ଈଶ୍ୱରାନୁଭୂତି । ଜୀବନ ପବିତ୍ର ହୁଏ । ତେଣୁ ସତ୍ୟ, ଅହିଂସା, ଶୌଚ, ଦମ, ଇନ୍ଦ୍ରିୟ-ନିଗ୍ରହ ଆଦିର ଅଭ୍ୟାସ କରିବାକୁ ପଡ଼ିବ । ଦ୍ୱନ୍ଦ୍ୱବିରହିତ ଓ ସର୍ବଜନହିତେରତା ହେବାର ଅଭ୍ୟାସ ଶିଖିବାକୁ ହେବ ।

ସେଥିପାଇଁ ଧର୍ମ ବସ୍ତୁତଃ ଉପଲବ୍‌ଧି, ଉପଚାର ବା ଉପରଠାଉରିଆ ଉଚ୍ଚାରଣ ନୁହେଁ । ଅନ୍ତର୍ନିହିତ ଦେବତ୍ୱର ବିକାଶ, ଯେହେତୁ ଦେବତ୍ୱ ହେଉଛି ସକଳ ଦେହୀଙ୍କର ପ୍ରକୃତି । ଏମାନଙ୍କ ମଧ୍ୟରେ ମନୁଷ୍ୟ ଦେହ ଧାରଣ କରନ୍ତି ଅଧିକରୁ ଅଧିକ ମନୁଷ୍ୟ ହେବାପାଇଁ ।

(୭) ଆମେ ଆମ ଶିକ୍ଷାୟତନରେ ବିଜ୍ଞାନ ଶିକ୍ଷା ଦେଉଅଛୁ । ବୈଜ୍ଞାନିକ ପ୍ରଣାଳୀ ମଧ୍ୟ ଅବଲମ୍ବନ କରୁଛୁ । ଏସବୁ ଶିକ୍ଷାୟତନର ସୀମା ଟପି ଜୀବନବ୍ୟାପୀ କରିବାର ପ୍ରୟାସ ଅବ୍ୟାହତ ରଖିଛୁ । କିନ୍ତୁ କାହିଁ ? ଶିକ୍ଷକ ଓ ଶିକ୍ଷାର୍ଥୀଙ୍କ ପାଇଁ ଏସବୁ କେବଳ ପୁସ୍ତକର ପୃଷ୍ଠାରେ ସୀମିତ ।... ପରୀକ୍ଷାପାଇଁ ପ୍ରସ୍ତୁତିର ଅନ୍ତର୍ଭୁକ୍ତ । ଏଯାଏଁ ଏସବୁ ଶିକ୍ଷାୟତନ ତଥା ଜୀବନରେ ଧର୍ମନିରପେକ୍ଷ ରାଷ୍ଟ୍ରର ଅଭ୍ୟୁଦୟ ପାଇଁ ଅନୁକୂଳ ଦୃଷ୍ଟିକୋଣ ସୃଷ୍ଟି କରୁନାହିଁ । ସମସ୍ତଙ୍କୁ ସମାନ ଚକ୍ଷୁରେ ଦେଖି ବ୍ୟକ୍ତିସ୍ୱାତନ୍ତ୍ର୍ୟର ମର୍ଯ୍ୟାଦା ପ୍ରତି ସମ୍ମାନ ଦିଆଯାଉନାହିଁ । ବରଂ ବ୍ୟକ୍ତିପ୍ରାଧାନ୍ୟ ଏତେ ବେଶୀ ହୋଇଯାଉଛି ଯେ ସମଷ୍ଟିଗତ ଚିନ୍ତା ଓ ସମୂହ ଜୀବନର

ବିକାଶ କରାଯାଇ ପାରୁନାହିଁ । ଅନ୍ଧବିଶ୍ୱାସ, ଅବିଶ୍ୱାସ ଓ କୁସଂସ୍କାର ଆମ ବ୍ୟକ୍ତିଗତ ଓ ସାମାଜିକ ପ୍ରଗତିରେ ଅନ୍ତରାୟ ହେଉଛି ।

ପରିଶେଷରେ ବିଶ୍ୱବିଖ୍ୟାତ ଦାର୍ଶନିକ ପୂର୍ବତନ ରାଷ୍ଟ୍ରପତି ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନଙ୍କ ତାତ୍ତ୍ୱିକ ବିଶ୍ଳେଷଣ ଉଲ୍ଲେଖ କରିବା–

"ଭାରତ ଏକ ଧର୍ମନିରପେକ୍ଷ ଦେଶ । ଏହାର ଅର୍ଥ ଆମେ ବ୍ରହ୍ମ ବା ଆତ୍ମାର ସ୍ଥିତିକୁ ଅସ୍ୱୀକାର କରୁ ବା ଜୀବନପ୍ରତି ଧର୍ମର ଯଥାର୍ଥତାକୁ ଉପେକ୍ଷା କରୁ ବା ଅଧର୍ମକୁ ଉଚ୍ଚାସନ ଦେଉ, ତାହା ନୁହେଁ । ଏହାର ଅର୍ଥ ନୁହେଁ ଯେ ନିରପେକ୍ଷତା ଅନ୍ୟ ଏକ ଧର୍ମର ରୂପଧାରଣ କରିବ ବା ଦେଶ ଆଧ୍ୟାତ୍ମିକ ପ୍ରଭାବରେ ବିଶେଷ ଅଧିକାର ହେବ । ଯଦିଓ ଈଶ୍ୱର ବିଶ୍ୱାସ ଭାରତୀୟ ପରମ୍ପରାର ମୂଳଭିତ୍ତି, ତଥାପି ଭାରତ କୌଣସି ନିର୍ଦ୍ଦିଷ୍ଟ ଧର୍ମର ଆୟତ୍ତାଧୀନ ନୁହେଁ ବା କୌଣସି ଏକ ଧର୍ମରେ ନିଜକୁ ବାନ୍ଧି ରଖେ ନାହିଁ । ଭାରତରେ କୌଣସି ଧର୍ମ ସ୍ୱାତନ୍ତ୍ର୍ୟ ଲାଭ କରିପାରେ ନାହିଁ ବା ନିଜକୁ ମହତ୍ ବୋଲି ଘୋଷଣା କରିପାରେ ନାହିଁ । ଜାତୀୟ ଜୀବନରେ ବା ଆନ୍ତର୍ଜାତିକ କ୍ଷେତ୍ରରେ କୌଣସି ଧର୍ମ ଭାରତରେ ବିଶେଷ ସୁବିଧା ପ୍ରାପ୍ତ କରେ ନାହିଁ । କାରଣ ଏହାଦ୍ୱାରା ଗଣତନ୍ତ୍ର ଶାସନର ନୀତିକୁ ଲଙ୍ଘନ କରାଯାଏ ଏବଂ ଉଭୟ ଧର୍ମ ଓ ସରକାର କ୍ଷତିଗ୍ରସ୍ତ ହୁଅନ୍ତି । ଜାତୀୟ ଜୀବନ ଓ ଆନ୍ତର୍ଜାତିକ କ୍ଷେତ୍ରରେ ଭାରତର ଏହିପରି ନିରପେକ୍ଷଭାବ ଏବଂ ସହିଷ୍ଣୁତା ତାହାର ବୁଦ୍ଧିମତ୍ତାର ପରିଚୟ ଦିଏ । କୌଣସି ଶ୍ରେଣୀ ବା ଦଳ ନିଜକୁ ବିଶେଷ ସୁବିଧାର ଅଧିକାରୀ କରିପାରିବ ନାହିଁ ଯେଉଁ ପର୍ଯ୍ୟନ୍ତ ଅନ୍ୟମାନଙ୍କୁ ଏହିପରି ସ୍ୱାତନ୍ତ୍ର୍ୟରୁ ପୃଥକ୍ ରଖାହୋଇଛି । କୌଣସି ବ୍ୟକ୍ତି ନିଜର ଧର୍ମ ବା ଭେଦଭାବ ଯୋଗୁ କ୍ଷତିଗ୍ରସ୍ତ ହୋଇପାରିବ ନାହିଁ । ସମସ୍ତେ ମୁକ୍ତ ହୋଇ ପୂର୍ଣ୍ଣ ଜୀବନ ସମାନ ଭାବରେ ଉପଭୋଗ କରିବେ । ଏହି ମୂଳତତ୍ତ୍ୱହିଁ ଦେଶ ଓ ଧର୍ମସଂସ୍ଥାମାନଙ୍କ ମଧ୍ୟରେ ପାର୍ଥକ୍ୟ ସୃଷ୍ଟିକରେ । ଭାରତର ଧର୍ମନିରପେକ୍ଷ ନୀତିକୁ ନାସ୍ତିକତା କହିବା ଠିକ୍ ନୁହେଁ । ଏହା ତାହାର ପୁରାକାଳର ଧର୍ମର ପରମ୍ପରା । ଏହି ନିରପେକ୍ଷତାର ଆଶ୍ରୟରେ ବିଭିନ୍ନ ଧର୍ମବିଶ୍ୱାସୀମାନଙ୍କର ସୌହାର୍ଦ୍ଧ୍ୟ ବୃଦ୍ଧି ହୁଏ । କେହି କାହାର ବ୍ୟକ୍ତିଗତ ମତକୁ ଦଳୀୟମତ ମଧ୍ୟରେ ହଜାଇ ଦିଏ ନାହିଁ । ପ୍ରତ୍ୟେକ ନିଜ ନିଜର ମତର ସଂଯୋଗରେ ଏକ ସମାନତା ସୃଷ୍ଟି କରନ୍ତି । ପାର୍ଥକ୍ୟ ରହିଥିଲେ ମଧ୍ୟ ନିରପେକ୍ଷ ନୀତି ଦ୍ୱାରା ଏକତା ଲାଭ କରାଯାଏ । ଏହି ଏକତାବଦ୍ଧ ସମାଜ ସୃଷ୍ଟି ସହିତ ଆଗେଇ ଚାଲେ । ଭିନ୍ନଭିନ୍ନ ଧର୍ମକୁ ଅଧ୍ୟୟନ କଲେ ଜଣାଯାଏ ଯେ ପ୍ରତ୍ୟେକଙ୍କର ଦାର୍ଶନିକ ମୂଳତତ୍ତ୍ୱ, ଆଧ୍ୟାତ୍ମିକ

ଗଭୀରତା, ଚିନ୍ତା କରିବାର ପ୍ରବଳ ଶକ୍ତି ଏବଂ ମାନବ ଜାତି ପ୍ରତି ସହାନୁଭୂତି ରହିଛି । ପବିତ୍ରତା, ଦୟା, କ୍ଷମା ଇତ୍ୟାଦି ଗୁଣଗୁଡ଼ିକ କୌଣସି ନିର୍ଦ୍ଦିଷ୍ଟ ଧର୍ମର ଚରିତ୍ର ନୁହେଁ ।

ପ୍ରତ୍ୟେକ ଧର୍ମରେ ମୁଷ୍ଟିମେୟ ବ୍ୟକ୍ତି ଦୃଷ୍ଟିଗୋଚର ହୁଅନ୍ତି ଯେଉଁମାନଙ୍କର ଦୃଷ୍ଟି ଗଭୀର । ଧର୍ମକ୍ଷେତ୍ରରେ ସୌହାର୍ଦ୍ଦ୍ୟ ସ୍ଥାପନ ସମ୍ଭବପର ବୋଲି ସେମାନେ ବିଶ୍ୱାସ କରନ୍ତି । ଆମେ ଯେ ସତ୍ୟର ଅନ୍ୱେଷକ ଏବଂ ଏକ ପଥର ପଥିକ, ଆମର ଲକ୍ଷ୍ୟ ଏକ ଏବଂ ଆମର ଯେ ଆଧ୍ୟାତ୍ମିକ ଅବସ୍ଥା ସମାନ, ଏଥିରୁ ଜଣାପଡ଼େ ଯେ ଆମର ପରସ୍ପର ମଧ୍ୟରେ ସୌହାର୍ଦ୍ଦ୍ୟ ରହିଛି । ଏହି ସୌହାର୍ଦ୍ଦ୍ୟ ଜୋର କରି କାହା ଉପରେ ନ୍ୟସ୍ତ କରାଯାଇପାରେ ନାହିଁ । ଯେଉଁମାନଙ୍କର ଈଶ୍ୱର ଅନୁଭୂତି ହୋଇଥାଏ ସେମାନଙ୍କୁ ଧର୍ମର ଅଗ୍ରଣୀ ହିସାବରେ * ଗ୍ରହଣ କରାଯାଏ । ଏହି ଅନୁଭୂତି ଦ୍ୱାରା ମନୁଷ୍ୟର ଯେଉଁ ସୂକ୍ଷ୍ମଜ୍ଞାନର ବିକାଶ ହୁଏ, ତାହା ସାହାଯ୍ୟରେ ସେ ପୃଥିବୀରେ ନିଜର ଏକ ସମାଜ ଗଠନ କରେ । ଏହି ସମାଜ ପ୍ରେମ ଦ୍ୱାରା ଶାସିତ ହୁଏ । ମନର ଏହି ସୂକ୍ଷ୍ମ ଅବସ୍ଥା ଏବଂ ପ୍ରେମପୂର୍ଣ୍ଣ ଶାସନ ଆମର ଭବିଷ୍ୟତର ଆଶା ।''



* Recovery of Faith, ସତ୍ୟର ସନ୍ଧାନ, ଅନୁବାଦ ଶାନ୍ତିଲତା ତ୍ରିପାଠୀ, ୧୯୭୨ରୁ ଗୃହୀତ ।

# ଶିକ୍ଷା ଓ ଜାତୀୟ ସଂହତି

ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ କହିଥିଲେ, ମୁଁ କେରଳୀ ଦେଖୁଛି, ସେହିପରି ଗୁଜୁରାଟୀ, ମରାଠୀ, ତେଲୁଗୁ ପ୍ରଭୃତି ବିଭିନ୍ନ ଭାଷାଭାଷୀଲୋକ ଦେଖୁଛି । କିନ୍ତୁ କାହିଁ, ଭାରତୀୟ ଦେଖାଯାଉନାହାନ୍ତି ? ଦେଶ ସ୍ୱାଧୀନ ହେବାର ୫୦ ବର୍ଷ ହେଲାଣି । ସମସ୍ୟାଟି ବରଂ ଉତ୍କଟ ହେଉଛି, ରାଜ୍ୟ ରାଜ୍ୟ ମଧ୍ୟରେ ବିବାଦ ବଢୁଛି । ଗୋଟିଏ ରାଜ୍ୟର ବିଭିନ୍ନ ଜିଲ୍ଲା ତଥା ଜିଲ୍ଲାର ବିଭିନ୍ନ ଅଞ୍ଚଳ ମଧ୍ୟରେ ଟଣାଓଟରା ଚାଲିଛି । ତେବେ ଆମେ ଭାରତୀୟ ଓ ଭାରତ ଆମ ଜନମ ମାଟି ଏ ଭାବନା ଆମ ହୃଦୟରେ ଦୃଢ଼ ହେଉଛି କି ? ଏହି ବିରାଟ, ବିଶାଳ ଓ ସୁବିସ୍ତୃତ ଦେଶ ଆମର ଓ ପରମ୍ପରାକ୍ରମେ ଆମେ ଏହି ଦେଶର–ଏପରି ଗର୍ବ ଓ ଗୌରବ ଆମେ ଅନୁଭବ କରୁଛୁଁ କି ? ଏହାହିଁ ଜାତୀୟ ସଂହତିର କଥା, 'ତୁହି ମା ଜନମ ଭୂମି, ଭାରତ ଭୂମି, ତୋହର ସନ୍ତାନ ଆମେ ଅଟୁ ସରବେ' । ... ମଧୁସୂଦନଙ୍କର ଏହି ଦେଶବନ୍ଦନା ଆମ ହୃଦୟରେ ଝଙ୍କୃତ ହେବା ଉଚିତ । କଥା, କାମ ଓ ଚିନ୍ତାରେ ଆମେ ଦେଶପ୍ରାଣ ହେବା ଆବଶ୍ୟକ । ଅନୁକରଣ କରିବା ଭକ୍ତକବିଙ୍କୁ, "ତୋ ଆନନ୍ଦେ ହୋଇବା ସୁଖୀ, କାନ୍ଦିବା ଦୁଃଖରେ ତୋର ହୋଇଣ ଦୁଃଖୀ ।"

ଆମେ ସ୍ୱଦେଶବତ୍ସଳ ବୀର ପୁରୁଷ ହେବା । ଭାରତୀୟତାର ପରିଚୟ ଦେବା । ତେବେ ଦେଶକୁ ଅଖଣ୍ଡ, ଅତୁଟ ଓ ଏକ କରିବା । ଏପରି ଚରିତ୍ର ଗଠନ ନାନା ଉପାୟରେ କରାଯାଏ । ତନ୍ମଧ୍ୟରୁ ଶିକ୍ଷା ଏକ ସାଧନ, ବଳିଷ୍ଠ ସାଧନ । ଏହା ଏକ ସଙ୍ଗଠିତ କାର୍ଯ୍ୟକ୍ରମ । ବାଳୁତଠାରୁ ବୃଦ୍ଧ ପର୍ଯ୍ୟନ୍ତ ସମସ୍ତେ ଏହାର ପରିସରଭୁକ୍ତ । ଏହାର ଆନୁଷ୍ଠାନିକ ଓ ଅଣଆନୁଷ୍ଠାନିକ ମାର୍ଗ ରହିଛି । ଏହା ଫଳରେ ଯେ କୌଣସି ନାଗରିକ ଶିକ୍ଷାର ପ୍ରଭାବରୁ ମୁକୁଳି ପାରିବେ ନାହିଁ । କିନ୍ତୁ ଏ ଦିଗରେ ଆମର ଅନେକ ଅଭାବ ରହିଛି । ତେଣୁ ଶିକ୍ଷା ଜାତୀୟ ସଂହତିର ସାଧନ ହେବାରେ ବିଘ୍ନ ଘଟୁଛି । ଯେପରି ଫଳପ୍ରଦ, ଶକ୍ତିଶାଳୀ ଓ ଗୁଣାତ୍ମକ ସାଧନ ହୋଇପାରନ୍ତା ତାହା ହୋଇପାରୁ ନାହିଁ ।

ଏଠାରେ ଜାଣି ରଖିବା ଯେ ଆମ ଦେଶ ଏକ ମହାନ୍ ସଂସ୍କୃତିର ପୀଠସ୍ଥଳୀ; ସତ୍ୟ, ଶାନ୍ତି, ଅହିଂସା ଓ ମୈତ୍ରୀ ଏହାର ମହନୀୟ ବୈଶିଷ୍ଟ୍ୟ, ଯାହା କି ବିଶ୍ୱର ଅନ୍ୟ

କୌଣସି ଦେଶର ସଂସ୍କୃତିରେ ବିରଳ । ଏହା ହେଉଛି ବିଭିନ୍ନତାରେ ଏକାତ୍ମତା । ଧର୍ମ, ଭାଷା, ଜାତି, ବର୍ଣ୍ଣ, ସାମାଜିକ ଚଳଣି ଦୃଷ୍ଟିରୁ ଆମ ସଂସ୍କୃତି ବିଚିତ୍ରବର୍ଣ୍ଣା ଓ ବିଭିନ୍ନ ହେଲେହେଁ ଅନ୍ତର୍ନିହିତ ସ୍ୱରଟି ଏକ ଓ ଅଭିନ୍ନ । ବିଭିନ୍ନତାର ଅନ୍ତରାଳରେ ଆକୁମାରୀ ହିମାଳୟ ''ଗୋଟିଏ ଭାରତୀୟ ଚରିତ୍ର ଓ ଗୋଟିଏ ଭାରତୀୟ ବ୍ୟକ୍ତିତ୍ୱ'' ଦେଖିବାକୁ ମିଳେ । ଆମେ ଭାରତବାସୀ, ଆମେ ମହାନ୍ ପୂର୍ବପୁରୁଷମାନଙ୍କ ଦାୟାଦ । ଏହାହିଁ ଆମ ମନ ମଧ୍ୟରେ ଏକତା ଓ ଅଖଣ୍ଡତାର ଭାବ ସୃଷ୍ଟିକରେ । ଆମେ କହିଛୁଁ, ଗାଇଛୁଁ ଓ କରିଛୁଁ ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ, ବସୁଧୈବ କୁଟୁମ୍ବକମ୍ । ଅର୍ଥାତ୍ ଜାତୀୟ ଏକତା ସହିତ ବିଶ୍ୱଜନପ୍ରୀତିର ଭାବନା ଆମକୁ ମାନବବାଦୀ କରିଛି । ଇତିହାସର ଏହି ପୃଷ୍ଠାଟିକୁ ଶିକ୍ଷାୟତନରେ ବିଦ୍ୟାର୍ଥୀଙ୍କ ମାନସିକ ବିକାଶ ସହିତ ତାଳ ରଖି ଫିଟାଇ ଦିଆଯିବା ଉଚିତ । ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ ସର୍ବଧର୍ମ ସମଭାବପନ୍ନତାରେ ରଞ୍ଜିତ ହେବା ଆବଶ୍ୟକ । ଧର୍ମନିରପେକ୍ଷତାର ଦୃଷ୍ଟିକୋଣରୁ ଇତିହାସ ଲେଖାଯିବା ଉଚିତ । ସାହିତ୍ୟ, ଭୂଗୋଳ ଆଦି ବିଷୟରେ ତଥା ଶିକ୍ଷା ଓ ଶିକ୍ଷାସହିତ ସମ୍ପୃକ୍ତ କାର୍ଯ୍ୟକ୍ରମରେ ପ୍ରତିଫଳିତ ହେବା ଦରକାର । ମୋ ମାତୃଭାଷା, ମୋ ଜନ୍ମସ୍ଥାନ ଓ ମୋ ପୂର୍ବପୁରୁଷଙ୍କ ଆଚରିତ ଧର୍ମ ଯେପରି ରହିଛି, ଅନ୍ୟମାନଙ୍କ ସେପରି ଭାଷା, ଜନ୍ମଭୂମି ଓ ଧର୍ମ ଅଛି । ପ୍ରତ୍ୟେକଟିକୁ ଆମେ ପ୍ରତ୍ୟେକେ ବୁଝିବା ଓ ସମ୍ମାନ ଦେବା । ଶିକ୍ଷାୟତନରେ ଏହି ସୁଯୋଗର ସୁବିଧା ବିଦ୍ୟାର୍ଥୀଙ୍କୁ ମିଳିବା ଉଚିତ । ଅଜ୍ଞତା, ଉଗ୍ରବାଦ, ଜାତ୍ୟାଭିମାନ, ସ୍ୱାର୍ଥାନ୍ଧତା, ଅହମିକା—ଏସବୁ ଅନୈକ୍ୟ ଓ ବିଚ୍ଛିନ୍ନତାର ସହାୟକ ଶକ୍ତି । ଅସ୍ତ୍ର ମଧ୍ୟ । ବିଦ୍ୱେଷ ଓ ଘୃଣା ମନୁଷ୍ୟତାର ଚିହ୍ନ ନୁହେଁ । ଅନେକ ଜାତି, ଅନେକ ଧର୍ମ ଓ ଅନେକ ଭାଷାର ଶିକ୍ଷାର୍ଥୀ, ଶିକ୍ଷାର ବିଭିନ୍ନ ସ୍ତରରେ ପ୍ରବେଶ କରନ୍ତି ଓ ସ୍ତର ସ୍ତର ଉନ୍ନୀତ ହୁଅନ୍ତି । ଏପରି ଅନେକ ଆସନ୍ତୁ ଓ ଏକତାର ଧ୍ୱନିଟିକୁ ହୃଦୟରେ ଝଙ୍କୃତ କରି ବିଦ୍ୟାୟତନରୁ ସମାଜକୁ ଯାଆନ୍ତୁ । ସମାଜପ୍ରତି ଉତ୍ତରଦାୟିତ୍ୱ ସେମାନଙ୍କ ଶିକ୍ଷାର ଅଙ୍ଗ ହେଉ । ଭାର୍ଗବୀ ନଦୀକୂଳର ପ୍ରତିଜ୍ଞା ସତ୍ୟବାଦୀ ପଞ୍ଚସଖା ଜୀବନକୁ ଶାଣିତ କରିଥିଲା । ଦେଶକୁ ଉନ୍ନତ କରିବାର ପ୍ରତିଶ୍ରୁତି ଆମର ଧ୍ୟେୟ ହେଉ ।

ଦେଶ ଆମ ପାଇଁ କଅଣ କରିଛି ବୋଲି ଆମେ ସହଜରେ ପଚାରୁଁ । ଅଥଚ ଦେଶ ପାଇଁ ଆମେ କଅଣ କରିଛୁଁ— ଏ ବିଷୟ ଆମେ ଆଦୌ ପଚାରୁନାହିଁ । ଅତଏବ ଦେଶର ବିକାଶ, ଏକତା ଓ ଅଖଣ୍ଡତା ପ୍ରତି ଆମେ କଅଣ କରିବା—ଏ ବିଷୟରେ ପ୍ରତ୍ୟେକ

ଶିକ୍ଷାର୍ଥୀ ଚିନ୍ତା କରିବେ, ନିଜ ଚିନ୍ତାକୁ ନିଜ ପରିସର ମଧ୍ୟରେ କାର୍ଯ୍ୟକାରୀ କରିବେ । ନିଜ ଚଲା ରାସ୍ତାଉପରୁ କଣ୍ଟା ଖୁଞ୍ଚିଟିଏ ଉଠାଇଦେବା, ଖାଲ ଉପରେ ମାଟିମୁଠେ ପକାଇ ଦେବା, ଗାଁ ସଫା କରିବା, ବଢ଼ି, ମରୁଡ଼ି ବେଳରେ ଲୋକଙ୍କୁ ସାହାଯ୍ୟ କରିବା, ସାକ୍ଷରତା ଅଭିଯାନରେ ଯୋଗ ଦେବା, ଗଛ ଲଗାଇବା, ଜଙ୍ଗଲ ସାଇତିବା, ଜାତୀୟ ସମ୍ପତ୍ତି ରକ୍ଷା କରିବା– ସାନ, ବଡ଼ କାର୍ଯ୍ୟ ବୟସ ଅନୁସାରେ ଶିକ୍ଷାୟତନରେ କରାଯାଉଛି ଓ ନିୟମିତ ଭାବରେ ବିଧିବଦ୍ଧ କାର୍ଯ୍ୟ କରାଯିବା ଉଚିତ । ପ୍ରତିବେଶୀ ଓ ସମାଜ ଅଭିମୁଖୀ ଶିକ୍ଷାୟତନ ହେବ । ଏଯାଏଁ ଏ କାର୍ଯ୍ୟ ଆଶାନୁରୂପ ହୋଇନାହିଁ । ଶିକ୍ଷାୟତନ ସମାଜଠାରୁ ଦୂରେଇ ରହିଛି । ପ୍ରାଚୀର ଗଢ଼ାଯାଇଛି । ଏହାକୁ ଉଠାଇ ଦେଇ ଶିକ୍ଷାୟତନକୁ ସମାଜର ଅବିଚ୍ଛେଦ୍ୟ କେନ୍ଦ୍ର ଭାବରେ ଗଢ଼ିବା ଉଚିତ ।

ପଇଁତିରିଶ ବର୍ଷରୁ ଅଧିକ ହେଲାଣି, ଜାତୀୟ ସଂହତି ପରିଷଦ ଗଠିତ ହୋଇଛି । ଶିକ୍ଷାର ଭୂମିକା ବିଷୟରେ ବହୁ ପରାମର୍ଶ ଦିଆଯାଇଛି । ଜାତୀୟ ସଂଗୀତ, ରାଷ୍ଟ୍ରୀୟ ଧ୍ୱଜ, ସଙ୍କେତ, ରାଷ୍ଟ୍ରଭାଷା, ଦେଶାତ୍ମବୋଧକ ସଂଗୀତ, ଗଣତନ୍ତ୍ର, ଧର୍ମନିରପେକ୍ଷତା, ସମାଜବାଦ, ଜାତୀୟ ଦିବସ ପାଳନ, ବିଭିନ୍ନ ସମୟରେ ଜାତୀୟ ମନୀଷୀମାନଙ୍କ ସ୍ମରଣ, ସ୍ୱାଧୀନତା ସଂଗ୍ରାମ କାହାଣୀ ଓ ସଂଗ୍ରାମୀମାନଙ୍କ ତ୍ୟାଗ ଓ ସେବା, ପରିଭ୍ରମଣ, ଜାତୀୟ ସଂହତି ଶିବିର, ସେବାମୂଳକ କାର୍ଯ୍ୟ, ଗୋଷ୍ଠୀ ସଙ୍ଗୀତ ଆଦିର ଅଭ୍ୟାସ ଓ ଅଧ୍ୟୟନ ପାଇଁ ସୁପାରିଶ କରାଯାଇଛି । ବିଭିନ୍ନ ସମୟରେ ଏସବୁ କାର୍ଯ୍ୟକାରୀ କରାଯାଉଛି । କିନ୍ତୁ ଏସବୁଥିପାଇଁ ଆଶାନୁରୂପ ନିଷ୍ଠା ରହୁ ନାହିଁ । ପୁସ୍ତକପାଠ ହିଁ ସାର ହେଉଛି । କାର୍ଯ୍ୟତଃ ସେପରି କରାଯାଉନାହିଁ । ତ୍ୟାଗ ଓ ସେବା କୌଣସି ଗଛର ଫଳ ନୁହେଁ, ଯାହାକୁ ତୋଳି ଆଣି ବିଭିନ୍ନ ବୟସର ଛାତ୍ରଛାତ୍ରୀଙ୍କୁ ଖୁଆଇ ଦେଲେ ସେମାନେ ଜନସେବୀ ଓ ତ୍ୟାଗୀ ହେବେ । ବିଭିନ୍ନ ପରିସ୍ଥିତିର ସୁଯୋଗ ନେଇ ଏସବୁ ମୂଲ୍ୟବୋଧକୁ ଜୀବନାଭ୍ୟାସରେ ପରିଣତ କରାଯିବ । ସମାଜର ବଡ଼ବଡ଼ିଆ ଓ ଗୁରୁଜନଙ୍କ କାର୍ଯ୍ୟାଭ୍ୟାସକୁ ପିଲେ ଆଖିରେ ଦେଖିବେ । ପରିବାର ଓ ସାମାଜିକ ଜୀବନରେ ଏସବୁ କରାଯାଉଥିବ । ଶିକ୍ଷାପାଇଁ ଏପରି ଅନୁକୂଳ ପାଣିପାଗ ନାହିଁ । ବରଂ ପ୍ରତିକୂଳ ହେଉଛି । ତଥାପି ଶିକ୍ଷା ପଛେଇଯିବ ନାହିଁ, ବରଂ ଦୃଢ଼ ପଦକ୍ଷେପ ସହ ଆଗେଇ ଚାଲିବ ।

ଦୁର୍ଭାଗ୍ୟର କଥା, ଆମ ଶିକ୍ଷା ଏବେବି ଚାକିରିସର୍ବସ୍ୱ ଜୀବନକୁ ମୁଣ୍ଡେଇ ଧରିଛି । ଘୋଷାଘୋଷିରେ ଚାଲିଛି । ପ୍ରତିଦ୍ୱନ୍ଦ୍ୱିତାମୂଳକ ବ୍ୟକ୍ତିବାଦ ଉପରେ ଗୁରୁତ୍ୱ ଦିଆଯାଉଛି ।

ସେଥିପାଇଁ ଜାତୀୟ ଚରିତ୍ର ଗଠନ ବାଧାପ୍ରାପ୍ତ ହେଉଛି । ସମତା ଓ ମମତାର ଆଚରଣ ସମ୍ଭବ ହେଉ ନାହିଁ । ସହଭାଗିତା, ସହଯୋଗିତା, ଭାଇପଣିଆ, ସଦ୍‌ଭାବନା ଆମ ହୃଦୟରେ ଜାଗ୍ରତ ହେଉନାହିଁ । ସେବା ମାଧ୍ୟମରେ ଶିକ୍ଷା, ସତ୍ୟବାଦୀ ବନବିଦ୍ୟାଳୟରେ ଦିଆଯାଇଥିଲା । ଗାନ୍ଧୀ ପରିକଳ୍ପିତ କର୍ମ ମାଧ୍ୟମରେ ଶିକ୍ଷା ଆମ୍ଭ ଜାତୀୟ ଜୀବନକୁ ଗଢ଼ିଥିଲା । ଶାନ୍ତିନିକେତନ ହୋଇଥିଲା ଯତ୍ର ବିଶ୍ୱଂ ଭବତ୍ୟେକ ନୀଡ଼ଂ । ଜାତୀୟତାରେ ପ୍ରଭାବିତ ବହୁ ପରୀକ୍ଷା ଆମ ଶିକ୍ଷା ଇତିହାସରେ ରହୁଛି । ଏହି ସବୁ ଢାଞ୍ଚା ଅନୁସାରେ ଆମ ଶିକ୍ଷାର ପୁନର୍ଗଠନ କରାଗଲେ ରାଷ୍ଟ୍ରୀୟ ସଂହତିକୁ ସୁଦୃଢ଼ କରାଯାଇପାରିବ ।

ଶିକ୍ଷକଙ୍କ ଭୂମିକା ଏକାନ୍ତ ଗୁରୁତ୍ୱପୂର୍ଣ୍ଣ । ସେ ପରିଚାଳନା କରିବେ, ସହାୟକ ହେବେ, ମାର୍ଗଦର୍ଶକ ହେବେ । ସେ ସମସ୍ତ ଭେଦ ଓ ବିଭିନ୍ନତା ମଧ୍ୟରେ ଏକାତ୍ମତାର ପ୍ରତୀକ ହେବେ । ଛାତ୍ର ସମାଜ, ସତ୍ୟ ଓ ଦେଶ ପ୍ରତି ସେ ଉତ୍ସର୍ଗୀକୃତ ରହିବା ଉଚିତ ।



# ସମବାୟ ଓ ସଂହତି

ଅସୁମାରି କଥା ଓ କାହାଣୀ । ଜନଜୀବନର ଜୟଯାତ୍ରା ଯୁଗେ ଯୁଗେ ବିମଣ୍ଡିତ ହୋଇଛି । ଖାଲ ପୂରି ଉଠିଛି, ଢିପ ସମାନ ହୋଇଛି । ରାସ୍ତା ଲମ୍ବିଛି । ଯାତ୍ରା ସୁଗମ ହୋଇଛି । ଅନନ୍ତକାଳର ଅନ୍ତ କଳନା କରି ହେଉନାହିଁ । ଆଗକୁ ବି ଆଖି ପାଉନାହିଁ । ସରୁ ସୂତାଖିଅଟିଏ ପରି ଅଦୃଶ୍ୟ ହୋଇଛି ସଂସ୍କୃତିର ସ୍ରୋତ – ଚିର ରସାଣିତ ଲୋକମୁଖରେ, ଲୋକଚରିତ୍ରରେ ଓ କଥାକାହାଣୀରେ ।

ବହୁଦିନର ସେ କଥାଟି । ବୁଢ଼ା ଜଣକ ପୁଅମାନଙ୍କୁ ହକାରି ଜାଳେଣି କାଠର ବିଡ଼ାଟିଏ ଦେଇଛନ୍ତି । ବିଡ଼ାରେ କାଠଖଣ୍ଡ ଭାଙ୍ଗୁ ନାହିଁ । କିନ୍ତୁ ବିଡ଼ା ହୁଗୁଳି ଅଲଗା ଅଲଗା କାଠଖଣ୍ଡ ଅନାୟାସରେ ଟୁକ୍‌ଟାକ୍ ଭାଙ୍ଗିଯାଉଛି । ପୁଅମାନଙ୍କ ବିସ୍ମୟ ଅସୀମ ଓ ଅନୁଭବ ହେଉଛି ''ଏକତା ହିଁ ବଳ'' । ଯୋଡ଼ାକୁ ଘୋଡ଼ା ପାରେ ନାହିଁ । ଯୌଥ ଜୀବନର ଶକ୍ତି ସୀମାହୀନ । ଏହି କାହାଣୀର ଶିକ୍ଷା ଅଭୁଲା । ଜୀବନରେ ପାସୋରି ହୁଏ ନାହିଁ । କଳି ଭୁଲି ପିଲାମାନେ ଭ୍ରାତୃତ୍ୱର ଜୀବନକୁ ଜୀବନବ୍ୟାପୀ କରି ନେଇଛନ୍ତି । କେତେ ପିଢ଼ିର ଜୀବନକୁ ଗଢ଼ି ଯାଇଛି ଓ ଶିକ୍ଷାର ଦିହୁଡ଼ି ଆଖିଖୋଲି ଦେଇଛି ।

ଏହା ତ ମନୁଷ୍ୟ ଜୀବନର କଥା । ସେ ବିବେକୀ ପ୍ରାଣୀ । କଥା ପଦଟିଏ ଓ ସାମାନ୍ୟ ଦୃଷ୍ଟାନ୍ତଟିଏ ତା ଜୀବନରେ ଅଭୂତପୂର୍ବ ପରିବର୍ତ୍ତନ ଆଣିଦିଏ । ପିମ୍ପୁଡ଼ି, ମହୁମାଛି ଆଦି ପ୍ରାଣୀଙ୍କ ସଂଘବଦ୍ଧତା ଉଦାହରଣ ରୂପେ ସ୍ଥାନ ପାଇଛି । କେତେକ ପକ୍ଷୀଙ୍କ କଥା ଦେଖାଯାଉ । ଘରଚଟିଆ ପଲଟିଏ । ଜିହ୍ୱାର ଲୋଭ କାହାକୁ କବଳିତ ନ କରିଛି ? ଗୋଟି ଗୋଟି ପରିବାର କଳିହୁଡ଼ାଙ୍କ ପାଲରେ ଧ୍ୱଂସ ପାଇଛି । ରାଜ୍ୟ ଓ ସାମ୍ରାଜ୍ୟ ଏଥିରୁ ରକ୍ଷା ପାଇନାହିଁ । ଆଜିର ବୈଜ୍ଞାନିକ ଯୁଗରେ ସୁଦ୍ଧା ଅସଂଯତ ଜିହ୍ୱା ରାସାୟନିକ ଯୁଦ୍ଧର କାରଣ ହୋଇପାରେ । ଦୁର୍ଲ୍ଲଭ ଶରୀର ମଧ୍ୟ ଘୁଣଖିଆ ହୋଇଯାଏ । ଅଣାୟତ୍ତ ଜିହ୍ୱା ମନୁଷ୍ୟକୁ ଶେଷରେ ଯମଦ୍ୱାର ଆଡ଼କୁ ଟାଣିନିଏ । ଘରଚଟିଆଙ୍କ ଦଶା ସେଇଆ ହୋଇଛି । ପଲଟାଯାକ ବାଣୁଆର ମାଇରେ । ଯେତେବେଳେ ଘୋର ବିପଦ ମାଡ଼ି ଆସିଛି, କଥାକାର ସେତେବେଳେ ବୁଢ଼ାଚଟିଆର ଯାଦୁ କରିଛନ୍ତି । ଆପଦ କାଳରେ 'ବୃଦ୍ଧସ୍ୟ ବଚନମ୍ ଗ୍ରାହ୍ୟ' । ଠିକ୍ ସେହି ନ୍ୟାୟରେ ପଲେ ଚଟିଆ ବୃଦ୍ଧର କଥା ମାନି ଏକ ସଙ୍ଗରେ ଉଡ଼ିଛନ୍ତି ଓ ଜାଲ

ସହିତ ଜୀବନ ରକ୍ଷା କରିଛନ୍ତି । ବାଣୁଆ ବିସ୍ମିତ, କାରଣ ସେ ପରାଜିତ । ଜୟ ଜୟକାର ହେଉଛି 'ସଂହତିର ଶକ୍ତି' । 'ସଂହତ୍ୟେବ ଜୟତେ' । ସବୁ ଯୁଗରେ ସଂହତିର ଆବଶ୍ୟକତା ରହିଛି ସମାଜର ସ୍ଥିତି ଓ ପ୍ରଗତି ପାଇଁ । ପୁନଶ୍ଚ ସଂହତି ପାଇଁ ଏକାତ୍ମତା ଓ ଏକନିଷ୍ଠ କାର୍ଯ୍ୟ । ସମସ୍ତଙ୍କର ଏକାନ୍ତ ସହଯୋଗ ।

ସଂହତିରୁ ଶକ୍ତି କିପରି ଆସେ, ଏହା ଆମେ ନିଜେ କରି ଦେଖିପାରିବା । ଦିନେ ଯାହା ଶୈଶବର କ୍ରୀଡ଼ା ତାହାହିଁ କାଳକ୍ରମେ ଯୌବନର କରାମତି ଓ କରଣି ହୋଇ ରହିଛି । ନୂଆ ଲୁଗାର କାନିରୁ ସୂତାଖିଅ ଆପେ ବାହାରିପଡ଼େ । ସେ ଖିଅ ଟୁକ୍‌ଟାକ୍ ଛିଣ୍ଡିଯାଏ । କିନ୍ତୁ ବାମ ହାତର ବୁଢ଼ା ଓ କାଣି ଆଙ୍ଗୁଳି ମଧ୍ୟରେ ଖୁବ୍ ଯେତେ ଫରଚା କରିହେବ ସେତିକି କରି ରଖି ଡାହାଣ ହାତରେ ସୂତାଖିଅ ନେଇ ଦଶ ପରସ୍ତ ଖଣ୍ଡେ ଗୁଡ଼ାଇ ଦେଲେ ଆଉ ତାକୁ ଛିଣ୍ଡାଇବା ସହଜ ନୁହେଁ । ଏପରି ପିଲାଦିନର ଖେଳ । ଖିଅଟା ଦୁଇ ଆଙ୍ଗୁଳିରେ ଛିଡ଼ିଯାଏ । କିନ୍ତୁ ଦଶ ବା ସେଥିରୁ ଅଧିକ ପରସ୍ତ ସୂତା ଏକାଠି କରିଦେଲେ ତାହା ଦୁଇ ହାତରେ ଛିଡ଼େ ନାହିଁ । ନଡ଼ା, ଲଇ ବା ଯେକୌଣସି ତୃଣରୁ ଅନେକଗୁଡ଼ିକୁ ଗୁଚ୍ଛ କରିଦେଲେ ବା ବଳି ଦଉଡ଼ା କରିଦେଲେ ହାତୀ ପରି ବୃହଦାକାର ବଣ୍ୟଜନ୍ତୁକୁ ବାନ୍ଧି ଦିଆଯାଇ ପାରିବ । ସେଥିପାଇଁ କୁହାଯାଏ, "ତୃଣୈଷ୍ଟର୍ନଦ୍ରୁମା ପନ୍ନୈର୍ବଧ୍ୟନ୍ତେ ମତ୍ତଦାନ୍ତନଃ" । ଅନେକଗୁଡ଼ିଏ ତୃଣଗୁଚ୍ଛ ଏକତ୍ର କରି ରଜ୍ଜୁ ପ୍ରସ୍ତୁତ ହେଲେ ତଦ୍ଦ୍ୱାରା ମତ୍ତହସ୍ତୀକୁ ଆୟତ୍ତ କରିହେବ । ସଂହତି ଯେ ଶକ୍ତିଦାୟକ, ଏହାର ଅନ୍ୟ ଉଜ୍ଜ୍ୱଳ ଦୃଷ୍ଟାନ୍ତ କଅଣ ହୋଇପାରେ କି ? ବସ୍ତୁତଃ ଏହାହିଁ ସତ୍ୟ ଯେ ଆମେ ସଂଘବଦ୍ଧ ହେଲେ ଆମର ଅଗ୍ରଗତି ସୁନିଶ୍ଚିତ । ପକ୍ଷାନ୍ତରରେ ଆମେ ବିଭାଜିତ ହୋଇଗଲେ ଆମ ପତନ ଅବଶ୍ୟମ୍ଭାବୀ । ଗୃହ ବିବାଦରୁ ପତନ ବା ଆଭ୍ୟନ୍ତରୀଣ ଐକ୍ୟ ଯୋଗୁଁ ଉତ୍‌ଥାନର ବହୁ ଉଦାହରଣରେ ଇତିହାସର ପୃଷ୍ଠା ଗର୍ଭିତ ।

ଇତିହାସରୁ ଆମେ ଏହି ଅବସରରେ ଶିକ୍ଷା ନେବା । ସମ୍ରାଟ ଅଶୋକ, ନିଜ ରାଜୁତିର ଦଶମ ବର୍ଷ ଅର୍ଥାତ୍ ଖ୍ରୀଷ୍ଟପୂର୍ବ ୨୬୦ରୁ ବୌଦ୍ଧଧର୍ମ ଗ୍ରହଣ କରିଛନ୍ତି ଓ ଜୀବନବ୍ୟାପୀ ବୌଦ୍ଧ ହୋଇ ରହିଛନ୍ତି । କିନ୍ତୁ ସେ କଦାପି ନିଜ ପ୍ରଜାଗଣଙ୍କୁ ବୌଦ୍ଧଧର୍ମରେ ଦୀକ୍ଷିତ କରିବାର ପ୍ରୟାସ କରି ନାହାନ୍ତି । ପକ୍ଷାନ୍ତରରେ ସେ ଦ୍ୱାଦଶ ଶିଳାଲେଖରେ ଘୋଷଣା କରନ୍ତି "ଅନ୍ୟମାନଙ୍କ ଧର୍ମବିଶ୍ୱାସକୁ ସମ୍ମାନ ଦେବାର କଥା । ସେସବୁକୁ ସମ୍ମାନ ଦେବା ଦ୍ୱାରା ମନୁଷ୍ୟ ନିଜ ବିଶ୍ୱାସକୁ ଗୌରବ ଦିଅନ୍ତି ଓ ଏହା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କ ବିଶ୍ୱାସର ସେବା ସେ କରନ୍ତି । ଏହାର ପ୍ରତିକୂଳାଚରଣ କରାଗଲେ ମନୁଷ୍ୟ ତାଙ୍କ ନିଜ ବିଶ୍ୱାସର କ୍ଷତି କରନ୍ତି ଓ ଅନ୍ୟମାନଙ୍କ ଧର୍ମବିଶ୍ୱାସର ଅବମାନନା ମଧ୍ୟ କରନ୍ତି । କାରଣ

ଯଦି କାହାର ନିଜ ବିଶ୍ୱାସ ପ୍ରତି ଭକ୍ତି ଥିବା ହେତୁରୁ ଓ ନିଜ ବିଶ୍ୱାସକୁ ସମ୍ମାନ ଦେବାପାଇଁ ସେ ନିଜ ବିଶ୍ୱାସରେ ଗୌରବ ଗାନ କରନ୍ତି ଓ ଅନ୍ୟ ବିଶ୍ୱାସକୁ ଘୃଣା କରନ୍ତି ତେବେ ସେ ନିଜ ବିଶ୍ୱାସର ଘୋର ଅନିଷ୍ଟ କରନ୍ତି । ତେଣୁ "ସମବାୟ ଏବ ସାଧୁ" । କାରଣ ସମବାୟ ମାଧ୍ୟମରେ ଅନ୍ୟମାନଙ୍କ ଆଚରିତ ଧର୍ମଧାରଣାକୁ ମନୁଷ୍ୟମାନେ ସମ୍ମାନ କରିପାରିବେ ଓ ସେଥିରୁ ଶିକ୍ଷା ପାଇ ପାରିବେ । ସକଳ ଧର୍ମରେ ଆଶ୍ରିତ ବ୍ୟକ୍ତିଗଣ ପରସ୍ପରର ଧର୍ମମତକୁ ଜାଣିବାପାଇଁ ଏବଂ ସୁସ୍ଥ ଧର୍ମମତ ଅର୍ଜନ କରିବାପାଇଁ ସମ୍ରାଟ ପ୍ରିୟଦର୍ଶୀ ଇଚ୍ଛା କରନ୍ତି । ଏହି ସବୁ ନିର୍ଦ୍ଦିଷ୍ଟ ବିଶ୍ୱାସରେ ଯେଉଁମାନେ ଅନୁରକ୍ତ ସେମାନଙ୍କୁ କହିଦେବା ଉଚିତ ଯେ ସମ୍ରାଟ ପ୍ରିୟଦର୍ଶୀ ବିଭିନ୍ନ ମତରେ ଆଶ୍ରିତ ଲୋକମାନଙ୍କର ଧର୍ମ ଲାଗି ଅତ୍ୟାବଶ୍ୟକ ସଦ୍‌ଗୁଣର ବିକାଶ ପାଇଁ ଯେତେ ଗୁରୁତ୍ୱ ଦିଅନ୍ତି, ସମ୍ମାନ ବା ଉପହାର ପାଇଁ ସେତେ ଦିଅନ୍ତି ନାହିଁ । ଅଶୋକ ସତ୍ୟ ଧର୍ମର ବିକାଶ ବା ସାରବୃଦ୍ଧି ପାଇଁ ଦୃଢ଼ପରିକର ଥିଲେ । ସମବାୟ ହେଉଛି ଅନ୍ୟର ମତ ଓ ବିଶ୍ୱାସ ପ୍ରତି ସମ୍ମାନ । ଏହାହିଁ ସହନଶୀଳତା । ମନୁଷ୍ୟ ହେଉଛି ଜଗତର ଶ୍ରେଷ୍ଠ ପ୍ରାଣୀ । ସେ ସାମାଜିକ ଓ ସହନଶୀଳ । ଏହା ଫଳରେ ସେ ନିଜର ତଥା ଅନ୍ୟମାନଙ୍କ ବିକାଶରେ ସହାୟକ ହୁଅନ୍ତି । ଏଥିପାଇଁ ବିଭିନ୍ନତା ମଧ୍ୟରେ ସେ ଅନ୍ୟମାନଙ୍କ ସହିତ ଏକତ୍ର ହୁଅନ୍ତି । ଏହାହିଁ ସମବାୟ ।

କେବଳ ଏତିକି ନୁହେଁ, ସମବାୟର ଉତ୍ସ ଆହୁରି ସୁଦୂର ଅତୀତର ଗହ୍ୱର ମଧ୍ୟରେ ରହିଛି । ଶ୍ରୁତିଶାସ୍ତ୍ରାଦିର ଅମୀୟବାଣୀ ଏହାର ଜ୍ୱଳନ୍ତ ପ୍ରମାଣ । କେତୋଟି ଉଦାହରଣ ଭାବରେ ଅଥର୍ବ ବେଦରେ ନିମ୍ନୋକ୍ତ ଶ୍ଳୋକ (କାଣ୍ଡ ୩, ସୂକ୍ତି ୩୦, ମନ୍ତ୍ର ୬) ଅନ୍ୟତମ ।

*ସମାନୀ ପ୍ରପା ସହ ବୋଅନ୍ନଭାଗଃ*

*ସମାନେ ଯୋକ୍ତ୍ରେ ସହ ବୋ ଯୁନଜ୍ମି*

*ସମ୍ୟଂ ଚୋଅଗ୍ନିଂ ସହର୍ଯତାରା ନାଭିମିବାଭିତଃ*

"ହେ ମନୁଷ୍ୟଗଣ, ତୁମ୍ଭମାନଙ୍କ ଜଳପାନର ସମ୍ମାନ ହେଉ– ମୁଁ ତୁମ୍ଭମାନଙ୍କୁ ଗୋଟିଏ ଯୋତ ବା ଯୁଆଳିରେ ବାନ୍ଧୁଅଛି । ତୁମ୍ଭେ ଏକାଠି ହୋଇ ପ୍ରକାଶମୟ ବା ତେଜୋମୟ ପରମେଶ୍ୱରଙ୍କର ଉପାସନା କର, ଠିକ୍ ଯେପରି ଗୋଟିଏ ଚକ୍ରର ସମସ୍ତ ଅର ଗୋଟିଏ ମୂଳ କେନ୍ଦ୍ରରେ ଯୁକ୍ତହୋଇ ଗତି କରୁଥାଏ, ତୁମ୍ଭେମାନେ ସେହିପରି ଅନ୍ତିମ ଉଦ୍ଦେଶ୍ୟ ସାଧନ ଦିଗରେ ଏକତ୍ର ଗତି କର ।"

ଅନ୍ୟ ଏକ ସୂକ୍ତିର ମୁଖ୍ୟ ବିଚାର ହେଉଛି "ପରସ୍ପର ପ୍ରତି ପ୍ରୀତିପୂର୍ବକ ବ୍ୟବହାର କର–ଯେପରି ଗାଈ ତା'ର ନବଜାତ ବତ୍ସ ସହିତ ବ୍ୟବହାର କରେ ।"

ସମବାୟର ଏହି ମର୍ମ ଓ ମୂଳ କଥା ମଧ୍ୟ ଝଙ୍କୃତ ହୁଏ ଋଗ୍‌ବେଦ ଦଶମ ମଣ୍ଡଳ ୧୯୧ ସୂକ୍ତି ୨ୟ, ୩ୟ ଓ ୪ର୍ଥ ମନ୍ତ୍ରରେ । ୨ୟ ମନ୍ତ୍ରଟି ହେଉଛି :

*ସଂଗଚ୍ଛଧ୍ୱଂ ସଂବଦଧ୍ୱଂ ସଂବୋ ମନାଂସି ଜାନତାଂ*

*ଦେବା ଭାଗଂ ଯଥା ପୂର୍ବେ ସଂଜନାନା ଉପାସତେ ।*

''ହେ ମନୁଷ୍ୟ, ତୁମ୍ଭେମାନେ ସମସ୍ତେ ମିଳିମିଶି ଚାଲ । ମିଳିମିଶି ବାର୍ତ୍ତାଳାପ କର । ପରସ୍ପର ସହଯୋଗପୂର୍ବକ ଜ୍ଞାନ ପ୍ରାପ୍ତ କର । ପୂର୍ବ କଳ୍ପର ମନୁଷ୍ୟମାନେ ଏହିରୂପେ ଜ୍ଞାନପ୍ରାପ୍ତ ହୋଇଥିଲେ ।''

ଏହି ଜ୍ଞାନ ହିଁ ଶକ୍ତି । ଶକ୍ତି ଅର୍ଜନ କଲେ ସେଥିରୁ ଅର୍ଥନୈତିକ, ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ପ୍ରଗତି ହୁଏ । ସମଗ୍ର ମାନବର ଓ ମାନବ ସମାଜର ସର୍ବାଙ୍ଗୀନ ତଥା ସର୍ବୋତ୍ତମ ପ୍ରଗତି, କାରଣ ଏହି ଜ୍ଞାନାଲାଭରେ ପରସ୍ପର ସହଯୋଗ ରହିଛି । ଜଣକ ପାଇଁ ଗଣର ଓ ଗଣ ପାଇଁ ଜଣର ତ୍ୟାଗ, ନିଷ୍ଠା ଓ ସାଧନାର ପରାକାଷ୍ଠା ପ୍ରୟୋଗ କରାଯାଇଛି । ଜଣ ଓ ଗଣ ଏକ ସ୍ୱାଭାବିକ ଗତିରେ ସଂଶ୍ଳିଷ୍ଟ ହୋଇଛନ୍ତି । ଏଥିପାଇଁ ଏହି ମୁହୂର୍ତ୍ତର ଓ ଏହି ସ୍ୱାର୍ଥ ସାଧନର ସେତୁରୂପେ ଏହି ସଂଶ୍ଳିଷ୍ଟତାର ଅବତାରଣା କରାଯାଇନାହିଁ । ବରଂ ଏହା ଶାଶ୍ୱତ ଓ ଗତିଶୀଳ । ଏହା ଜୀବନବ୍ୟାପୀ ହୋଇଛି ଲମ୍ୱ ଓ ପ୍ରସ୍ଥରେ । ହାତକୁ ହାତ ଛନ୍ଦି ହୋଇ ହାତମୁଠା ଟାଣ କରାଯାଇଛି । ଏହି ହସ୍ତବନ୍ଧନ ଅପୂର୍ବ, କାରଣ ଆକାର, ପ୍ରକାର, ପରିସର ଓ ଶକ୍ତିର ବିଭିନ୍ନତାର ଉପଯୋଗ କରାଯାଇ ମୁଠାର ତାକତ୍ ଅଦ୍‌ଭୁତଭାବରେ ଶକ୍ତିଶାଳୀ ହୋଇପଡ଼ିଛି । ବହୁ ବିଭିନ୍ନତା ପରିଚାୟକ ହୁଏ ବିଚ୍ଛିନ୍ନତା, ବିଭେଦ ଓ ଦୁର୍ବଳତାର । କିନ୍ତୁ ଏହାହିଁ ଅପୂର୍ବତା, କାରଣ ବହୁ ବିଭିନ୍ନତାର ସମାବେଶ ସୃଷ୍ଟି କରେ ଐକ୍ୟ, ମୈତ୍ରୀ ଓ ପ୍ରୀତି । ଏହା ଅସୀମ ଶକ୍ତିର ଅଫୁରନ୍ତ ଉତ୍ସ ହୋଇ ରହେ । ବିଭିନ୍ନତାର ଭେଦ ଏଠାରେ ନାହିଁ, କିନ୍ତୁ ଅଛି ବିଭିନ୍ନତାରେ ଐକ୍ୟ । ପାରସ୍ପରିକ ସାହାଯ୍ୟ ଓ ସେବା ଫଳରେ ବ୍ୟକ୍ତିର ସ୍ୱକୀୟ ବିକାଶ ଘଟେ । ବିକାଶର ଧାରାରେ ଏହା ଏକ ଅଭିନବ ଦିଗନ୍ତ ଉନ୍ମୋଚନ କରେ, ଦାରିଦ୍ର୍ୟରୁ ପ୍ରାଚୁର୍ଯ୍ୟ ଆଡ଼କୁ ଅଭିମୁଖିତାର ସୋପାନ ହେଉଛି ସମବାୟ ଆନ୍ଦୋଳନ ।

ବର୍ତ୍ତମାନ ଆମ ଦୃଷ୍ଟି ନିକ୍ଷିପ୍ତ ହେଉ ଊନବିଂଶ ଶତାବ୍ଦୀ ପ୍ରତି । ୧୮୪୪ ମସିହାର କଥା । ବିଲାତର ଲାଙ୍କାସାୟାର ବୟନ ଶିଳ୍ପ ପାଇଁ ପ୍ରସିଦ୍ଧି ଲାଭ କରିଛି । ଦଳେ ବୁଣାଳି The Rochdale Society of Equitable Pioneers ପ୍ରତିଷ୍ଠା କରନ୍ତି । ଏହାକୁ ଆଧୁନିକ ସମବାୟର ପ୍ରଥମ ପଦକ୍ଷେପ ବୋଲି ଧରାଯାଏ । ସାମ୍ପ୍ରତିକ ସମବାୟ ଆନ୍ଦୋଳନ

ସମ୍ବନ୍ଧୀୟ ବିଚାର ଓ ନୀତିଗୁଡ଼ିକ ସେଥିରୁ ଉଦ୍‌ଭୂତ ହୋଇଥିବାର ଜଣାଯାଏ । ଦେଶ ଓ କାଳର ବିଭିନ୍ନତା ହେତୁ ସମବାୟ ଅନୁଷ୍ଠାନର ରୂପରେଖ ଭିନ୍ନ ଭିନ୍ନ ହୋଇଥିଲେ ହେଁ ସେମାନଙ୍କର ମୌଳିକ ନୀତିଗୁଡ଼ିକ ରକଡେଲ ନୀତି ଦ୍ୱାରା ପ୍ରଭାବିତ ହୋଇଥିବାର ଅନୁମାନ କରାଯାଏ । ଏହି ନୀତିଗୁଡ଼ିକ ହେଉଛି : (୧) ସ୍ୱେଚ୍ଛାପ୍ରଣୋଦିତ ସଙ୍ଗଠନ, ସାମାଜିକ, ରାଜନୈତିକ କିମ୍ବା ଧାର୍ମିକ ବିଚାର ଦୃଷ୍ଟିରୁ କୌଣସି ବିଭେଦ କାହାରି ପ୍ରତି ସଭ୍ୟ ହେବାପାଇଁ ଲାଗୁ କରାଯିବ ନାହିଁ । ସଭ୍ୟ ଦାୟିତ୍ୱସମ୍ପନ୍ନ ହେବେ ଓ ଏହାର ସେବା କାମରେ ଲଗାଇ ପାରିବେ । (୨) ଗଣତାନ୍ତ୍ରିକ ସଙ୍ଗଠନ—ଜଣେ ସଭ୍ୟ, ଗୋଟିଏ ଭୋଟ ନ୍ୟାୟରେ ପ୍ରାଥମିକ ସମିତିର ସଭ୍ୟମାନେ ଭୋଟ ଦେବାର ସମାନ ଅଧିକାର ଉପଭୋଗ କରନ୍ତି । ସେହି ଭାବରେ ନିଷ୍ପତ୍ତି ଗ୍ରହଣ କରନ୍ତି । ଗଣତାନ୍ତ୍ରିକ ପ୍ରକ୍ରିୟାର ଅନୁସରଣ କରାଯାଏ । (୩) ପୁଞ୍ଜି ପାଇଁ ସୁଧର ସୀମିତ ହାର ଲାଭାଂଶ ଭାବରେ ଲାଗୁ କରାଯାଏ । (୪) କୌଣସି ସମିତିର ବଳକା ବା ସଞ୍ଚିତ ଲାଭାଂଶର ଯୁକ୍ତିଯୁକ୍ତ ବଣ୍ଟନ ସେହି ସମିତିର ସଭ୍ୟମାନଙ୍କ ମଧ୍ୟରେ କରାଯାଏ । ଅନ୍ୟ ସଭ୍ୟମାନଙ୍କ ତୁଳନାରେ ଜଣେ ସଭ୍ୟ ମାରି ନେବାର ପ୍ରଶ୍ନ ନଥାଏ । (୫) ସମବାୟର ଅର୍ଥନୈତିକ ଓ ଗଣତାନ୍ତ୍ରିକ ନୀତି ତଥା ପଦ୍ଧତି ବିଷୟରେ ସମବାୟ ସଙ୍ଗଠନଗୁଡ଼ିକର ସଭ୍ୟ, କର୍ମଚାରୀ, କର୍ମୀ ଏବଂ ଜନସାଧାରଣଙ୍କୁ ଶିକ୍ଷା ଦେବାପାଇଁ ବ୍ୟବସ୍ଥା କରିବେ । (୬) ସମବାୟ ସଙ୍ଗଠନଗୁଡ଼ିକ ମଧ୍ୟରେ ସହଯୋଗ—ସମବାୟ ସଙ୍ଗଠନଗୁଡ଼ିକ ସେମାନଙ୍କର ସଭ୍ୟ ତଥା ଗୋଷ୍ଠୀର ସ୍ୱାର୍ଥସେବା କରିବାପାଇଁ ସ୍ଥାନୀୟ, ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରର ସମବାୟ ସଙ୍ଗଠନ ସହିତ ଯଥାର୍ଥ ଭାବରେ ସହଯୋଗ କରିବା ଆବଶ୍ୟକ ।

ଇନ୍ଦ୍ରଧନୁ ଚିହ୍ନିତ ସମବାୟ ଧ୍ୱଜା ଗଗନ ପବନରେ ଫରଫର ହୁଏ । ସମବାୟ ଜୀବନଯାପନ୍ନ ପ୍ରଣାଳୀ ଏବଂ ଗଣତାନ୍ତ୍ରିକ ସମାଜବାଦର ପ୍ରତିଷ୍ଠା ଦିଗରେ ଏକ ପଦକ୍ଷେପ ଭାବରେ ଜାତୀୟ ଅର୍ଥନୀତିରେ ଗୋଟିଏ ଗତିଶୀଳ ସମବାୟ ବିଭାଗର ବିକାଶରେ ଭାରତୀୟମାନଙ୍କ ଆସ୍ଥା ସେଥିରୁ ପ୍ରକଟିତ ହୁଏ । ଜନଶ୍ରୁତିରୁ ଜଣାଯାଏ ଯେ ଇନ୍ଦ୍ରଧନୁ ହେଉଛି ଆଶାର ପ୍ରତୀକ ଏବଂ ଶାନ୍ତିର ଅଗ୍ରଦୂତ । ଉଲ୍ଲାସ ଓ ଆନନ୍ଦାନୁଭବ କରେ ମନୁଷ୍ୟ ଇନ୍ଦ୍ରଧନୁର ସନ୍ଦର୍ଶନରେ । ସେ ମଧ୍ୟ ଚରମ ତଥା ସର୍ବବ୍ୟାପୀ ସମନ୍ୱୟ ଓ ସଂହତି ଅନୁଭବ କରେ । ଏହି ପତାକାର ପ୍ରଥମ ପରିକଳ୍ପନା କରନ୍ତି ଫ୍ରାନ୍‌ସର ଚାର୍ଲସ ଫୋରିଅର (Charles Fourier) ବିଭେଦରେ ଐକ୍ୟ (Unity in diversity) ଚିହ୍ନ ଭାବରେ । ସାତଗୋଟି ରଙ୍ଗର ସୁସ୍ପଷ୍ଟ ଉପସ୍ଥାପନ ପାଇଁ ଗୋଟିଏ ଶ୍ୱେତ ପୃଷ୍ଠଭୂମି ସ୍ଥିର କରାଗଲା ଓ କୋଣକୁ ଗୋଟିଏ ତାରକାର ଚିହ୍ନ ରହିଲା । ଏହି ପତାକା ସମବାୟର ପ୍ରତୀକ, ପ୍ରକାଶକ

ଓ ଦ୍ୟୋତକ । ଏକାତ୍ମତାର ପବିତ୍ରତାରେ ଏହା ଭୂଷିତ ହୁଏ । ସମସ୍ତ ସଂକୀର୍ଣ୍ଣତାକୁ ପରିହାର କରି ବିଭିନ୍ନ ଜାତି ଓ ଜାତୀୟତାର ପ୍ରତିନିଧିତ୍ୱ କରୁଥିଲେ ହେଁ ଏହି ପତାକା ସମସ୍ତଙ୍କୁ ଶାନ୍ତି, ସଂହତି ଓ ସହାବସ୍ଥାନରେ ଜୀବନଯାପନ କରିବାକୁ ଆହ୍ୱାନ ଦିଏ । ଏହାହିଁ ହେଉଛି ସହଯୋଗୀ ଜୀବନଯାପନ ପ୍ରଣାଳୀର ଅନ୍ତିମ ଆଦର୍ଶ ଓ ସ୍ୱର୍ଗତ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କ ଭାଷାରେ ଏହା ନ୍ୟାୟ, ସମତା ଓ ଶାନ୍ତି ଉପରେ ଆଧାରିତ ବିଶ୍ୱ-ସମାଜର ପ୍ରତିଷ୍ଠା ଦିଗରେ ସାହାଯ୍ୟ କରିବ ।

ଅତଏବ ସମବାୟ ଆନ୍ଦୋଳନ ତଥା ଅନୁଷ୍ଠାନଗୁଡ଼ିକର ସୁପରିଚାଳନା କରାଇ ପାରିଲେ ଏହାର ଅନ୍ତର୍ନିହିତ ଆଦର୍ଶ ସ୍ୱତଃ ଆତ୍ମପ୍ରକାଶ କରିବ । ସମାଜର ତଳରୁ ତାଳୁ ପର୍ଯ୍ୟନ୍ତ ସବୁ ଶ୍ରେଣୀରେ ଏହି ଆଦର୍ଶ ରୂପାୟିତ ହୋଇ ସମାଜରେ ସଂହତି ସୁଦୃଢ଼ ହେବ । ଦାରିଦ୍ର୍ୟ ଓ ନିରକ୍ଷରତା ଏତେଦୂର ଉତ୍କଟ ହୋଇଛି ଯେ ବିଚ୍ଛିନ୍ନତା ଓ ବିଭେଦର ଶକ୍ତି ସମାଜକୁ ଖଣ୍ଡିତ କରି ଏକାତ୍ମତା ଓ ଅଖଣ୍ଡତାକୁ ଦୁର୍ବଳ କରି ପକାଉଛି । ଦାରିଦ୍ର୍ୟ ଓ ନିରକ୍ଷରତା ସହିତ ଜନସଂଖ୍ୟା ବିସ୍ଫୋରଣ ଆମ ସାମାଜିକ ବ୍ୟାଧି ହୋଇପଡ଼ିଛି । ଏଥି ସହିତ କୁସଂସ୍କାର, ଅନ୍ଧବିଶ୍ୱାସ, ଭାଗ୍ୟବାଦ, ହୀନମନ୍ୟତା ଓ ହତାଶପଣିଆ ଆମକୁ କୂପମଣ୍ଡୁକ କରି ରଖିଛି । ସଂକୀର୍ଣ୍ଣତା ଆମ ଜୀବନକୁ ଶ୍ରୀହୀନ କରି ପକାଇଛି । ଆମେ ଉଦାରଚେତା ହୋଇ ଏକଦା ଆମ ଆଚରିତ ଓ ଉଦ୍‌ଘୋଷିତ ବସୁଧୈବ କୁଟୁମ୍ବକମ୍ ଏବେ ପୋଷଣ ଓ ପାଳନ କରି ପାରୁନାହିଁ । ଦରିଦ୍ର ପଞ୍ଚାକ୍ଷର ଆମ ସମ୍ବଳ ହୋଇଛି । ଧନୀ ଓ ଦରିଦ୍ରର ବିଭାଜନ ଓ ବ୍ୟବଧାନ ସାମାଜିକ ଐକ୍ୟ ସାଧନରେ ଘୋର ଅନ୍ତରାୟ ହୋଇଛି । ଧନୀକୁ ଅଧିକ ଧନଶାଳୀ ତଥା ଦରିଦ୍ରକୁ ଦରିଦ୍ରତର କରିବାଦ୍ୱାରା ବିଭାଜନ ଫଳତଃ ବୃଦ୍ଧି ପାଉଛି ।

ଏପରି ସ୍ଥଳରେ ସମବାୟର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସାମାଜିକ ଓ ଅର୍ଥନୈତିକ ବିକାଶର ମାଧ୍ୟମ ଭାବରେ ସମବାୟକୁ ଗ୍ରହଣ କରାଯାଇଛି । ଆମ ଯୋଜନାବଦ୍ଧ ବିକାଶରେ ପ୍ରତ୍ୟେକ ଗ୍ରାମ ପାଇଁ ତିନୋଟି ମୌଳିକ ଅନୁଷ୍ଠାନର ପରିକଳ୍ପନା କରାଯାଇଛି, ଯଥା ଶିକ୍ଷାର ପ୍ରସାର ପାଇଁ ସ୍କୁଲ, ସ୍ଥାନୀୟ ପ୍ରଶାସନ ପାଇଁ ପଞ୍ଚାୟତ ଓ ଅର୍ଥନୈତିକ ବିକାଶ ପାଇଁ ସମବାୟ । ଗ୍ରାମ-ପୁନର୍ଗଠନ ଓ ଗୋଷ୍ଠୀ ଉନ୍ନୟନର ଭିତ୍ତିଭୂମି ପାଇଁ ଏହି ତିନୋଟିରେ ସମବେତ ସକ୍ରିୟତା ସୃଷ୍ଟି କରିବାର କଳ୍ପନା କରାଯାଇଛି । ସମବାୟ ସମିତିରେ ରକଡ଼େଲ ନୀତିଗୁଡ଼ିକୁ ପ୍ରୟୋଗ କରାଗଲେ ଶୋଷଣରହିତ, ସହଯୋଗୀ ଓ ସ୍ୱାବଲମ୍ବୀ ସମାଜ ରଚନାରେ ଏହା ସହାୟକ ହେବ । ସମସ୍ତ ସଭ୍ୟଙ୍କର ସହଯୋଗିତା ଫଳରେ ଗଣତାନ୍ତ୍ରିକ ପରିଚାଳନା, ଅର୍ଥନୈତିକ ବିକାଶ ଏବଂ ସାମାଜିକ ନ୍ୟାୟ ସମ୍ଭବ ହେବ । ପ୍ରତିଦ୍ୱନ୍ଦ୍ୱିତା

ଯୋଗୁଁ ସଂଘର୍ଷ, ହିଂସା, ଅଶାନ୍ତି, ଆତଙ୍କ, ବିବାଦ ଆଦି ଅସ୍ଥିରତା ସୃଷ୍ଟିକାରୀ ଶକ୍ତି ସେମାନଙ୍କ କୁତ୍ସିତ ମୁଣ୍ଡ ଟେକେ । କିନ୍ତୁ ସହଯୋଗ ଆଣିଦିଏ ଶାନ୍ତି, ସହାବସ୍ଥାନ, ପ୍ରଗତି ଓ ସନ୍ତୋଷ । ବିକେନ୍ଦ୍ରୀକରଣ ସହିତ ସ୍ଥାନୀୟ ଅଭିକ୍ରମ ଯୋଗୁଁ ସମୂହ ଓ ସାମାଜିକ କଲ୍ୟାଣ ସାଧିତ ହୋଇପାରିବ । ଭାରତୀୟ ସମାଜ ଧର୍ମନିରପେକ୍ଷତା, ଗଣତନ୍ତ୍ର ଓ ସମାଜବାଦର ମୂଲ୍ୟବୋଧଗୁଡ଼ିକୁ ରୂପାୟିତ କରିବାପାଇଁ ପ୍ରତିଶ୍ରୁତିବଦ୍ଧ । ସେପରି ସ୍ଥଳରେ କୃଷି, କୁଟୀରଶିଳ୍ପ, କ୍ଷୁଦ୍ର ସେଚନ (Minor irrigation), ବଣ୍ଟନ, ଯୋଗାଣ, ଗ୍ରାମ୍ୟ-ବିଦ୍ୟୁତୀକରଣ, ଗୃହଯୋଗାଣ ଆଦି ଅର୍ଥନୈତିକ ଜୀବନର ବିଭିନ୍ନ ଦିଗକୁ ପୁନର୍ଗଠିତ କରିବାରେ ସମବାୟ ସମିତି ମୁଖ୍ୟ ମାଧ୍ୟମ ହେବ । ଏହା ଫଳରେ ସାମାଜିକ ପରିବର୍ତ୍ତନ ଏପରି ରୀତିରେ ହେବ ଯଦ୍ୱାରା ସଂହତି ସମ୍ଭବ ହେବ ଓ ସୁଦୃଢ଼ କରାଯାଇ ପାରିବ ।

ଏହା ପ୍ରତ୍ୟକ୍ଷୀଭୂତ ଯେ ଚରମ ଅବହେଳା, ଅନାଦର, ଅସନ୍ତୋଷ ଓ ଅତ୍ୟାଚାର ବିଶେଷକରି ସାମାଜିକ ଓ ଅର୍ଥନୈତିକ ଉତ୍କଟ ବୈଷମ୍ୟ ସହିତ ଜଡ଼ିତ ହେଲେ ଏହାର ଅନ୍ୟତମ ପ୍ରତିକ୍ରିୟା ହୋଇପାରେ । ଜନଜୀବନର ପ୍ରଗତି ପାଇଁ ଏହା ମଧ୍ୟ ସାଂଘାତିକ । ସ୍ୱାର୍ଥାନ୍ଧ ଓ କ୍ଷମତାଲୋଭୀ ରାଜନୀତି ଏହି ଉଗ୍ରବାଦର ମାତ୍ରାକୁ ଅତ୍ୟଧିକ କରିବା ସଙ୍ଗେ ସଙ୍ଗେ ବିଭ୍ରାନ୍ତ ଓ ଅପରିଣାମଦର୍ଶୀ କରି ପକାଏ । ପ୍ରଶାସନ ଯଦି ଜନ-ସମସ୍ୟା ସହିତ ସ୍ପର୍ଶକାତର ଓ ସମ୍ବେଦନଶୀଳ ନହୁଏ, ଏହାର ପରିଣତି ମଧ୍ୟ ଭୟାବହ ହୋଇପଡ଼େ । ଯଦି ଲୋକଙ୍କର ଦୁଃଖଦୁର୍ଗତି ଦୂର କରି ସେମାନଙ୍କୁ ସାମାଜିକ ନ୍ୟାୟ ଦିଆଯାଏ ଓ ପ୍ରଶାସନକୁ ସୁପରିଚାଳିତ କରି ଦୁର୍ନୀତିର ମୂଳୋତ୍ପାଟନ କରାଯାଏ ତେବେ ନୈରାଶ୍ୟ ଜର୍ଜରିତ ଯୁବଶକ୍ତି ଆତଙ୍କବାଦର କବଳରୁ ମୁକ୍ତ ହୋଇପାରିବେ । ଏପରିକି ପଡ଼ୋଶୀ ରାଷ୍ଟ୍ର ବା ବିଶ୍ୱର ବୃହତ୍‌ଶକ୍ତିଙ୍କ ଦୂରଭିସନ୍ଧି ସେମାନଙ୍କୁ ଗ୍ରାସ କରିପାରିବ ନାହିଁ । ଏ ଦିଗରେ ସମବାୟ ଯେ କେବଳ ସାମାଜିକ ଓ ଅର୍ଥନୈତିକ ବିକାଶର ମାଧ୍ୟମରୂପେ ଗୃହୀତ ତାହା ନୁହେଁ, ଏହା ମଧ୍ୟ ଜୀବନାଦର୍ଶ ଓ ଜୀବନଯାପନର ପ୍ରଣାଳୀ ଭାବରେ ଗଣତନ୍ତ୍ରର ପ୍ରତିଷ୍ଠା ପାଇଁ ଅତି ଶକ୍ତିଶାଳୀ ଅନ୍ୟତମ ସାଧନ ।

ବିଭିନ୍ନତାର ବିଭୂଷିତ ଆମର ଏହି ଦେଶ ଭାରତବର୍ଷ । ଜାତି, ବର୍ଣ୍ଣ, ଧର୍ମ, ଭାଷା, ଗୋଷ୍ଠୀ, ସମ୍ପ୍ରଦାୟ ଆଦିର ବିଭିନ୍ନତା ଏକ ମଞ୍ଜୁଳ ବୈଚିତ୍ର୍ୟ ଓ ବିଭବ ସୃଷ୍ଟି କରିଛି । ଦେଶର ଅଖଣ୍ଡତା, ଅଭିନ୍ନତା ଓ ଐକ୍ୟ ବିଶ୍ୱବକ୍ଷରେ ଆମ ପାଇଁ ଅନନ୍ୟ ଗୌରବର ଗାଥା ସାଇତି ରଖିଛି । ସାଂସ୍କୃତିକ ସମୃଦ୍ଧି ଏହା ଫଳରେ ମାତ୍ରାତିରିକ୍ତ ହେଉଛି । ଆମ ମନ ଓ ମନୋଭାବ ଯଦି ଏହି ଦିଗରେ ପ୍ରବାହିତ ନ ହୁଏ ତେବେ ଏହା ବିଚ୍ଛିନ୍ନତାବାଦ, ସାମ୍ପ୍ରଦାୟିକତା ଓ ଗୋଷ୍ଠୀ ବା ବ୍ୟକ୍ତି ବଡ଼ିମାରେ ପରିଣତ ହୋଇ ଜାତୀୟ ସଂହତିର

ଘୋର ବିପର୍ଯ୍ୟୟ ସାଧନ କରିବ । ଅତଏବ ଜାତୀୟ ସଂହତିକୁ ସୁଦୃଢ଼ କରିବାପାଇଁ ସମବାୟ ହେଉଛି ଏକ ଆଦର୍ଶ ମାଧ୍ୟମ । ବିଭିନ୍ନ ଧର୍ମାବଲମ୍ବୀ ଲୋକଙ୍କର ଏଥିରେ ସ୍ୱାଧୀନ ପ୍ରବେଶାଧିକାର ରହିଛି । ତେଣୁ ସମବାୟ ସମିତି ଓ ସଙ୍ଗଠନ ହେଉଛି ଧର୍ମନିରପେକ୍ଷ ବ୍ୟକ୍ତି ଓ ରାଷ୍ଟ୍ରଗଠନରେ ଏକାନ୍ତ ସହାୟକ । ଶିକ୍ଷାୟତନ ପରି ଏହା କୌଣସି ଏକ ନିର୍ଦ୍ଦିଷ୍ଟ ଧର୍ମ ବା ଧର୍ମାବଲମ୍ବୀଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ । କୃଷି, ଶିଳ୍ପ, କର୍ମଯୋଗାଣ, ଦ୍ରବ୍ୟାଦିର ବଣ୍ଟନ ଓ କିଣାବିକା, ପୁଞ୍ଜି ଲଗାଣ ସର୍ବୋପରି ମିଳିମିଶି ଚଳିବା ଓ ଉଦ୍ଦେଶ୍ୟ ସାଧନ କରିବାରେ ସମବାୟ ହେଉଛି ବଳିଷ୍ଠ ସାଧନ । ଧନୀ ଓ ଦରିଦ୍ର ନିର୍ବିଶେଷରେ ସମସ୍ତ ସଭ୍ୟ ସମାନ ଦାୟିତ୍ୱ ଓ ଅଂଶ ଗ୍ରହଣ କରନ୍ତି । କ୍ଷୁଦ୍ରଚାଷୀ, ନାମମାତ୍ର ଚାଷୀ, ଭୂମିହୀନ ବ୍ୟକ୍ତି, ଆଦିବାସୀ, ହରିଜନ, ଶ୍ରମିକ, ବଡ଼ଚାଷୀ ଆଦି ବିଭିନ୍ନ ଶ୍ରେଣୀର ଲୋକ ସମିତିର ସଭାରେ ଏକତ୍ର ବସନ୍ତି ଓ ସେମାନଙ୍କର ଆର୍ଥିକ ସମେତ ସର୍ବବିଧ ବିକାଶ ନିମନ୍ତେ ମିଳିତ ମସୁଧା କରନ୍ତି ଓ ନିଷ୍ପତ୍ତି ନିଅନ୍ତି । ଏହି ନିଷ୍ପତ୍ତି ସମସ୍ତଙ୍କ ପ୍ରତି ସମାନ ଭାବରେ ଲାଗୁହୁଏ । କଥାରେ ଅଛି ମା ଓ ଝିଅ ମନ୍ଦିରକୁ ପ୍ରବେଶ କରନ୍ତି ଓ ଯେଝା ସୁଖ ମନାସନ୍ତି । ସମବାୟ ଆନ୍ଦୋଳନରେ ଏହାର ପ୍ରୟୋଗ ନାହିଁ । ଜାତି, ଧର୍ମ, ବର୍ଣ୍ଣ, ଭାଷା ଆଦି ନିର୍ବିଶେଷରେ ସମବାୟ ସମିତିର ଦ୍ୱାର ସମସ୍ତଙ୍କ ପାଇଁ ଉନ୍ମୁକ୍ତ ଥାଏ ଓ ପ୍ରଣିଧାନର ଉଦ୍ଦେଶ୍ୟ ଏକ ଅଟେ । ସେହିପରି ଭାବରେ ଖାଉଟି, କୃଷକ, ବୁଣାକାର, ମତ୍ସ୍ୟଜୀବୀ, କଂସାରି, ହସ୍ତଶିଳ୍ପୀ, ବେକାରୀ ଆଦି ସବୁ ଶ୍ରେଣୀର ଲୋକେ ଏହାର ଶ୍ରେଣୀଭୁକ୍ତ ହୋଇପାରିବେ । କାହା ପାଇଁ କୌଣସି ବାଛବିଚାର ନାହିଁ । ଏହି ଅବାଧ ପ୍ରବେଶ ସହିତ ସ୍ୱେଚ୍ଛାପ୍ରଣୋଦିତ ଦାୟିତ୍ୱବୋଧ ଓ କର୍ତ୍ତବ୍ୟ ସମ୍ପାଦନ ମଧ କରନ୍ତି ।

"କେବଳ ମୋ ପାଇଁ ମୁଁ" ଏହା ସମବାୟର ବିଚାର ନୁହେଁ । ବିଜ୍ଞାନର ପ୍ରୟୋଗ ଫଳରେ ଭୋଗର ବାସନା ଏପରି ବଢୁଛି ଯେ "ନିଜପାଇଁ ସବୁକିଛି" ଆମର ଆଭିମୁଖ୍ୟ ହୋଇଯାଉଛି । ଏଥି ସଙ୍ଗେ ସହରୀକରଣ, ଉଦାରୀକରଣ, ଜଗତୀକରଣ ଓ ଶିଳ୍ପାୟନ ସମେତ ସୁଲଭ ଏବଂ ସହଜ ସମୃଦ୍ଧୀକରଣ ଯୋଗୁଁ ସ୍ୱାର୍ଥାନ୍ଧତା ଅତି ମାତ୍ରାରେ ବଢ଼ିଯାଇଛି । ଏହା ସୃଷ୍ଟି କରିଛି ଏକ ପ୍ରକାର ଚରମ ବସ୍ତୁବାଦୀ ବ୍ୟକ୍ତିବାଦ । ଫଳରେ ସମାଜ ଦ୍ୱିଧାବିଭକ୍ତ ହେଉଛି–(୧) ସର୍ବହରା ଓ (୨) ସର୍ବସ୍ୱବାଦୀ । ଏ ପ୍ରକାର ସ୍ଥିତି ସମାଜରେ ତିକ୍ତତା, ହିଂସା ଓ ବିଦ୍ୱେଷ ସୃଷ୍ଟି କରେ । କିନ୍ତୁ ସମବାୟର ବ୍ୟାବହାରିକ କାର୍ଯ୍ୟକାରିତାର ଊର୍ଦ୍ଧ୍ୱରେ ରହିଛି ଏକ ଜନକଲ୍ୟାଣକାମୀ ସେବା ମନୋଭାବ, ଯାହାର ସାମାଜିକ ପ୍ରୟୋଗ ସୁଦୂରପ୍ରସାରୀ ହେଉଛି । ପୁଞ୍ଜିଲଗାଣ, ଲାଭାଂଶ ବଣ୍ଟନ, ଦାୟିତ୍ୱବୋଧ ଓ ସଚେତନତାରେ ରହିଛି ସହଭାଗିତା ଓ ସମସଂଶ୍ଳେଷତା । ଉପରନ୍ତୁ ଚରମ ସ୍ୱାର୍ଥାନ୍ଧତା ହେଉଛି ଅଳୀକ

ଓ ଅବାସ୍ତବ । ଏହା ସମାଜ ବିଜ୍ଞାନର ସିଦ୍ଧାନ୍ତ ବିରୋଧୀ । ଅଥଚ ଏହା ପରିବର୍ତ୍ତେ ସହଯୋଗିତା, ସହଭାଗିତା ଓ ସମାଜ ବିଜ୍ଞାନର ଅଧୁନାତମ ସିଦ୍ଧାନ୍ତ । ଏହାକୁ ଆଧାରିତ ହୋଇଥିବାରୁ ସଂହତି, ଶାନ୍ତ ଓ ପ୍ରୀତି ପାଇଁ ସମବାୟ ଅନୁକୂଳ ।

ସାରା ବିଶ୍ୱରେ ଦୁର୍ବଳତମ ଶ୍ରେଣୀର ଲୋକମାନଙ୍କ ଶୋଷଣ ଓ ଦୁର୍ବଳତାକୁ ଦୂର କରି ସେମାନଙ୍କ ମନରେ ଶକ୍ତି, ସ୍ୱାଶ୍ରୟିତା, ସ୍ୱାଭିମାନ ତଥା ମାନବପ୍ରେମ ସୃଷ୍ଟି କରିବା ହେଉଛି ସମବାୟର ଇତିହାସ । ସମ୍ବଳର ସ୍ୱଳ୍ପତା ଓ ସୀମିତ ସଭ୍ୟ ସଂଖ୍ୟାରୁ ସମବାୟ ସୂତ୍ରପାତ କରାଯାଏ । ଅର୍ଥର ପ୍ରାଚୁର୍ଯ୍ୟ ଯେପରି ଏକାନ୍ତ ଆବଶ୍ୟକ ନୁହେଁ, ଅର୍ଥର ଅଭାବ ସେହିପରି ଅଲଂଘନୀୟ ଉପାଦାନ ନୁହେଁ । ବରଂ ଅର୍ଥର ସ୍ୱଳ୍ପତା ମନରେ ଆହ୍ୱାନ ଆଣେ ଓ ବିନ୍ଦୁ ବିନ୍ଦୁ ଜଳ ଏକତ୍ର ହୋଇ ସିନ୍ଧୁ ସୃଷ୍ଟି କଲାପରି ସମ୍ବଳ ଓ ସଭ୍ୟଙ୍କର ସ୍ୱଳ୍ପତାକୁ ଠୁଳୀଭୂତ କରି ସମବାୟ ଏକ ଆନ୍ଦୋଳନର ରୂପନିଏ । ଅର୍ଥ ନୁହେଁ, ପରାର୍ଥତା ଓ ପରମାର୍ଥତା ହେଉଛି ଉଦ୍ଦେଶ୍ୟ । ସମସ୍ତ ଅଭାବ ମଧ୍ୟରେ ଯେଉଁ ଶୁଦ୍ଧ ଭାବଟି ଅବ୍ୟକ୍ତ ପରି ଲାଗୁଥାଏ ତାକୁ ବ୍ୟକ୍ତ ଓ ବୃଦ୍ଧି କରିବା ହେଉଛି ଭାବନା । ରକ୍‌ଡ଼େଲ ବନ୍ଧୁମାନେ ତାହାହିଁ କରିଛନ୍ତି । କାନେଡ଼ା ଏହା ପ୍ରମାଣ କରିଛି । ଡେନମାର୍କ, ନରୱେ ପ୍ରଭୃତି ଦେଶଗୁଡ଼ିକ ଏହାର ଦୃଷ୍ଟାନ୍ତ ହୋଇ ରହିଛନ୍ତି । ରବୀନ୍ଦ୍ରନାଥଙ୍କ ଶାନ୍ତିନିକେତନ ପ୍ରକଳ୍ପ (୧୯୨୨), ବରୋଦାର ଗ୍ରାମ୍ୟ ପୁନର୍ଗଠନ ପ୍ରକଳ୍ପ (୧୯୩୨), ମାନ୍ଦ୍ରାଜର ଫିର୍କା ବିକାଶ ଯୋଜନା (୧୯୪୬), ଉତ୍ତର ପ୍ରଦେଶର ଇଟାଓ୍ୱା ପାଇଲଟ ପ୍ରକଳ୍ପ (୧୯୪୮), ମହାତ୍ମାଗାନ୍ଧୀ ପରିଚାଳିତ ସେବାଗ୍ରାମ (ୱାର୍ଦ୍ଧା) ଯୋଜନା ଆଦି ଭାରତରେ ସମବାୟ ଆନ୍ଦୋଳନର ଆଲୋକସ୍ତମ୍ଭ ହୋଇ ରହିଛି । ୧୯୦୪ ମସିହାରେ ଭାରତରେ ଏହି ଆନ୍ଦୋଳନର ଶୁଭାରମ୍ଭ କରାଯାଏ । ୧୯୫୨ ମସିହାରୁ ଗୋଷ୍ଠୀ ବିକାଶ କାର୍ଯ୍ୟକ୍ରମ ଓ ୧୯୭୧ ମସିହାରୁ କ୍ଷୁଦ୍ରଚାଷୀ ବିକାଶ ଏଜେନ୍‌ସି ପ୍ରକଳ୍ପ ଏହି ଆନ୍ଦୋଳନରେ ସାମିଲ ହୋଇ ଏହା ଏକ ସ୍ରୋତରେ ପରିଣତ ହୋଇଛି । ଅତଏବ ଏହା ଜଣାପଡ଼ିବ ଯେ ସମବାୟ ଦରିଦ୍ର ଜନସାଧାରଣଙ୍କ ଅର୍ଥନୈତିକ ଓ ମାନବିକ ବିକାଶ ପାଇଁ କ୍ଷେତ୍ର ପ୍ରସ୍ତୁତ କରେ । ଏହା ଫଳରେ ଅନ୍ୟଥା ଅଶାନ୍ତି, ଅସନ୍ତୋଷ ଓ ହିଂସାର ସ୍ଥାନ ରହେ ନାହିଁ ।

ଆନ୍ଦୋଳନ ସାଧାରଣତଃ ଓ ମୁଖ୍ୟଭାବରେ ଦାବି ପୂରଣ ପାଇଁ ଆୟୋଜନ କରାଯାଏ । ଏଥିଯୋଗୁଁ ବ୍ୟକ୍ତି ତଥା ସମାଜର ଜୀବନରେ ଆଲୋଡ଼ନ ସୃଷ୍ଟି ହୁଏ । ଧାରଣା, ଧମକ, ଧିକ୍କାର ଆଦିର ଆଶ୍ରୟ ନେଇ ଦାବି ହାସଲ କରାଯାଏ । ଅଳ୍ପ ସୁବିଧା ଥିବା କିମ୍ବା ବିଲକୁଲ୍ ସୁବିଧା ନଥିବା ଲୋକମାନେ ଅଧିକରୁ ଅଧିକ ସୁବିଧାଭୋଗୀ ଶ୍ରେଣୀ ଓ ଲୋକମାନଙ୍କ ଉପରେ ଚାପ ପକାଇ ନିଜ ଦାବି ସାବ୍ୟସ୍ତ କରନ୍ତି । କିନ୍ତୁ ସମବାୟ

ଆନ୍ଦୋଳନ ହେଉଛି ଅର୍ଥନୈତିକ ଓ ସାମାଜିକ ଉନ୍ନତି ତଥା ପ୍ରଗତି ପାଇଁ ଏକ ଗଣ ଆନ୍ଦୋଳନ । ବେସରକାରୀ ଓ ଜନସାଧାରଣଙ୍କ ସହଯୋଗରେ ବିକାଶର ବନ୍ୟା ସମସ୍ତଙ୍କ ହୃଦୟକୁ ପ୍ଲାବିତ କରେ । ଜାତି, ଧର୍ମ, ବର୍ଣ୍ଣ, ଭାଷା ଆଦି ନିର୍ବିଶେଷରେ ସମସ୍ତେ ଏହି ଆନ୍ଦୋଳନଭୁକ୍ତ ହୋଇପାରିବେ ।

ଅଧ୍ୟୟନରତ ଛାତ୍ରଛାତ୍ରୀ, ଗୃହିଣୀ, ବୃଦ୍ଧ, ବୃଦ୍ଧା, ବେକାର, ଅକର୍ମଣ୍ୟ, ମୂକ, ବଧିର ଆଦି ସବୁ ଶ୍ରେଣୀର ଓ ସବୁ ବୟସର ଲୋକମାନଙ୍କ ପାଇଁ, ସେମାନଙ୍କ ଦ୍ୱାରା ଓ ସେମାନଙ୍କ ଆନ୍ଦୋଳନ ହେଉଛି ସମବାୟ । କାମଧନ୍ଦା ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଚିରାଚରିତ ବୃତ୍ତି ଓ ବ୍ୟବସାୟରେ କର୍ମକୁଶଳତାର ବୃଦ୍ଧି କରାଯାଇ ଦାବି ଓ ଦାୟିତ୍ୱର ସମନ୍ୱୟ ସାଧନ କରାଯାଏ । ରାଜ୍ୟରୁ ରାଜ୍ୟାନ୍ତର ଏବଂ ଦେଶରୁ ଦେଶାନ୍ତର ସମବାୟର ପରିସର ପରିବ୍ୟାପ୍ତ ହୋଇ କ୍ରମେ ବିଶ୍ୱବ୍ୟାପୀ ହୁଏ । ଏହି ବ୍ୟାପକତା ହେତୁ ସମବାୟ ଏକ ଆନ୍ଦୋଳନରେ ପରିଣତ ହୁଏ । ତେଣୁ ଏଥିରେ ଉତ୍ତେଜନାର ବିସ୍ଫୋରଣ ନାହିଁ, କିମ୍ବା ଦାବିର ଏକଚାଟିଆ ପ୍ରତିପାଦନ ନାହିଁ । ଏଥିରେ ନିହିତ ଅଛି ନୀରବ ସାମାଜିକ ବିପ୍ଳବ । ଶୋଷଣ ପରିବର୍ତ୍ତେ ସର୍ବ ଜନହିତାୟ ପାଇଁ କର୍ତ୍ତବ୍ୟ ସମ୍ପାଦନ ।

ଆମ ଦେଶରେ, ବିଶେଷକରି ବିକାଶଶୀଳ ରାଷ୍ଟ୍ରଗୁଡ଼ିକରେ ଅଭାବ, ଅସମତା, ଭୌତିକ ତଥା ମାନବିକ ସମ୍ଭାବନାର ବିନିଯୋଗରେ ଅବ୍ୟବସ୍ଥା ଲାଗି ରହିଛି । ଜନସଂଖ୍ୟାର ଦ୍ରୁତ ଅଭିବୃଦ୍ଧି ସମସ୍ତ ଯୋଜନାବଦ୍ଧ ବିକାଶର ଧାରାକୁ ପଣ୍ଡ କରିଦେଉଛି । ଖଳ ପ୍ରକୃତିର ଲୋକଙ୍କ ବଳ ଓ ଚକ୍ରାନ୍ତ ଶକ୍ତ ହୋଇ ରହିଛି । ଶିକ୍ଷାର ପ୍ରସାର ଆଶାନୁରୂପ ନ ହେବା ଫଳରେ ଓ ଶିକ୍ଷାର ଗୁଣାତ୍ମକ ଦିଗ ପ୍ରତି ସମୁଚିତ ଧ୍ୟାନ ନ ରହିବା ହେତୁ ସେମାନଙ୍କର ଆତ୍ମବଳ ଅବସ୍ଥାନୁରୂପ ହୋଇପାରୁନାହିଁ । ତେଣୁ ଜନସାଧାରଣ ସହଜରେ ଶୋଷଣର ଶରବ୍ୟ ହେଉଛନ୍ତି ଓ ନିଜ ନିଜର ସମସ୍ୟାକୁ ପ୍ରକାଶ କରି ପାରୁନାହାନ୍ତି । ଲୋକସଂଖ୍ୟା ଓ ଏହାର ବୃଦ୍ଧି ଗଣାଯାଇ ପାରୁଥିଲେ ହେଁ ଲୋକଶକ୍ତି ନଗଣ୍ୟ ଓ ଅବ୍ୟକ୍ତ ହୋଇ ରହୁଛି । ଏହାକୁ ଠାବ କରାଯାଇ ପାରୁନାହିଁ । ଏଥିଯୋଗୁଁ ଜାତୀୟ ଜୀବନ କ୍ଷୀଣ ଓ ଅସ୍ୱଚ୍ଛ ହେଉଛି । ଜାତୀୟ ପ୍ରତିଭାର ବିକାଶ ଘଟୁ ନାହିଁ । ସମବାୟ ଏ ଦିଗରେ ସହାୟକ ହେବାରେ ଏକ ପ୍ରକୃଷ୍ଟ ମାଧ୍ୟମ କହିଲେ ଚଳେ । ଏହା ନ କରି ପାରିଲେ ସମବାୟକୁ ନିନ୍ଦିତ କରାଯିବ ସତ କିନ୍ତୁ ଜାତୀୟ ଜୀବନ ଦୁର୍ବଳ ହେବ । ଅଧିକନ୍ତୁ ଗଣତନ୍ତ୍ର, ସମାଜବାଦ, ସମତା ଓ ଧର୍ମନିରପେକ୍ଷତା କେବଳ କଥାର କଥା ହୋଇ ରହିଯାଏ । ଜାତୀୟ ସଂହତି ସେହିପରି ବାଚିକ ଅଳଙ୍କାରରେ ପରିଣତ ହେବ । ଅତଏବ ଏସବୁର ରୂପାୟନ ପାଇଁ ସମବାୟ ଆନ୍ଦୋଳନକୁ ସଫଳ କରିବା ଉଚିତ ।

ଆମ ଜାତୀୟ ଜୀବନରେ ଦୁର୍ବଳତାର ସୁଯୋଗ ନେଇ ଓ ଅନେକ ସମୟରେ ଆମ ଜାତୀୟ ପ୍ରଗତି ପ୍ରତି ଈର୍ଷା-ପରବଶ ହୋଇ ବହିଃଶତ୍ରୁ ବିଚ୍ଛିନ୍ନତାବାଦୀ ଓ ବିଭେଦକାରୀ ଶକ୍ତିକୁ ପ୍ରୋତ୍ସାହିତ କରୁଛନ୍ତି । ଆର୍ଥିକ ସାହାଯ୍ୟ ଓ ବୈଷୟିକ କୌଶଳ ତଥା ସାମଗ୍ରୀ ଯୋଗାଇ ଦେଉଛନ୍ତି । ଏହା ଫଳରେ ଆମ ଦେଶର ଅଖଣ୍ଡତା, ଶୃଙ୍ଖଳା ଓ ଐକ୍ୟ ବାଧାପ୍ରାପ୍ତ ହେଉଛି । ଆମ ଦେଶର ବହୁ ପରୀକ୍ଷିତ ଓ ବହୁଦିନରୁ ସଞ୍ଚିତ ମୂଲ୍ୟବୋଧଗୁଡ଼ିକ ଅତି ତୁଚ୍ଛ ପରିଗଣିତ ହେଉଛି । କିନ୍ତୁ ଆମେ ସମବାୟର ପ୍ରକ୍ରିୟାକୁ ସୁଦୃଢ଼ ଓ ଶୁଦ୍ଧ କରିପାରିଲେ, ଆମ ଜାତୀୟ ଚରିତ୍ର ପ୍ରତିଷ୍ଠିତ ହେବ । ଜାତୀୟ ଜୀବନ ମଜଭୁତ ହେବ । ଆମେ ବିଶ୍ୱବକ୍ଷରେ ଅପରାଜେୟ ହେବା ।

ସେତିକି ନୁହେଁ, ବିଶ୍ୱର ବୃହତ୍ ଶକ୍ତିଗୁଡ଼ିକ ଆପଣା ମଧ୍ୟରେ ଯେଉଁ ମୁକାବିଲା ମନୋଭାବ ପୋଷଣ କରୁଛନ୍ତି ଏହା ଆମ ପାଇଁ ଆହ୍ୱାନ ଓ ଆସ୍ଫାଳନ ହୋଇ ରହୁଛି । ବିଜ୍ଞାନର ମାରଣାସ୍ତ୍ରଗୁଡ଼ିକ ଅଧିକତର ମାରାତ୍ମକ ହେଉଥିବାରୁ ମୁହୂର୍ତ୍ତକ ମଧ୍ୟରେ ମାନବସମାଜର ଧ୍ୱଂସ ଆଶଙ୍କା ଆମକୁ ବିକ୍ଷୁବ୍‌ଧ କରୁଛି । ଅବଶ୍ୟ ଏକଥା ସତ୍ୟ ଯେ ବୃହତ୍ ଶକ୍ତିଗୁଡ଼ିକ ବିଶ୍ୱପୃଷ୍ଠରୁ ଯୁଦ୍ଧର ଆଶଙ୍କା ଦୂର କରିବା ଉଦ୍ଦେଶ୍ୟରେ ଆଣବିକ ଅସ୍ତ୍ରଶସ୍ତ୍ରର ନିରୋଧ ତଥା ନିୟନ୍ତ୍ରଣ ପାଇଁ ପରସ୍ପର ମଧ୍ୟରେ ଆଲୋଚନାରତ ରହିଛନ୍ତି । ସେମାନଙ୍କ ମଧ୍ୟରେ ଏହି ସମ୍ପର୍କୀୟ ମତପାର୍ଥକ୍ୟ କ୍ରମେ କମି ଆସୁଥିବାର ସ୍ପଷ୍ଟ ସଙ୍କେତ ମିଳୁଛି । ପୃଥିବୀ ପୃଷ୍ଠରେ ଶାନ୍ତିର ଶକ୍ତି ଓ ଆନ୍ଦୋଳନ କ୍ରମେ ବୃଦ୍ଧିପ୍ରାପ୍ତ ହେବାରେ ଲାଗିଛି । ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନ ଶାନ୍ତି ସପକ୍ଷରେ ଜନମତକୁ ଦୃଢ଼ୀଭୂତ କରୁଛି । ଏହି ଆନ୍ଦୋଳନର ଷଡ଼ରାଷ୍ଟ୍ର ମଧ୍ୟରେ ଭାରତ ମୁଖ୍ୟ ଭୂମିକା ଗ୍ରହଣ କରିଛି । ମିଳିତ ଜାତିସଂଘ, ରାଜ୍ୟଗୋଷ୍ଠୀ ସମ୍ମିଳନୀ ଆଦି ସମସ୍ତ ବିଶ୍ୱସଙ୍ଗଠନ ଏ ଦିଗରେ ଉଦ୍ୟମ ଚଳାଇଛନ୍ତି । ଏସବୁ ଆଶାର ଚିହ୍ନ । ମାନବ ସମାଜପାଇଁ ଶାନ୍ତି, ମୈତ୍ରୀ ଓ ପ୍ରୀତି ନବ ପ୍ରଭାତ ସଦୃଶ୍ୟ, । ଏହା ସତ୍ତ୍ୱେ ବୃହତ୍ ଶକ୍ତିଗୁଡ଼ିକ ମଧ୍ୟରେ ଛକାପଞ୍ଝା ଆମ ପାଇଁ ଘୋର ଆଶଙ୍କାର କାରଣ ହୋଇ ରହିଛି । ବିବାଦ, ବିଦ୍ରୋହ ଓ ବିକ୍ଷୋଭ କ୍ରମେ ବୃଦ୍ଧି ପାଉଛି । ସେମାନେ ବିଶ୍ୱବକ୍ଷରେ ଓ ବେଳେବେଳେ ଆମ ପଡ଼ୋଶୀ ଅଞ୍ଚଳରେ କୂଟନୀତିରେ ଲିପ୍ତ ରହି ନିଜ ବଡ଼ିମା ପ୍ରଦର୍ଶନ କରୁଛନ୍ତି । ଆମେ ଏଥିଯୋଗୁଁ ଉଦାସୀନ ହୋଇ ରହିପାରିବା ନାହିଁ । ବିଭେଦର ଶକ୍ତିକୁ ମୁଣ୍ଡ ଟେକିବାକୁ ଦେବା ନାହିଁ । ଅନ୍ଧବିଶ୍ୱାସ, ଅସ୍ପୃଶ୍ୟତା, ଅସମତା, ଅବିଶ୍ୱାସ, ଅସୂୟା, ଆଞ୍ଚଳିକତା ଆଦିକୁ ଦୂର କରି ''ଆମ ମା ଭାରତ'' ଓ ''ଭାରତ ମାତାର ଆମେ ସନ୍ତାନ'' ଏହାର ବିକାଶ କରାଇବା । ସମବାୟ ଏହି ଭ୍ରାତୃତ୍ୱର ପ୍ରତୀକ । ସଂହତିର ଏହା ମାଧ୍ୟମ । ସମବାୟ ଓ ସଂହତି ପରସ୍ପର ସଂଶ୍ଳିଷ୍ଟ ।

ଆଜିକାଲି ମୂଲ୍ୟବୋଧର ଦ୍ରୁତ ଅବକ୍ଷୟ ବିଷୟରେ ଉଲ୍ଲେଖ କରାଯାଇଛି । ସେହି ପ୍ରସଙ୍ଗରେ ଏହା ଲକ୍ଷ୍ୟ କରିବାର ବିଷୟ ଏହି ଯେ ମାନବ ଜୀବନ ଆଜି ମୂଲ୍ୟହୀନ ହୋଇ ପଡୁଛି । ଭାଗବତକାର କହିଛନ୍ତି, ''ସର୍ବ ଶରୀର ମଧ୍ୟେ ସାର, ଦୁର୍ଲ୍ଲଭ ନର କଳେବର ।'' ସେଥିପାଇଁ ନର ନାରାୟଣ । ଅମର ଆତ୍ମା ଶରୀର ମଧ୍ୟରେ ବିରାଜିତ ଓ ଏହି ସଚେତନତା ବଳରେ ସେ ଦେବୋପମ ହୋଇପାରିବ । କିନ୍ତୁ ଆଜି ନରହତ୍ୟା ଏକ ଦୈନନ୍ଦିନ ଘଟଣା ହୋଇଛି । ଆମ ଦେଶରେ ତଥା ସାରା ବିଶ୍ୱରେ ଏପରିକି ଆମ ପଡ଼ୋଶୀ ରାଷ୍ଟ୍ରଗୁଡ଼ିକରେ ଏକକାଳୀନ ଏକାଧିକ ନରହତ୍ୟା ଭୟାବହ ହୋଇଛି । ଏହାର ବିଭୀଷିକା ଶିହରଣ ସୃଷ୍ଟିକରେ । ରକ୍ତର ଖେଳ ପିଲାଙ୍କ ହୋରି ଖେଳ ପରି ମନେହୁଏ । ହିଂସାରେ ଶାଣିତ ଦୁର୍ବୃତ୍ତ ଆଜି ପୈଶାଚିକ ବୃତ୍ତି ଧାରଣ କରିଛି । କାହିଁ ସେହି ମହାନ୍ ମାନବ । 'ଅମୃତସ୍ୟ ପୁତ୍ରାଃ', ମହାନୁଭବ ସେ ଯେ ସେବା ଓ ତ୍ୟାଗର ପ୍ରତୀକ । ଗଣତନ୍ତ୍ରର ସେ ପ୍ରାଣ । ବନ୍ଧୁତା ଓ ପ୍ରେମ ସୁନ୍ଦର । ସେ ସୁଶୋଭିତ ଓ ସେହି ଲୋଭରେ ଦେବତାଙ୍କର ନରପ୍ରାପ୍ତି । ଜଣକର ହତ୍ୟା, ସମସ୍ତଙ୍କର ଲଜ୍ଜା, ବ୍ୟଥା ଓ ଅଭାବନୀୟ କ୍ଷତି । ସମବାୟ ଜନକଲ୍ୟାଣର କାର୍ଯ୍ୟକ୍ରମ । ଜନଶକ୍ତିର ସ୍ତମ୍ଭରେ ଏହାର ଅଟଳ ସୌଧ । ଅମୂଲ୍ୟ ଜନଜୀବନ ସମବାୟର ସୌରଭ ।

ଅତଏବ ସମବାୟର ସୁପରିଚାଳନା ଏକାନ୍ତ ଆବଶ୍ୟକ । କୌଣସି ପ୍ରକାର ସଂକୀର୍ଣ୍ଣ ସ୍ୱାର୍ଥସିଦ୍ଧି ଏହାର ପରିଚାଳନାରେ ସ୍ଥାନ ପାଇବା ଅନୁଚିତ । ସଂକୀର୍ଣ୍ଣତା ରାଜନୈତିକ, ଧାର୍ମିକ, ସାମ୍ପ୍ରଦାୟିକ ଓ ଆତ୍ମକୈନ୍ଦ୍ରିକ ହୋଇପାରେ । ଶାସକଗୋଷ୍ଠୀ ନିଜର ବା ନିଜ ଦଳର କ୍ଷମତାକୁ ବଜାୟ ରଖିବାପାଇଁ ସମବାୟ ଅନୁଷ୍ଠାନକୁ ହାତବାରିସି ଭାବରେ ବ୍ୟବହାର କରିପାରନ୍ତି । ସମବାୟର ବୃହତ୍ତର ଆଦର୍ଶ ଓ ଉଦ୍ଦେଶ୍ୟ ଏହାଦ୍ୱାରା ବାଧାପ୍ରାପ୍ତ ହୁଏ । ପଞ୍ଚମ ଭାରତୀୟ ସମବାୟ କଂଗ୍ରେସ (୧୯୫୯)ର ଅଧିବେଶନରେ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ନିମ୍ନୋକ୍ତ ଭାବରେ ସମସ୍ତଙ୍କ ଧ୍ୟାନ ଆକର୍ଷଣ କରିଛନ୍ତି– ''ଭାରତରେ ସମବାୟ ଆନ୍ଦୋଳନର ଇତିହାସରୁ ଜଣାପଡ଼େ ଯେ ଯେଉଁଠାରେ ଏହି ଆନ୍ଦୋଳନ ଶକ୍ତିଶାଳୀ ହୋଇଛି, ତାହା କେବଳ ଉତ୍ସର୍ଗୀକୃତ ବ୍ୟକ୍ତିବିଶେଷଙ୍କ ନିଃସ୍ୱାର୍ଥ ସେବା ଯୋଗୁଁ ସମ୍ଭବ ହୋଇଛି, ଯେଉଁମାନେ ରାଜନୈତିକ ପ୍ରଲୋଭନରୁ ବରାବର ନିବୃତ୍ତ ରହିଛନ୍ତି, ଜନସେବାର ଏକ ବିକଳ୍ପ ପନ୍ଥା ଭାବରେ ସେମାନେ ସମବାୟକୁ ଧରି ନେଇଛନ୍ତି ।'' ସମବାୟର ଜଣେ ପୁରୁଖା ସଭ୍ୟ ସିଂହଳରେ ଗୋଟିଏ ଧ୍ୱନି ଦେଇଥିଲେ ଓ ତାହା ହେଉଛି, ସମବାୟର ମନ୍ଦିର ମଧ୍ୟରେ ପ୍ରବେଶ କଲାବେଳେ ରାଜନୈତିକ ପୋଷାକ ବାହାରେ କାଢ଼ି ରଖିବାକୁ ହେବ । (When you enter the temple of co-operation, leave your political shoes outside) ।

ଏସବୁର ତାତ୍ପର୍ଯ୍ୟ ହେଉଛି ଯେ ସମବାୟକୁ ରାଜନୀତିର କବଳରୁ ମୁକ୍ତ କରିବାକୁ ହେବ । ଯାହାହେଉ, ଏହା ମଧ୍ୟ ସୁପାରିଶ କରାଯାଏ ଯେ ପ୍ରାରମ୍ଭିକ ଅବସ୍ଥାରେ ସମବାୟ ଅନୁଷ୍ଠାନଗୁଡ଼ିକ ସରକାରୀ ସାହାଯ୍ୟ ଗ୍ରହଣ କରିବା ଆବଶ୍ୟକ । ସରକାର କେବଳ ପ୍ରୋତ୍ସାହନମୂଳକ ଭୂମିକା ଗ୍ରହଣ କରିବେ । ସମବାୟ ଆନ୍ଦୋଳନ ଭଲ ଭାବରେ ନିଜ କଥା ବୁଝିପାରିଲେ, ସରକାରୀ ମାର୍ଗଦର୍ଶନ ଓ ଆର୍ଥିକ ସାହାଯ୍ୟକୁ ବନ୍ଦ କରି ଦିଆଯିବ ।

ପରିଶେଷରେ ଶିକ୍ଷାରେ ସମବାୟ ଓ ସମବାୟ ଶିକ୍ଷା ବିଷୟରେ ଆଲୋଚନା କରିବା । ରକଡ଼େଲ ନୀତିର ୫ମ ଧାରାରେ ସମବାୟ ଶିକ୍ଷା ସମ୍ବନ୍ଧରେ ସୂଚନା ଦିଆଯାଇଛି । ସମବାୟକୁ ଯଦି ଏକ ସ୍ୱାଶ୍ରୟୀ ଓ ସ୍ୱାବଲମ୍ବୀ ଗଣତାନ୍ତ୍ରିକ ଆନ୍ଦୋଳନରେ ପରିଣତ କରିବାକୁ ଇଚ୍ଛା କରୁଁ, ତେବେ ସମବାୟର ଆଦର୍ଶ ଓ ନୀତି ସମ୍ବନ୍ଧରେ ଏହାର ସଭ୍ୟ ଓ କର୍ମଚାରୀମାନଙ୍କୁ ଶିକ୍ଷା ଦେବା ଏକାନ୍ତ ପ୍ରୟୋଜନୀୟ । ସମବାୟ ବ୍ୟାଙ୍କ ଆଦି ମଧ୍ୟ ନିର୍ଦ୍ଦିଷ୍ଟ ଅଞ୍ଚଳରେ ସାକ୍ଷରତା ଶିକ୍ଷା, ଜନସଂଖ୍ୟା ଶିକ୍ଷା, ମିତବ୍ୟୟିତା ଶିକ୍ଷା ଆଦି ଅର୍ଥବରାଦ ଓ ପୃଷ୍ଠପୋଷକତା କରିପାରନ୍ତି । ଏହାଛଡ଼ା ସମବାୟ ଶିକ୍ଷାକୁ ସ୍କୁଲ ଶିକ୍ଷାର ପାଠ୍ୟକ୍ରମ ଅଙ୍ଗୀଭୂତ କରିବା ଉଚିତ । ସମବାୟର ଉଭୟ ତାତ୍ତ୍ୱିକ ଓ ବ୍ୟବହାରିକ ଦିଗର ସଫଳ ରୂପାୟନର ପ୍ରକୃଷ୍ଟ କ୍ଷେତ୍ର ହେଉଛି ଆମ ସମାଜ ଓ ଶିକ୍ଷାୟତନ । ଉଚ୍ଚତର ଶିକ୍ଷାରେ ମଧ୍ୟ ଏହାକୁ ସ୍ଥାନ ଦିଆଯିବା ଆବଶ୍ୟକ ।

ସହଯୋଗର ସମାଜ ଜାତୀୟ ଓ ଆନ୍ତର୍ଜାତିକ ସ୍ତରରେ ପ୍ରତିଷ୍ଠା କରାଯାଇପାରିବ । ଏହାହିଁ ସମବାୟ ଆନ୍ଦୋଳନର ଲକ୍ଷ୍ୟ ଓ ଏଥିପାଇଁ ଉଦ୍ୟମ ଅବ୍ୟାହତ ରହିଛି । ଏଥିରୁ ସଂହତିର ଦେଶ ଓ ବିଶ୍ୱ ଗଠନରେ ସମ୍ଭାବନା ବେଶ୍ ପ୍ରଶସ୍ତ ।



# ଜାତୀୟ ସଂହତି ଓ ବିଶ୍ୱଭ୍ରାତୃତ୍ୱ

ଆମ ଜାତୀୟ ଜୀବନରେ ଐକ୍ୟ ଓ ଏକାତ୍ମତା ଅନୁଭବ କରିବା ହେଉଛି ଜାତୀୟ ସଂହତି । ଆମେ ଭାରତର ଓ ଭାରତୀୟ । ଆମେ ଭାରତବାସୀ; ତେଣୁ ଭାରତର ଅଖଣ୍ଡତା ରକ୍ଷା କରିବା ଆମର ସର୍ବପ୍ରଥମ ଓ ସର୍ବଶ୍ରେଷ୍ଠ କର୍ତ୍ତବ୍ୟ । ଏ ବିଷୟରେ ଆମେ ଜାଣିରଖିବା ଯେ ଭାରତ ଏକ ବିଶାଳ ଭୂଖଣ୍ଡ । ଭାଷା, ଧର୍ମ, ବର୍ଣ୍ଣ, ସମ୍ପ୍ରଦାୟ, ରାଜ୍ୟ ଓ ସଂଖ୍ୟା ଦୃଷ୍ଟିରୁ ଆମେ ସବୁ ଭିନ୍ନ ଭିନ୍ନ । ଏସବୁ ବିଭିନ୍ନତା ଆମ ବୈଚିତ୍ର୍ୟର ପରିଚୟ ଦିଏ ଓ ଆମକୁ ବର୍ଣ୍ଣାଢ଼୍ୟ କରେ । ଏହାହିଁ ଆମ ବିଭବ । ଆମ ପରିବାର, ପାଠଶାଳା, ଗାଁଗଣ୍ଡା, ରାଜ୍ୟ ଓ ଦେଶ ବିଭିନ୍ନତାରେ ବିଭବ-ପୂର୍ଣ୍ଣ ହୋଇ ରହିଛି । ଗଠନ, ରଙ୍ଗ, ସୁବାସ, ସୁଠାମ ଆଦି ଦୃଷ୍ଟିରୁ ଫୁଲଗୁଡ଼ିକ ଯେତେ ବିଭିନ୍ନ, ଉଦ୍ୟାନର ମନୋହାରିତା ସେତେ ଅଧିକ । ମାତ୍ର ଗୋଟିଏ ପ୍ରକାର ଫୁଲର ଉଦ୍ୟାନ ପ୍ରକୃତିରେ ସମ୍ଭବ ନୁହେଁ ଓ କୌଣସି ଉଦ୍ୟାନର କଳ୍ପନା କେବଳ ଗୋଟିଏ ଫୁଲକୁ ନେଇ କରାଗଲେ ସୁଦ୍ଧା ଏହାର ଗଠନ, ଭଙ୍ଗୀ ଓ ସାଜସଜ୍ଜା ଏକ ପ୍ରକାର ହୋଇ ରହେ ନାହିଁ । ଠିକ୍ ସେହିପରି ବିଶାଳ ଓ ବିଚିତ୍ର ଭାରତ ଭୂଖଣ୍ଡରେ ବିଭିନ୍ନତା ହେଉଛି ଏକ ସ୍ୱାଭାବିକ ଲକ୍ଷ୍ୟ । ଏହି ବିଭିନ୍ନତାର ସ୍ୱାଭାବିକ ଧର୍ମ ହେଉଛି ଅଭେଦତ୍ୱ । ତେଣୁ ବିଭିନ୍ନତା ମଧ୍ୟରେ ଅଭେଦ ହେଉଛି ଆମ ଜାତୀୟ ସଂହତି । ଏଥିରେ ବିଭିନ୍ନତାକୁ ଅବଜ୍ଞା କରାଯାଇ ନାହିଁ । ବରଂ ଏହାକୁ ସ୍ୱୀକୃତି ଦିଆଯାଇଛି ଜାତୀୟ ସମୃଦ୍ଧିକୁ କ୍ରମବର୍ଦ୍ଧିଷ୍ଣୁ କରିବାପାଇଁ ଓ ଜାତୀୟ ଗୌରବକୁ ବିଶ୍ୱବିଦିତ କରିବାଲାଗି ।

ଅତଏବ ଜାତୀୟ ସଂହତି ଆମ ମଧ୍ୟରେ ଭାରତୀୟ ଭାବନା, ଭାବ ଓ ଚେତନା ସୃଷ୍ଟି କରେ । ଏହା ମଧ୍ୟ ଆମ ଜୀବନରେ ବିଶ୍ୱଭ୍ରାତୃତ୍ୱର ବିକାଶ କରେ । ତେଣୁ ଆମ ସଂହତି ଏକ ସୀମିତ, ସଙ୍କୁଚିତ ଓ ସଂକୀର୍ଣ୍ଣ ବିଷୟ ନୁହେଁ । ଏହା ବ୍ୟାପକ, ବିସ୍ତୀର୍ଣ୍ଣ ଓ ଉଦାର ହୋଇଥିବାରୁ ଆମ ମନରେ ଦେଶପ୍ରୀତି ଜାତ ହେବା ସଙ୍ଗେ ସଙ୍ଗେ ବିଶ୍ୱବନ୍ଧୁତ୍ୱର ଭାବନା ଦୃଢ଼ ହୁଏ । ବସ୍ତୁତଃ ବ୍ୟକ୍ତି ଓ ବିଶ୍ୱ ମଧ୍ୟରେ କୌଣସି ବିରୋଧ ନାହିଁ । ବରଂ ଉଭୟ ପରିପୂରକ । ବିଶ୍ୱଭାବନା ଆମ ମନରେ ଆଣିଦିଏ ବ୍ୟକ୍ତିସଚେତନା । ବ୍ୟକ୍ତିସ୍ୱାତନ୍ତ୍ର୍ୟ ଆମକୁ ମାନବପ୍ରେମୀ ବିଶ୍ୱକୁଟୁମ୍ବୀ ହେବାରେ ସାହାଯ୍ୟ କରେ । ଏଥିରେ କିଏ କାହାର ଅନ୍ତରାୟ ସୃଷ୍ଟି କରେନାହିଁ । ଅଥଚ ଗୋଟିଏ ଅନ୍ୟଟିର ସହାୟକ ହୁଏ ।

ବହୁ ପ୍ରାଚୀନ କାଳରୁ ଆମ ଦେଶରେ 'ବସୁଧୈବ କୁଟୁମ୍ବକମ୍' କଥା କୁହାଯାଇଛି । ଯେଉଁମାନଙ୍କ ଚରିତ୍ର ଉଦାର ସେମାନେ ସମଗ୍ର ସଂସାର ଓ ବିଶ୍ୱସୃଷ୍ଟିକୁ ନିଜର ପରିବାର ବୋଲି ବିଚାର କରନ୍ତି । ଏହା ଏକ ବିକଶିତ ବ୍ୟକ୍ତିତ୍ୱର ଲକ୍ଷଣ । ଏହା ହେଉଛି ମାନବକଲ୍ୟାଣ ନିମିତ୍ତ ସମ୍ବେଦନଶୀଳତା । ସ୍ୱାର୍ଥାନ୍ଧ ନ ହୋଇ ପରାର୍ଥ ଓ ପରମାର୍ଥ ହୋଇପାରିଲେ ଆମେ ସମଗ୍ର ବିଶ୍ୱକୁ ବଖୁରିଏ ଘର ପରି ବିଚାର କରିପାରିବା । ଆମ ଘର, ବାପା ମା', ଭାଇ ଭଉଣୀଙ୍କ ପ୍ରତି ଆମ ଆନୁଗତ୍ୟକୁ ବିସ୍ତାରିତ ଓ ସମ୍ପ୍ରସାରିତ କରିପାରିଲେ ଆମ ମନରେ ମାନବସମାଜ ପ୍ରତି ଆନୁଗତ୍ୟ ଜାତ ହେବ । ବିଜ୍ଞାନର ଅଭୂତପୂର୍ବ ବିକାଶ ଫଳରେ ଦୂରତା ଆଜି ଆଉ ବ୍ୟବଧାନ ସୃଷ୍ଟି କରୁନାହିଁ । ପକ୍ଷାନ୍ତରରେ ଅତ୍ୟାଧୁନିକ ଓ ଦ୍ରୁତଗାମୀ ପରିବହନ ବ୍ୟବସ୍ଥା ଯୋଗୁଁ ଦୂରତା ଅତିକ୍ରାନ୍ତ ହୋଇଛି । ଜୀବନବ୍ୟାପୀ ଯାତ୍ରା ଆଜି ସ୍ୱଳ୍ପ ସମୟସାପେକ୍ଷ ହୋଇଛି । ବିଜ୍ଞାନର ବିକାଶ ହେତୁ ଜ୍ଞାନସାଧନର ପନ୍ଥା ଓ କୌଶଳ ଏପରି ବିକଶିତ ଓ ସହଜଲଭ୍ୟ ହୋଇଛି ଯେ ଅଜ୍ଞେୟ ଜ୍ଞାନରାଶି ମନୁଷ୍ୟର କରାୟତ୍ତ କ୍ରମେ ହେଉଅଛି । ନବ ଆବିଷ୍କୃତ ଜ୍ଞାନର ପ୍ରୟୋଗ ତଥା ପ୍ରସାର ଅତି ଅଳ୍ପ ସମୟ ମଧ୍ୟରେ କରାଯାଇ ପାରୁଛି । ଜ୍ଞାନ ଗ୍ରହଣର ସାଧନଗୁଡ଼ିକ ଏବେ ମଧ୍ୟ ଅଧିକରୁ ଅଧିକ ଶାଣିତ ଓ ବିକଶିତ ହେଉଅଛି । ଏହା ଫଳରେ ଅତି ଜଟିଳ ଜ୍ଞାନର ତଥ୍ୟଗୁଡ଼ିକ ଆଉ ଅମୂର୍ତ୍ତ ତଥା ଅବୋଧ ନ ହୋଇ ସହଜ ଓ ବାସ୍ତବ ହେଉଅଛି । ଅଧିକନ୍ତୁ ଯେଉଁ ତଥ୍ୟଗୁଡ଼ିକ ଶିଶୁମାନଙ୍କ ପାଇଁ ଏକଦା ଗ୍ରହଣ ଉପଯୋଗୀ ନଥିଲା ଏବେ ସେସବୁ ସେମାନଙ୍କ ହାତପାହାନ୍ତାରେ ଆସିଯାଉଛି । ଦୂରଦର୍ଶନ, ରେଡ଼ିଓ, ଚଳଚ୍ଚିତ୍ର, ସମ୍ବାଦପତ୍ର ଆଦି ଗଣମାଧ୍ୟମର କ୍ଷିପ୍ର ବିକାଶ ଓ ବହୁଳ ବ୍ୟବହାର ଯୋଗୁ ଦୂରଦୂରାନ୍ତ ଘଟଣା, ସ୍ଥାନ, ଜ୍ଞାନ, ବ୍ୟକ୍ତି, ଦୃଶ୍ୟ ଆଦି ଆମ ଦୈନନ୍ଦିନ ଜୀବନରେ ପ୍ରତ୍ୟକ୍ଷୀଭୂତ ହେଉଅଛି । ସେଥିରେ ଆମ ହର୍ଷ, ବିଷାଦର ଭାବାବେଗଦ୍ୱାରା ଆମେ ସାମିଲ ହୋଇପାରୁଛୁ । ଆମ କ୍ରୀଡ଼ାପ୍ରାନ୍ତର, ନୃତ୍ୟନାଟିକା ମଞ୍ଚ, ଆଲୋଚନା ପ୍ରାଙ୍ଗଣ, ପ୍ରଦର୍ଶନ କକ୍ଷ ଆଦି ଆମ ପ୍ରତିଭାପାଇଁ ସୀମିତ ହୋଇ ରହିନାହିଁ । ଏଥିରେ ବିଭିନ୍ନ ଅଞ୍ଚଳ, ଦେଶ ବିଦେଶର ପ୍ରତିଭାର ଚିତ୍ତାକର୍ଷକ ପ୍ରଦର୍ଶନ କରାଯାଇ ପାରୁଛି । ସାଂସ୍କୃତିକ କାର୍ଯ୍ୟକ୍ରମର ବିନିମୟ ଆଜି ଏକ ଧରାବନ୍ଧା ବିଷୟ ହୋଇଅଛି । ଆନ୍ତର୍ଜାତିକ ସହଯୋଗ ଆଜି କେବଳ ଆଲୋଚନାର ବିଷୟ ନୁହେଁ । ଏହା ଏକ ବାସ୍ତବତାରେ ପରିଣତ ହୋଇଛି । ଅଧିକନ୍ତୁ ଆମ ସମସ୍ୟା, ଜ୍ଞାନ ଓ କୌଶଳ ଆମ ଦେଶର ସୀମା ଟପି ଅନ୍ୟ ଲୋକଙ୍କୁ ପ୍ରଭାବିତ କରୁଛି ଓ ଆମେ ସେମାନଙ୍କ ଦ୍ୱାରା ପ୍ରଭାବିତ ହେଉଛୁଁ । ଏହାହିଁ ଦେଶାତୀତ (transnational) ।

ଏହି ପରିପ୍ରେକ୍ଷୀରେ ଜାତୀୟତା ଓ ଆନ୍ତର୍ଜାତୀୟତା ଆଉ ପରସ୍ପର ବିରୋଧାତ୍ମକ ଚିନ୍ତା ବା ବିଚାର ନୁହେଁ । ଉଭୟହିଁ ପରସ୍ପର ପରିପୂରକ । ପ୍ରତ୍ୟେକ ବ୍ୟକ୍ତି ପକ୍ଷରେ ଉଭୟ ବିଚାର ଓ ଆଚାର ଗ୍ରହଣୀୟ । ଆଧୁନିକ ଯୁଗରେ ବିଶେଷକରି ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ବିସ୍ଫୋରଣ ହେତୁ ଏକକାଳୀନ ଉଭୟ ଅଭିମୁଖୀ ହେବା ଏହି ଯୁଗର ଆବଶ୍ୟକତା ଓ ଆଚରଣ । ଉତ୍କଳମଣି ଗୋପବନ୍ଧୁ ବହୁ ପୂର୍ବରୁ ସର୍ବଜନହିତାୟ ଓ ସର୍ବଜନସୁଖାୟ ଅଭିମୁଖୀ ବ୍ୟକ୍ତିତ୍ୱର ବିକାଶପାଇଁ ପ୍ରକାଶ କରିଥିଲେ :

*''ଜାତୀୟ ମମତା ବିଶ୍ୱଜନ ପ୍ରୀତି*
*ଉତ୍କଳବାସୀର ହେଉ ଏହା ନୀତି ।''*

ଏହି ପ୍ରସଙ୍ଗରେ ଆମେ ଲକ୍ଷ୍ୟ କରିବା ଯେ ''ସର୍ବେଷାଂ ନୋ ଜନନୀ ଭାରତ ଧରଣୀ କଲ୍ପଲତେୟମ୍'' ଗୀତିକାରେ ''ଭାରତମେବ ନମାମ'' ଜଣାଇବାକୁ ଯାଇ କବିବର ରାଧାନାଥ ରାୟ ଲେଖିଛନ୍ତି :

''ଭାରତ ପଙ୍କଜଦଳମିଦ ମୁକୁଳଂ''

ଏହାହିଁ ଏକ ବିକଶିତ ବ୍ୟକ୍ତିତ୍ୱର ପରିଚୟ ଦିଏ । ଏଥିରେ ଜାତୀୟ ସଂହତି ଓ ବିଶ୍ୱବନ୍ଧୁତ୍ୱ ଏକାଦାରରେ ପରିସ୍ଫୁଟ ହୁଏ । ମାନବପ୍ରେମୀ ବ୍ୟକ୍ତି ପକ୍ଷରେ କୌଣସି ଅଡୁଆ ହୁଏ ନାହିଁ । ବିରୋଧ ପ୍ରତୀୟମାନ ହୁଏ ନାହିଁ, କିମ୍ବା ବିରୋଧକୁ ସାଲିସ କରିବାପାଇଁ କୌଣସି ଯୋଗାଭ୍ୟାସ କରିବାର ଆବଶ୍ୟକତା ନାହିଁ । ଈଶ୍ୱର ସୃଷ୍ଟିରେ ଶ୍ରେଷ୍ଠ ପ୍ରାଣୀ ମନୁଷ୍ୟ ଓ ସେ ପ୍ରାଣୀଜଗତକୁ ଆପଣାର କରିବ ଓ ନିଜ କୁଟୁମ୍ବକରି ଆନନ୍ଦ ଲାଭ କରିବ । ଏଥିପାଇଁ ଦେହର ରଙ୍ଗ, ମୁଖର ଭାଷା, ପିନ୍ଧାବାସ, ଖାଦ୍ୟ ଓ ମତର ବିଭିନ୍ନତା କାହିଁକି ବିଭେଦ ସୃଷ୍ଟି କରିବ ? ଅଦେହୀ ଦେହରେ ଅଛି । ସବୁ ଦେହକୁ ଦେହୀ କରିଛି ସେହି ଅଦେହୀ । ପୁନଶ୍ଚ ଦେବତ୍ୱ ହେଉଛି ଆମ୍ଭମାନଙ୍କ ପ୍ରକୃତି । ତେଣୁ ଆମ୍ଭେମାନେ ଏକ ଓ ଅଭିନ୍ନ । ଏହି ଖିଅକୁ ଧରିବା । ଏହା ସତ୍ତ୍ୱେ କିଏ କାହିଁକି ଆମକୁ ତତେଇ, ମତେଇ, ପଢେଇ ଆମ ମଧ୍ୟରେ ଲୁହାକିଲା ବାଡ଼େଇ ଆମକୁ ଅଲଗା ଅଲଗା କରିଦେବ ? ମୂଳ କଥାଟି ହେଉଛି ଆମେ ମନୁଷ୍ୟ ହେବା । ମଣିଷପଣିଆ ହେଉଛି ଆମ ସ୍ୱଭାବ । ଏହାର ଅଭାବ ହେଲେ ଆମେ ଦାନବ ହେବା । ଅଥଚ ମନୁଷ୍ୟପଣିଆକୁ ଆମ ଜୀବନରେ ସହଜ ସମ୍ଭବ କରି ପାରିଲେ ଆମେ ଦେବଗୁଣର ଅଧିକାରୀ ହେବା । ତାହାହେଲେ ବିଶ୍ୱରେ

ଗୋଟିଏ ମାନବସମାଜ ରହିବ । ଆମ ପ୍ରତ୍ୟେକଙ୍କର ସାର୍ବଜନୀନ ଦୃଷ୍ଟିକୋଣ (universal vision) ଅଛି ।

ସୁଖର କଥା, ଆମ ମଧ୍ୟରେ ଜାତୀୟ ସଂହତିର ବିକାଶ ପାଇଁ ସତ୍ୟ, ଅହିଂସା ସଂଯମ, ସହନଶୀଳତା, ସମ୍ମାନ ଆଦି ସଦ୍‌ଗୁଣର ଅଭ୍ୟାସ କରିବାକୁ କୁହାଯାଉଛି । ଏସବୁ ଆମ ଜାତୀୟ ସାର୍ବଜନୀନ ମୂଲ୍ୟବୋଧ । ବିଭିନ୍ନ ଶାସ୍ତ୍ର ମଧ୍ୟରେ ମହାଭାରତ ବ୍ୟାସଦେବଙ୍କର ଦୁଇଟି ବଚନକୁ ଘୋଷଣା କରେ, ସେ ଦୁଇଟି ହେଉଛି, ''ପରୋପକାର ସ୍ୱର୍ଗୀୟ, ପାପାୟ ପରପୀଡ଼ନମ୍‌'' । ସେହିପରି ଆମ ଜାତୀୟ ସଂଗ୍ରାମ ଆମକୁ ଗୋଟିଏ ଶକ୍ତିଶାଳୀ ବିଦେଶୀ ଶାସନରୁ ମୁକ୍ତ କରିଛି ସତ, ଏହାଠାରୁ ବଡ଼ କଥା ହେଉଛି, ଶୋଷଣ, କଷଣରୁ ମୁକ୍ତି ପାଇବାର ବିଶ୍ୱ ବକ୍ଷରେ ଏକ ଜ୍ୱଳନ୍ତ ଉଦାହରଣ ହୋଇ ରହିଛି ଆମ ଆନ୍ଦୋଳନ । ଅହିଂସା, ସତ୍ୟ, ତ୍ୟାଗ, ନିଷ୍ଠା, ସତ୍ୟାଗ୍ରହ ଆଦି ମୂଲ୍ୟବୋଧର ଜୟଯାତ୍ରା ହେଉଛି ଆମ ଜାତୀୟ ସଂଗ୍ରାମର ଇତିହାସ । ଗର୍ବ ଓ ଗୌରବର କଥା ହେଉଛି ଯେ ଏହିସବୁ ମୂଲ୍ୟବୋଧ ସମଗ୍ର ବିଶ୍ୱ ପାଇଁ ବ୍ୟାଖ୍ୟାନ କରାଯାଇଛି ଓ ଆଚରିତ ହୋଇଛି । ଏଗୁଡ଼ିକର ପ୍ରୟୋଗ ସାରା ବିଶ୍ୱରେ କରାଯାଉଛି । ବିଶ୍ୱ ଜନମତରେ ଆଜି ପ୍ରବଳ ବୁଭୁକ୍ଷା, ବ୍ୟଥା ଓ ବ୍ୟଗ୍ରତା ଏଥିପାଇଁ ପ୍ରକାଶ ପାଉଛି । ତେଣୁ ଏହିସବୁ ଉପାଦାନ ଓ ଜୀବନଧାରା ଆମ ମଧ୍ୟରେ ଜାତୀୟ ସଂହତିକୁ ସୁଦୃଢ଼ ଓ ସମୃଦ୍ଧ କରିବା ସଙ୍ଗେ ସଙ୍ଗେ ଆମକୁ ବିଶ୍ୱ ମୈତ୍ରୀ ଓ ପ୍ରୀତି ପାଇଁ ଅନୁକୂଳ କରି ଗଢ଼ିବ, ଏଥିରେ ସନ୍ଦେହ ନାହିଁ । ଏହି ସମନ୍ୱୟ ଦୃଷ୍ଟି ହିଁ ଆମ ସଂସ୍କୃତିର ସୁଦୀର୍ଘ ଇତିହାସକୁ ସ୍ୱଚ୍ଛ, ସୁନ୍ଦର ଓ ସାବଲୀଳ କରିଛି । ବିଶ୍ୱର ଜ୍ଞାନପିପାସୁ ନରନାରୀ ଯୁଗେ ଯୁଗେ ଆମ ଦେଶକୁ ଛୁଟି ଆସିଛନ୍ତି ଓ ଯାହା ବେଦାନ୍ତ-ଯୁଗରେ ମଣ୍ଡନ, ସେ ସ୍ୱୀକୃତି ଆଜି ସୁଦ୍ଧା ଯୁଗ ଯୁଗର ପରମ୍ପରା ଭାବରେ ମିଳୁଛି । ତାହା ହେଉଛି ''ଯତ୍ର ବିଶ୍ୱଂ ଭବତ୍ୟେକ ନୀଡ଼ଂ'' । ପକ୍ଷାନ୍ତରେ ଏଥିଯୋଗୁ ଆମ ଭାରତ, ଭାରତୀ ଓ ଭାରତଭାବନା ସମୃଦ୍ଧ ହେବାରେ ଲାଗିଛି ।

ଜାତୀୟ ଐକ୍ୟ ଓ ଅଖଣ୍ଡତାର ପ୍ରଥମ ଓ ପ୍ରଧାନ ଗୁରୁତ୍ୱ ଆମ ସମ୍ବିଧାନରେ ଦିଆଯାଇଛି । ଆମ ସ୍ୱାଧୀନତାକୁ ସୁରକ୍ଷିତ କରି ରଖିବାକୁ ହେବ । ଆମ ଗଣତାନ୍ତ୍ରିକ ଜୀବନକୁ ସଫଳ କରିବାପାଇଁ ଆମେ ଲାଗିପଡ଼ିବା । ଏଥିପାଇଁ ଅନେକ ସମସ୍ୟା ରହିଛି । ଦାରିଦ୍ର୍ୟ, ନିରକ୍ଷରତା, ବେକାରୀ ହେଉଛି ଏସବୁ ସମସ୍ୟା ମଧ୍ୟରେ ମୁଖ୍ୟ । ଏହାଛଡ଼ା ବିଚ୍ଛିନ୍ନତାବାଦୀ ଶକ୍ତି ଆମକୁ ଖଣ୍ଡ ଖଣ୍ଡ କରି ଦେଉଛି । ଅସ୍ପୃଶ୍ୟତା, ଜାତିଭେଦ, ଯୌତୁକ

ପ୍ରଥା, ସମାଜର ବିଭାଗୀକରଣ ଆଦି ଅନେକଗୁଡ଼ିଏ ଅନ୍ଧବିଶ୍ୱାସ ଓ ପୁରୁଣାକାଳିଆ ତଥା ଅପ୍ରାସଙ୍ଗିକ ରୀତିନୀତି ଆମ ଦେଶରୁ ହଟି ଯାଉନାହିଁ । ବରଂ ଚେରଭିଡ଼ି ସମାଜକୁ ଦୁର୍ବଳ କରିଦେଉଛି । ଧର୍ମ ଓ ସଂସ୍କୃତିର ବିଭିନ୍ନତା ଓ ଦେଶର ବିଶାଳତା ହେତୁ ଲୋକମାନେ ଭିନ୍ନ ଭିନ୍ନ ହୋଇଯାଉଛନ୍ତି । ଏଥିପାଇଁ ଭ୍ରାତୃଭାବ ପ୍ରତିଷ୍ଠା ଏକାନ୍ତ ଅପରିହାର୍ଯ୍ୟ । ଏହାହିଁ ଜାତୀୟ ସଂହତିର ମୌଳିକ ସୋପାନ । ଏଥିପ୍ରତି ସଜାଗ ଓ ସତର୍କ ଦୃଷ୍ଟି ରଖିବା ଆମ ସମ୍ବିଧାନର ନିର୍ଦ୍ଦେଶ । ଏଥି ସହିତ ଆମ ସମ୍ବିଧାନର ୫୧ତମ ଧାରା ଅନୁସାରେ ଆନ୍ତର୍ଜାତିକ ଶାନ୍ତି ଓ ନିରାପତ୍ତାର ପ୍ରୋତ୍ସାହନ ପାଇଁ ସୁନିର୍ଦ୍ଦିଷ୍ଟ କରି ଦିଆଯାଇଛି । ରାଷ୍ଟ୍ର ସ୍ତରରେ ନିଶ୍ଚିତ ଭାବରେ ଉଦ୍ୟମ ଚାଲୁ ରହିବ, ଯଦ୍ଵାରା

(କ) ଆନ୍ତର୍ଜାତିକ ଶାନ୍ତି ଓ ସୁରକ୍ଷାର ପ୍ରୋତ୍ସାହନ କରାଯିବ;

(ଖ) ବିଭିନ୍ନ ଦେଶ ମଧ୍ୟରେ ନ୍ୟାୟସମ୍ମତ ଓ ମର୍ଯ୍ୟାଦାପୂର୍ଣ୍ଣ ସମ୍ପର୍କ ରକ୍ଷା କରାଯିବ;

(ଗ) ଆନ୍ତର୍ଜାତିକ ଆଇନ ଓ ରାଜିନାମା ପ୍ରତି ସମ୍ମାନ ତଥା ସଙ୍ଗଠିତ ଦେଶମାନଙ୍କ ମଧ୍ୟରେ ପରସ୍ପର ପ୍ରତି କାରବାର କରିବାରରେ ଆନୁଗତ୍ୟକୁ ଉତ୍ସାହିତ କରାଯିବ ଏବଂ

(ଘ) ମଧ୍ୟସ୍ଥତା ମାଧ୍ୟମରେ ଆନ୍ତର୍ଜାତିକ ବିବାଦର ସମାଧାନ ପାଇଁ ଉତ୍ସାହ ଦିଆଯିବ ।

"ତ୍ୱମେବ ମାତା, ଚ ପିତା ତ୍ୱମେବ" ଏହାହିଁ ଆମ ପ୍ରାର୍ଥନା ବ୍ୟକ୍ତି ଓ ସମୂହ ସ୍ତରରେ; ପରିବାର, ପାଠଶାଳା ଓ ପରସ୍ପର ମଧ୍ୟରେ । ଏକ ପରମେଶ୍ୱରଙ୍କ ସନ୍ତାନ ଆମେ ଓ ତେଣୁ ଆମ ମଧ୍ୟରେ ଭ୍ରାତୃତ୍ୱର ସମ୍ପର୍କ ସ୍ୱଭାବତଃ ଅପରିହାର୍ଯ୍ୟ ।

ଏଥିରୁ ସୁସ୍ପଷ୍ଟ ଜାତୀୟ ସଂହତି ଓ ବିଶ୍ୱଜନପ୍ରୀତିର ସମନ୍ୱୟ ଯେ କେବଳ ଆମ ଐତିହ୍ୟ ଦ୍ୱାରା ପରିପୁଷ୍ଟ ତାହା ନୁହେଁ, ଏହା ମଧ୍ୟ ଆମ ସମ୍ବିଧାନ ନିର୍ଦ୍ଦେଶିତ ଆଧୁନିକ ଯୁଗର ଆବଶ୍ୟକତା । ଏହାର ସାଧନ ହେଉଛି ଭ୍ରାତୃତ୍ୱ । ଯୁଗ ଯୁଗର ଆଧ୍ୟାତ୍ମିକ ପରମ୍ପରା ତଥା ଆଧୁନିକ ବିଜ୍ଞାନ ଯୁଗର ଆବଶ୍ୟକତା ଏହି ଭ୍ରାତୃତ୍ୱର ସ୍ୱୀକୃତି ଦିଏ । ଏହା ମଧ୍ୟ ଆମ ସମ୍ବିଧାନ ଦ୍ୱାରା ସମର୍ଥିତ । ଛଣ ବା ଛଣପଟ ରଜ୍ଜୁର ସମ୍ପ୍ରସାରଣ ଅତି ସୀମିତ ବା ନାହିଁ କହିଲେ ଚଳେ । କିନ୍ତୁ ସ୍ନେହର ରଜ୍ଜୁ ହୃଦୟରୁ ବାହାରେ ଓ ଏହାର ପରିବ୍ୟାପ୍ତି ଅପରିସୀମ । ଯେତେ ଟାଣିବା ସେତେ ଲମ୍ବିବ । ଏହି ଡୋରି ଆମକୁ ଜାତୀୟସ୍ତରରେ ବାନ୍ଧିବା ସଙ୍ଗେ ସଙ୍ଗେ ବିଶ୍ୱସ୍ତରରେ ଆମକୁ ଏକଜୁଟ କରିପାରିବ ।

ବେଳ ଥିଲା, ଆମେ ମନୁଷ୍ୟକୁ ବ୍ୟକ୍ତିସ୍ତରରେ ସୀମିତ ରଖି ତାକୁ ଜାତୀୟ ମନୋଭାବାପନ୍ନ ଓ ପରିଶେଷରେ ମାନବପ୍ରେମୀ କରିବାପାଇଁ ଉଦ୍ୟମ କରୁଥିଲୁ । ଜାତୀୟ

ସଙ୍ଗୀତ, ଜାତୀୟ ପତାକା ଆଦି ଜାତୀୟ ପ୍ରତୀକର ଅର୍ଥ ବୁଝିବେ, ସ୍ୱରୂପ ଜାଣିବେ ଓ ସମ୍ମାନ କରି ଶିଖିବେ । ଦେଶାତ୍ମବୋଧକ ତଥା ଗୋଷ୍ଠୀ ସଙ୍ଗୀତ ବୋଲି ଆବେଗିକ ସଂହତିର ବିକାଶ କରାଯିବ । ଜାତୀୟ ଦିବସ ଏବଂ ଜାତିର ନମସ୍ୟ ମନୀଷୀମାନଙ୍କ ଆବିର୍ଭାବ ଓ ତିରୋଧାନ ଦିବସ ପାଳନ କରି ତନ୍ମାଧ୍ୟମରେ ସେମାନଙ୍କ ତ୍ୟାଗପୂତ ଆଦର୍ଶକୁ ଅନୁକରଣ କରି ଶିଖିବେ । ଭାରତର ବିଭିନ୍ନ ଅଞ୍ଚଳର ଭ୍ରମଣ କରି ଜାତୀୟ ପରମ୍ପରାର ଅନୁଭୂତି ଅର୍ଜନ କରିବେ । ଆମର ନୃତ୍ୟ, ସଙ୍ଗୀତ, କଳା, ସ୍ଥାପତ୍ୟ, ଇତିହାସ, ସାହିତ୍ୟ ଆଦିର ଅଧ୍ୟୟନ ଦ୍ୱାରା ଅତୀତର ଗୌରବ ଓ ଉଜ୍ଜ୍ୱଳ ଭବିଷ୍ୟତ ବିଷୟରେ ଧାରଣା ଜନ୍ମାଇବାକୁ ହେବ । ଆମ ସାଂସ୍କୃତିକ ଐତିହ୍ୟ ବିଭିନ୍ନତାର ସୌରଭ ଦ୍ୱାରା କିପରି ବର୍ଣ୍ଣାଢ୍ୟ, ବିଚିତ୍ର ଓ ସମୃଦ୍ଧ ହୋଇଛି ଏଥିରେ ମଜ୍ଜିଯିବାକୁ ପଡ଼ିବ ।

ଏହା ତ ମାତ୍ର କେତୋଟି ଉଦାହରଣ । ପ୍ରତ୍ୟେକ ଜନଶିକ୍ଷା କାର୍ଯ୍ୟକ୍ରମରେ ଏହାକୁ ରୂପାୟିତ କରିବାର ଉଦ୍ୟମ କରାଯିବ । ମାନବପ୍ରେମ ହେଉଛି ଜାତିପ୍ରେମର ସମ୍ପ୍ରସାରଣ । ଜାତୀୟ ଜୀବନର ସୁସ୍ଥ ପ୍ରତିଫଳନ ଭାବରେ ଆମେ ବିଭିନ୍ନ ରାଷ୍ଟ୍ରର ସୀମା ଉର୍ଦ୍ଧ୍ୱକୁ ଯାଇ ଏକ ଭେଦବିରହିତ ମାନବସମାଜର ଧାରଣା କରିପାରିବା ।

ବର୍ତ୍ତମାନ ବେଳ ଆସିଛି, ବିଶ୍ୱସ୍ଥିତି ଓ ସଚେତନତା ଆମକୁ ବହୁ ଭାବରେ ପ୍ରଭାବିତ କରୁଛି । ବିଶ୍ୱର ସମସ୍ୟା ଓ ଅତ୍ୟାଧୁନିକ ଧାରା ଆମ ଗୃହାଙ୍ଗନରେ ତଥା କାର୍ଯ୍ୟକ୍ଷେତ୍ରରେ ଆମ ବ୍ୟକ୍ତିଚେତନାର ଅଙ୍ଗୀଭୂତ ହେଉଅଛି । ଶିକ୍ଷା, ସାହିତ୍ୟ, କଳା, ବିଜ୍ଞାନ ଆଦି କ୍ଷେତ୍ରରେ ବିଭିନ୍ନ ରାଷ୍ଟ୍ରର କୃତିତ୍ୱପୂର୍ଣ୍ଣ ସାଧନା, ସାଧନ ଓ ସାମଗ୍ରୀ ଆମ ବ୍ୟକ୍ତିଗତ ଜୀବନର ଆହ୍ୱାନ ଭାବରେ ଦଣ୍ଡାୟମାନ ହେଉଛି । ଏଥିରେ ଆମେ ଭାସି ନ ଯାଇ ସ୍ୱକୀୟ ପରମ୍ପରା ଓ ପ୍ରତିଭାର ସଚେତନତାରେ ଦୃଢ଼ ରହିବାକୁ ହେବ । ଶୋଷଣ, କଷଣ, ଅନ୍ୟର ଆଭ୍ୟନ୍ତରୀଣ ବ୍ୟାପାରରେ ଅଯଥା ହସ୍ତକ୍ଷେପ, ବିଭେଦ ଆଦି ଯେପରି ବିଶ୍ୱ ପରିସରରେ ସର୍ବଥା ପରିତ୍ୟାଜ୍ୟ ସେହିପରି ଜାତୀୟ, ସାମାଜିକ ଓ ଆଞ୍ଚଳିକ ପରିସରରେ ବର୍ଜନୀୟ । ସତ୍ୟ, ଶାନ୍ତି ଓ ମୈତ୍ରୀ ହେଉଛି ମାନବ ଜୀବନର ଅପରିହାର୍ଯ୍ୟ ଅଙ୍ଗ ।

ସେ ବେଳ ଓ ଏ ବେଳର ଉଲ୍ଲିଖିତ ପାର୍ଥକ୍ୟର କାରଣ ହେଉଛି ପ୍ରଯୁକ୍ତିବିଦ୍ୟା ତଥା ଗଣମାଧ୍ୟମର ଉଲ୍ଲେଖନୀୟ ଅଗ୍ରଗତି । ତେଣୁ ବ୍ୟକ୍ତିଜୀବନକୁ ସର୍ବଜନହିତାୟ କରି ମାନବପ୍ରେମୀ କରିବା କିମ୍ବା ବିଶ୍ୱଜୀବନରେ ବୁଡ଼ି ରହିଥିବା ମାନବକୁ ସ୍ୱାଭିମାନୀ ଓ ମର୍ଯ୍ୟାଦାସମ୍ପନ୍ନ କରିବା ଏହାହିଁ ବିଚାର୍ଯ୍ୟ । ଦୁଇଟି ମଧ୍ୟରୁ ଗୋଟିଏ ଆଭିମୁଖ୍ୟକୁ ବରଣ

କରିବାର ଏକଦିଗଦର୍ଶୀ ଉପାୟ ପରିବର୍ତ୍ତେ ଉଭୟ ଆଭିମୁଖ୍ୟର ଯୁଗପତ୍ ପ୍ରୟୋଗ ହେଉଛି ଅନ୍ୟ ଏକ ପନ୍ଥା । ଶେଷୋକ୍ତ ପନ୍ଥାଟିକୁ ଅନେକେ ବାଛି ନେଇ ପାରନ୍ତି । କାରଣ ବ୍ୟକ୍ତିବିଶେଷର ବିକାଶ ଅନୁରୂପ ପନ୍ଥା ଗ୍ରହଣ କରିବା ସମୀଚୀନ ମନେହୁଏ ।

ଉପସଂହାରରେ ଚିରସ୍ମରଣୀୟ ପଞ୍ଜାବକେଶରୀ ଲାଲା ଲଜପତ ରାୟଙ୍କ ନିମ୍ନୋକ୍ତିକୁ ସ୍ମରଣ କରିବା, ''ସମ୍ମାନାର୍ହ ମୃତ୍ୟୁ ବରଣ କରିବାକୁ ହେଲେ ବ୍ୟକ୍ତି ପ୍ରଥମେ ସମ୍ମାନଜନକ ଜୀବନଯାପନ କରିବାକୁ ଶିଖିବା ଦରକାର । ସାଧୁଜୀବନ-ନୀତିପାଳନ, ମାତୃଭୂମି ଓ ମାନବକଲ୍ୟାଣ ସାଧନରେ ଜୀବନ କଟାଇ ଯେଉଁ ବ୍ୟକ୍ତି ମହନୀୟ ମୃତ୍ୟୁ ବରଣ କରନ୍ତି ତାଙ୍କର ସେ ମୃତ୍ୟୁ ଜୀବନ ସୌଧର ଶିରୋଭୂଷଣ ହୁଏ ।''

ଅନ୍ୟ ଏକ ଦିଗରୁ ସ୍ୱାମୀ ବିବେକାନନ୍ଦ ଆମକୁ ଚେତାଇ ଦିଅନ୍ତି, "They alone live who live for others and the rest are dead, though they are alive."



# ଭାରତୀୟତା ଓ ଭାରତ ଭାବନା

ଆମେ ଭାରତରେ ରହିଛୁଁ । ଏହାକୁ କେହି ଅସ୍ୱୀକାର କରନ୍ତି ନାହିଁ । କେହି ମଧ ପ୍ରଶ୍ନ କରିବାର ଦେଖାଯାଏ ନାହିଁ । କିନ୍ତୁ ସମସ୍ତଙ୍କ ତୁଣ୍ଡରେ ଗୋଟିଏ ପ୍ରଶ୍ନ— ଆମେ ଭାରତୀୟ ହୋଇ ପାରିଛୁ କି ? କିଏ ଭାରତୀୟ ? ପ୍ରଶ୍ନ କରନ୍ତି ପ୍ରାଶ୍ନିକ ଉତ୍ତରଦାତାଙ୍କ ପାଇଁ । କିନ୍ତୁ ଆମେ ଭାରତବାସୀ, ଆମେ ଭାରତୀୟ । ପ୍ରଶ୍ନଟି ଆମର, ଆମେ ପ୍ରଶ୍ନ କରିଛୁଁ ଓ ଆମେ ଦେବା ଉତ୍ତର । ଏଠି ଦୁଇଜଣର କଥା ନାହିଁ । ଜଣଙ୍କର, ଯେ ପ୍ରାଶ୍ନିକ, ସେ ଦେବେ ଉତ୍ତର ।

ଅନେକେ ସାଧାରଣତଃ କହନ୍ତି, ପ୍ରଶ୍ନ କରିବା ସହଜ ଓ ଉତ୍ତର ଦେବା କଠିନ । ଏହି ପ୍ରସଙ୍ଗଟି ଯଦି ସତ୍ୟ ହୁଏ, ତେବେ ଏହା ସହଜରେ ଅନୁମେୟ, ଆମେ କାହିଁକି ଭାରତୀୟ ହୋଇପାରୁନାହୁଁ ? ଆମେ ଚଟାଚଟ୍ ପ୍ରଶ୍ନ କରି ଦେଉଛୁଁ, ଫଟାଫଟ୍ ଉତ୍ତର ଦେଇପାରୁ ନାହୁଁ । କୁଣ୍ଠେଇ ହେଉଛୁଁ, ଯାକୁ ତାକୁ ପଚାରୁଛୁ, ଦେଖାଶୁଣା ଉତ୍ତରଟିଏ କରି ଦେଉଛୁଁ ଇତ୍ୟାଦି । ଦ୍ୱିତୀୟତଃ, ପ୍ରଶ୍ନ କଲେ ପାରିଶ୍ରମିକ ମିଳେ । ଡେରି ହେଉ ପଛକେ ନଗଦ କଞ୍ଚା କଉଡ଼ିର ସମ୍ଭାବନା ଥାଏ । କିନ୍ତୁ ଉତ୍ତର ଦେବା ଏକ ବିଳମ୍ବିତ ଓ ଜଟିଳ ପ୍ରକ୍ରିୟା । ପ୍ରସ୍ତୁତି ଖୁବ୍ ଆୟାସସାଧ ଓ ସମୟସାପେକ୍ଷ । ଯଦି ଉତ୍ତର ଦେବା ଏକ ଇଚ୍ଛାଧୀନ ବିଷୟ ହୁଅନ୍ତା ତେବେ ପରୀକ୍ଷାର୍ଥୀ କଣ ବିଲ୍‌କୁଲ୍ ବାହାରନ୍ତେ କି ? ଅଥଚ ପ୍ରାଶ୍ନିକ ହେବାରେ କିଏ କାହିଁକି ପଛେଇବେ ? ତୃତୀୟତଃ ପ୍ରଶ୍ନ କରିବା ଅଧିକାଂଶତଃ ସହଜ । କାରଣ ଏହା ପ୍ରାଶ୍ନିକ ପାଇଁ ନୁହେଁ । ମୌଖିକ ହେଉ ବା ଲିଖିତ ହେଉ, ପ୍ରଶ୍ନଟି ଅନ୍ୟ ପାଇଁ ଉଦ୍ଦିଷ୍ଟ । ତେଣୁ ଆମେ ଏ ପରମ୍ପରାରେ ଚଳି ଆସିଥିବା ଫଳରେ ପ୍ରଶ୍ନଟି କରି ଦେଉ ସତ୍ୟ କିନ୍ତୁ ନିଜେ ଉତ୍ତର ଦେବାକୁ ଆଗେଇ ଆସୁନାହୁଁ । ପ୍ରଶ୍ନ କରି ଯେ ଉତ୍ତର ଆମେ ଦେବୁ ଏକଥା ଭାବୁ ନାହୁଁ । ସେଥିପାଇଁ ଆମର ଅଧିକାଂଶ ଭାଷଣ, ବଚନ ଓ ଆସ୍ଫାଳନ ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ ଓ ନେତାଙ୍କଠାରୁ ନେତ ପର୍ଯ୍ୟନ୍ତ କେବଳ ପ୍ରଶ୍ନରେ ସୀମିତ । ଆମେ ଭାରତୀୟ ହୋଇପାରୁଛୁ କି ? ଆମ ବ୍ୟଙ୍ଗ, ବିଦ୍ରୂପ ଓ ବ୍ୟଞ୍ଜନାରେ ମଧ ସେହି ପ୍ରଶ୍ନ । ଆମେ ନିରାପଦରେ ଶୋଇଯାଇଛୁ ଯେ ଆମକୁ ଦିନେ ଏହାର ଉତ୍ତର

ଦେବାକୁ ପଡ଼ିବ । ଚତୁର୍ଥତଃ, ଆମ ପ୍ରଶ୍ନର ଉତ୍ତର କେବଳ କାଗଜ କଲମରେ । ଉତ୍ତର ଖାତାର ପୃଷ୍ଠା ଗଣି ଆମେ ଉତ୍ତର ଲେଖୁଁ । ସେତିକି ନୁହେଁ ଉତ୍ତର ଖାତାର ପୃଷ୍ଠା ଗଣି ନମ୍ବର ଦିଆଯିବାର ଶୁଣାଯାଏ । ଉତ୍ତର ଖାତାକୁ ତଉଲି ଓଜନଦାର ଖାତାକୁ ଅଧିକ ନମ୍ବର ମିଳେ ବୋଲି ଆମ ବଡ଼ବଡ଼ିଆମାନେ ବେଳେବେଳେ କହନ୍ତି । ଆମ ପେଟରେ କେତେ ପାଠ, ମୁହଁରେ କେତେ ଓ ଆମ ଚାଲିଚଳନରେ କେତେ, ଏକଥା କେହି ବିଚାରନ୍ତି ନାହିଁ । ଧର୍ମାନ୍ଧ ବ୍ୟକ୍ତି ଧର୍ମ-ନିରପେକ୍ଷତାରେ ଅଧିକ ପ୍ରଶଂସିତ ହେବାର ଶୁଣାଯାଏ । ଏକଛତ୍ର ଶାସକମାନେ ଗଣତନ୍ତ୍ରର ବଡ଼ପଣ୍ଡା ଭାବରେ ହୁଁକାର ଦେବାର ଜଣାଯାଏ । ଶ୍ରମକୁ ଅତ୍ୟଧିକ ଘୃଣା କରୁଥିବା ଶିକ୍ଷାର୍ଥୀ ଶ୍ରମ ସମ୍ବନ୍ଧୀୟ ପରୀକ୍ଷା ବା ପ୍ରତିଦ୍ୱନ୍ଦ୍ୱିତାରେ ସାଫଲ୍ୟ ଅର୍ଜନ କରିଥିବାର ନଜିର ଆମ ପରୀକ୍ଷା ପଦ୍ଧତିରୁ ଜଣାପଡ଼େ । ଏପରି ସ୍ଥଳରେ ଆମେ ଭାରତୀୟ ହୋଇପାରୁଛୁ କି ? ଏହି ପ୍ରଶ୍ନର ଉତ୍ତର ଦେବା ଅତି କଠିନ । ଆମ କାମ, କଥା ଓ ଚିନ୍ତାରେ ଆମେ ଭାରତୀୟ ହେବାର ପ୍ରମାଣ ଦେବାକୁ ହେବ । ଘୋଷା ପାଠ ନୁହେଁ, ଏହା ଆଚରିତ ଜୀବନଧାରା ଓ ପ୍ରତିପାଳିତ ଜୀବନ ଧର୍ମ । ଠୋଠା କରିଦେଲେ ହେବ ନାହିଁ । ଆଚାର ଓ ବିଚାରରେ ଆମକୁ ଭାରତୀୟ ହେବାକୁ ପଡ଼ିବ । ଆମ ହୃଦୟରେ ଏହା ପ୍ରତିଫଳିତ ହେବ । ଅନେକ ଦରଖାସ୍ତରେ ଆମେ ଲେଖି ଦେଉଛୁ ଆମେ ଭାରତୀୟ । ଏହା ତ ଫର୍ମ ପୂରଣ । ମାତ୍ର ଆମ ଜୀବନ-ପାତ୍ର ଏଥିରେ ପୂର୍ଣ୍ଣ ହୋଇଛି କି ? ଶୟନ, ସ୍ୱପ୍ନ ଓ ଜାଗ୍ରତ ଅବସ୍ଥାରେ ଆମେ ଯେ ଭାରତୀୟ ଏହାର୍ ପ୍ରମାଣ ଦେଇପାରୁଛୁ କି ? ଭକ୍ତି ଓ ଭଜନର ସଚେତନତା ମନୁଷ୍ୟର ହୃଦୟତନ୍ତ୍ରୀରେ ପ୍ରତିଫଳିତ ହୁଏ । ମାତ୍ର ତାର ମୁଖ, ମୁଖା ଓ ମଣ୍ଡନରେ ନୁହେଁ । ସମସ୍ତ ଧର୍ମଧାରାରେ ଏହା ସତ୍ୟ । ଗୋଟିଏ ଅତିପରିଚିତ ଉଦାହରଣ ହେଉଛି ଯେ ହନୁମାନଙ୍କର ରାମଭକ୍ତି ତାଙ୍କ ହୃଦୟତନ୍ତ୍ରୀରେ ନିନାଦିତ ହେଉଥିବାର ଦେଖି ହନୁମାନ ଯେ ଭକ୍ତପ୍ରବର ସ୍ୱୟଂ ଭଗବାନ ଶ୍ରୀରାମ ଏହା ଜାଣିପାରିଥିଲେ । ଠିକ୍ ସେହିପରି ଜାତୀୟତାର ପରିପ୍ରକାଶ ନାଗରିକଙ୍କ ସମଗ୍ର ବ୍ୟକ୍ତିତ୍ୱରେ ଘଟେ । ଏହା ଉତ୍ତର ଖାତାର ଉପରଠାଉରିଆ ଉତ୍ତର ପରି ନୁହେଁ । କିମ୍ବା ଉତ୍ତରଖାତାରେ ଗୋପନୀୟତା ଏଥିରେ ନାହିଁ । ନିଭୃତ ପାରିବାରିକ ଜୀବନ ପରି ସର୍ବସାଧାରଣ ଜୀବନ, ସବୁ ଆମେ ଭାରତୀୟ ।

ବର୍ତ୍ତମାନ ଆମ ମୂଳ କଥାଟିର ବିଚାର କରିବା । ଆମେ ଭାରତବାସୀ । ଆମେ ଭାରତରେ ରହୁଛୁ । ଏହାର ପାଣି, ପବନ, ପତ୍ର, ପୁଷ୍ପ, ଫଳ ଆଦି ଆମ ଜୀବନକୁ ଧାରଣ କରିଛି । ଏହାର ମାଟିରେ ଆମ ଅସ୍ତିତ୍ୱ ସ୍ୱୀକୃତି ଲାଭ କରିଛି ଓ ପରିଶେଷରେ

ଆମ ଦେହାବସାନ ଏହି ମାଟି ମା'ର କୋଳରେ ସୁରକ୍ଷିତ ହୋଇ ଏହାକୁ ରସୋତୀର୍ଣ୍ଣ କରିଛି । ଏହି ଏକ ସ୍ୱାଭାବିକ ପରିପ୍ରେକ୍ଷୀରେ ଆମ ଭିଟାମାଟି, ହିଡ଼ବାଡ଼, ବନ୍ଧ ପାଇଁ ଜୀବନଠୁ ବଳି ଅଧିକ ମାୟା ମମତା । ଏଥିପାଇଁ ହଣାହଣି, ଫଟାପଟି, ଲହୁଲୁହାଣ ଓ ବେଳେବେଳେ ଆମ ସର୍ବସ୍ୱାନ୍ତ ଓ ତଳିତଳାନ୍ତ ହେଉଛୁ । ସାମ୍ବିଧାନିକ ଅଧିକାର ଧରି କୋର୍ଟ କଚେରି ଲଢୁଛୁ । ଜନସ୍ୱାର୍ଥ ମାମଲା ରୁଜୁ କରାଯାଉଛି । ଆଉସବୁ ଅଧିକାର କଥା ପଛକୁ ଯାଉଛି । ସୂଚୀ ଅଗ୍ର ପରିମାଣର ଭୂମି ଯୋଗୁଁ ଯେ ମହାଭାରତ, ଏହା ଆମର ବଡ଼ ଦୃଷ୍ଟାନ୍ତ ହୋଇଛି । ଦେଶ ତରଫରୁ ଯେଉଁ ଗଠନମୂଳକ ଓ ଜନହିତକର ବିକାଶ ଯୋଜନା ହାତକୁ ନିଆଯାଉଛି ଆମେ ଏ ସବୁର ସୁବିଧା ଊଣାଅଧିକେ ପାଉଛୁ । ବନ୍ୟା, ବାତ୍ୟା, ମରୁଡ଼ି ଓ ବିପର୍ଯ୍ୟୟ ପାଇଁ ନାନା ପ୍ରତିକାରମୂଳକ କାର୍ଯ୍ୟ ଜାତୀୟ ଓ ରାଜ୍ୟ ସ୍ତରରେ କରାଯାଉଛି । ଉତ୍ପାଦାନ ବୃଦ୍ଧି, ଦାରିଦ୍ର୍ୟ ଓ ବେକାରୀ ଦୂରୀକରଣ, ନାରୀ ଜାଗରଣ, ସାକ୍ଷରତାର ପ୍ରସାର ଆଦି ଦିଗରେ ବ୍ୟବସ୍ଥା ଚାଲୁ ରହିଛି । ଏସବୁ ଦିଗରୁ ବିଚାର କଲେ ଆମ ଜନ୍ମଭୂମି ନିଜ ଜନନୀ ସଦୃଶ । ଆମେ ଅତୁଳନୀୟ ଆନୁଗତ୍ୟର ଅଧିକାରୀ । ଜନନୀ କେବଳ ଗର୍ଭଧାରିଣୀ ନୁହନ୍ତି, ସମସ୍ତ ନାରୀଜାତି ଆମ ମାତୃସମା ଜନନୀ ହୋଇଯାଆନ୍ତି । ଗର୍ଭଧାରିଣୀ ଜନନୀର ଧାରଣା କ୍ରମେ ସମ୍ପ୍ରସାରିତ ହୋଇ ଆମ ମନରେ ବିଶ୍ୱଜନନୀ ଓ ଜଗଜ୍ଜନନୀ ଭାବନା ଆସେ । ଠିକ୍ ସେହିପରି ଜନ୍ମମାଟି କେବଳ ଅନ୍ତୁଡ଼ିଶାଳରେ ସୀମିତ ହୋଇ ରହେନାହିଁ । ଭିଟାମାଟିର ମମତା ପ୍ରସାରିତ ହୋଇ ଜିଲ୍ଲା, ରାଜ୍ୟ ଓ ଦେଶ ଆଦି ଭୌଗୋଳିକ ସୀମା ଟପି ସମଗ୍ର ବିଶ୍ୱ ତଥା ମାନବ ସମାଜକୁ ଗୋଟିଏ ସୂତ୍ରରେ ଆବଦ୍ଧ କରେ । ଭୌଗୋଳିକ ସୀମା ପ୍ରଶାସନିକ, ସାଂସ୍କୃତିକ ଓ ସାମାଜିକ ସୁବିଧା ପାଇଁ କରାଯାଇଥାଏ । ଏହା ରହିଥିବା ସତ୍ତ୍ୱେ ଏହାକୁ ଟପିଯିବା ମାନସିକ ଓ ଆଧ୍ୟାତ୍ମିକ ଅବବୋଧ ତଥା ମନୋଭାବ ଉପରେ ନିର୍ଭର କରେ । ଏହିସବୁ କାରଣରୁ କୁହାଯାଏ ''ମାତୃଭୂମି ମାତୃଭାଷା ଉଭୟ ଜନନୀ, ସେବ ତାଙ୍କୁ ଭକ୍ତି ଭରେ ଦିବସ ରଜନୀ ।'' ଏହି ସେବା ଅହର୍ନିଶ କିପରି ହେବ ଓ ଆମେ ଏହା କରୁଛୁ କି ? ପୁଣି ଭକ୍ତିରେ ସେବା କରାଯିବ । ଏଥିପାଇଁ ନିଷ୍ଠା ରହିବ । ସେବାରେ ସବୁବେଳେ ଆମେ ଲାଗି ରହିଛୁ କି ?

ସେବକ ଓ ସେବ୍ୟ ମଧ୍ୟରେ ଏହି ସୁସଂହତ ସମ୍ପର୍କର ଅଭାବ ଓ ଜାତୀୟ ଚେତନାର ବିକାଶରେ ଶୀଥିଳତା ଲକ୍ଷ୍ୟ କରି ଦେଶର ଚିନ୍ତାନାୟକମାନେ ଘୋର ଉଦ୍‌ବେଗ ପ୍ରକାଶ କରିଛନ୍ତି । ଥରେ ପଣ୍ଡିତ ନେହେରୁ କ୍ଷୋଭ କରି କହିଥିଲେ, ସେ ମରାଠୀ ଦେଖୁଛନ୍ତି,

ସେହିପରି ଗୁଜୁରାଟୀ, ବଙ୍ଗାଳୀ ଆଦି ଲୋକଙ୍କୁ ଦେଖୁଛନ୍ତି । କିନ୍ତୁ ଭାରତୀୟ କାହାନ୍ତି ? ବିଭିନ୍ନ ଧର୍ମର ଲୋକ ଭାରତରେ ଅଛନ୍ତି । କିନ୍ତୁ ଭାରତୀୟ କାହାନ୍ତି ? ପୁଣି ବିଭିନ୍ନ ଭାଷାଭାଷୀ ଓ ଏହା ଫଳରେ ବିଭିନ୍ନ ରାଜ୍ୟବାସୀ ହେବା ତଥା ନିଜ ନିଜର ଧର୍ମାଚରଣ କରିବାର ଅଧିକାର ଆମ ସମ୍ବିଧାନ ସମ୍ମତ । କିନ୍ତୁ ସ୍ୱାଧୀନତାର ସୁରକ୍ଷା ଓ ଗଣତନ୍ତ୍ରକୁ ସଫଳ କରିବା ଦାୟିତ୍ୱ ଆମର । ସେଥିପାଇଁ ଏହି ବିଶାଳ ଭୂଖଣ୍ଡର ଅଧିବାସୀଙ୍କ ମଧ୍ୟରେ ଐକ୍ୟ ହେଉଛି ପ୍ରଥମ ଓ ପ୍ରଧାନ ଆବଶ୍ୟକତା । ଭାରତର ଐକ୍ୟ, ଅଖଣ୍ଡତା ଓ ଏକାତ୍ମତା ସର୍ବାଧିକାର ଲାଭ କରିଛି । ବିଭିନ୍ନ ବର୍ଣ୍ଣ, ଧର୍ମ, ଭାଷା ଓ ସଂସ୍କୃତିରେ ବହୁଳତା ମଧ୍ୟରେ ଭ୍ରାତୃଭାବର ପ୍ରତିଷ୍ଠା କରିବା ଦ୍ୱାରା ସଂହତି ଓ ସୁସ୍ଥ ତଥା କ୍ରିୟାତ୍ମକ ରାଜନୈତିକ ବ୍ୟବସ୍ଥା ନିଶ୍ଚିତ ହୋଇପାରିବ । କିନ୍ତୁ କାହିଁ ଭାରତୀୟ-ଭାବନା ଭାରତରେ ? କବିବର ରାଧାନାଥଙ୍କ ଭାଷାରେ "ଭାରତ ପଙ୍କଜ ଦଳମିବ ଉତ୍କଳଂ" । ଉତ୍କଳ ତଥା ବିଭିନ୍ନ ରାଜ୍ୟ ଏହି ପଙ୍କଜର ଗୋଟିଏ ପାଖୁଡ଼ା ସଦୃଶ । ବିଭିନ୍ନ ଅଞ୍ଚଳର ପ୍ରାକୃତିକ ସମ୍ପଦର ବିକାଶ ପାଇଁ ସହଯୋଗ ରହିବା ଆବଶ୍ୟକ । ରାଜ୍ୟ ତଥା ରାଜ୍ୟାନ୍ତର ମଧ୍ୟରେ ସଦ୍‌ଭାବ ସହାୟକ ଯୋଜନା ହାତକୁ ନିଆଯିବା ଆବଶ୍ୟକ । ଇଟା ପଥରର ଧର୍ମାଳୟରେ ଧର୍ମ ନାହିଁ— ଅଛି ହୃଦୟ କନ୍ଦରରେ ଓ ପରିସ୍ଫୁଟ ଆମ ଦୈନନ୍ଦିନ ଆଚରଣର କାନ୍ତି ଓ କମନୀୟତାରେ । ପ୍ରତ୍ୟେକ ବ୍ୟକ୍ତିର ପ୍ରାଣସ୍ପନ୍ଦନରେ ଆମେ ସ୍ପନ୍ଦିତ ହେବା, ତେବେ ଯାଇ ଆସିବ ଭାଇପଣିଆ । ଭାତ ଦିଆ ନିଆ କରିବା ଭାରି ଅଡୁଆ ଓ ସର୍ବତ୍ର ହୋଇପାରିବ ନାହିଁ । କିନ୍ତୁ ଭାବର ଦେଣନେଣ ସବୁଠି ସହଜ, ଯଦି ଆମ ମନୋଭାବରେ ପରିବର୍ତ୍ତନ ହୁଏ । ସମସ୍ତଙ୍କୁ ଆପଣାର କରି ଆମେ ସମସ୍ତଙ୍କର ହୋଇପାରିବା । ସକଳ ପ୍ରକାର ବିଭେଦକୁ ଅତିକ୍ରମ କରିଛି ସେହି ଭାବଟି । ଆମେ ସବୁ ମନୁଷ୍ୟ ଓ ଆମେ ଭାରତୀୟ । ଏହି ଭାବକୁ ବୁଝି ସେ ଦିଗରେ ଅନୁଭବୀ ହୋଇପାରିଲେ ଏଠି କାର୍ଜି, କରଣ, କୋର୍ଟ, କଚେରି କଣ କରିବ ? ଏହି ଭାବରେ ଆମେ ରଞ୍ଜି ଯିବୁ ଓ ମଜ୍ଜି ଯିବୁ କାରଣ ଏହି ଭାବକୁ ଆମେ ହେଜିବୁ ।

୧୯୪୭ ମସିହା ଅଗଷ୍ଟ ମାସ ୧୫ ତାରିଖ । ଏହା ଆମ ଜାତୀୟ ଜୀବନର ମହାନ୍ ଦିନ । ଏହା ପୂର୍ବରୁ ଆମେ ଭାରତବାସୀ ସାମ୍ରାଜ୍ୟବାଦୀ ବ୍ରିଟିଶ୍ ଶାସନର ଅଧୀନ ଥିଲୁ । ପ୍ରଜା ହୋଇଥିଲୁ । ସେହି ମହାନ୍ ତଥା ଐତିହାସିକ ଦିବସରୁ ଆମେ ସ୍ୱାଧୀନ ଦେଶର ନାଗରିକ ହେଲୁ । ପ୍ରଜା ଭୂମିକାର ପରିବର୍ତ୍ତନ କରାଯାଇ ଆମ ଦୀର୍ଘଦିନର ସଂଗ୍ରାମର ଫଳ ସ୍ୱରୂପ ଆମେ ସ୍ୱାଧୀନ ନାଗରିକ ଭୂମିକା ଗ୍ରହଣ କରିଛୁ । ଆମ ସମ୍ବିଧାନରେ

ଆମେ ଶପଥ କରିଛୁ—ଆମେ ଭାରତବାସୀ, ଆମେ ସଂକଳ୍ପବଦ୍ଧ, ଆମେ ଆମ ଦେଶକୁ ସାର୍ବଭୌମ ସମାଜବାଦୀ, ଧର୍ମ-ନିରପେକ୍ଷ, ଗଣତାନ୍ତ୍ରିକ ପ୍ରଜାତନ୍ତ୍ର ରାଷ୍ଟ୍ର ଭାବରେ ଗଠନ କରି ଏହାର ସମସ୍ତ ନାଗରିକଙ୍କ ପାଇଁ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ନ୍ୟାୟ, ଚିନ୍ତା, ଆତ୍ମପ୍ରକାଶ, ବିଶ୍ୱାସ ଓ ଉପାସନାରେ ସ୍ୱାତନ୍ତ୍ର୍ୟ, ପଦବୀ ଓ ସୁଯୋଗରେ ସାମ୍ୟ ସୁନିଶ୍ଚିତ କରିଦେବୁ ଓ ସେମାନଙ୍କ ମଧ୍ୟରେ ଭ୍ରାତୃତ୍ୱ ତଥା ଦେଶର ଐକ୍ୟ ଓ ଅଖଣ୍ଡତା ସ୍ଥାପନ କରିବୁ । ଏହାହିଁ ଆମ ସମର୍ପଣ ଓ ଆମେ ଏଥିରେ ବଚନବଦ୍ଧ । ସକଳ ସମସ୍ୟାର ସମାଧାନ ଆମେ କରିବୁ । ଅନ୍ୟ କାହାରିକୁ ଦାୟୀ କରିବୁ ନାହିଁ । ଅନ୍ୟ କୌଣସି ବିଦେଶୀ ରାଷ୍ଟ୍ରର ହାତବାରିସି ହେବୁ ନାହିଁ ବା ହେବା ଉଚିତ ନୁହେଁ । ଆମ ଭୂମିକାରେ ଏହି ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନକୁ ଅନୁଧ୍ୟାନ କରି ଆମେ ଆମ କର୍ତ୍ତବ୍ୟ ସ୍ଥିର କରିବା ଉଚିତ । ଆତ୍ମ-ନିୟନ୍ତ୍ରଣର ଅଧିକାର ଓ ଦାୟିତ୍ୱ ଆମେ ପାଇଛୁ । ପଛେଇଗଲେ ଆମେ ନିନ୍ଦିତ ହେବା ଓ ଆଗେଇ ଆସିଲେ ଏହା ଆମ ଗୌରବ ହେବ । ବିଶ୍ୱ ବନ୍ଧନରେ ସ୍ୱାଧୀନ ରାଷ୍ଟ୍ର ଭାବରେ ଆମେ ସ୍ୱତନ୍ତ୍ର ସ୍ଥାନ ପାଇଛୁ । ଆମ ଜାତୀୟ ପତାକା, ଜାତୀୟ ସଙ୍ଗୀତ ଓ ଜାତୀୟ ସଙ୍କେତ ସ୍ୱୀକୃତି ଲାଭ କରିଛି । ଏଥିପାଇଁ ନେତୃସ୍ଥାନୀୟ ବ୍ୟକ୍ତିଙ୍କ ଜୀବନରେ ତଥା ସମୂହ ଭାବରେ ଦେଶପ୍ରେମର ପରାକାଷ୍ଠା ଭାବରେ ଅସୀମ ଧୈର୍ଯ୍ୟ, ଚରମ ତ୍ୟାଗ ଓ ଅଶେଷ କାୟିକ ତଥା କାରାଦଣ୍ଡ ଭୋଗିବାକୁ ପଡ଼ିଛି । ଏହି ଜାତୀୟ ପ୍ରତୀକକୁ ସାମାନ୍ୟ କନା ଖଣ୍ଡେ, କେଇପଦ କବିତା ଓ ଗୋଟିଏ ମୂର୍ତ୍ତି ଭାବେ ବିଚାରିବା ଅକ୍ଷମଣୀୟ ଦେଶଦ୍ରୋହ । ନାଗରିକ ଜୀବନରେ ଏହି ଆହ୍ୱାନର ସମ୍ମୁଖୀନ ହେବାପାଇଁ ଆମକୁ ଏହାର ଗୁରୁତ୍ୱ ହୃଦୟଙ୍ଗମ କରିବାକୁ ପଡ଼ିବ, ଆଶୁ ପଦକ୍ଷେପ ନିରନ୍ତର ନେବାକୁ ହେବ ଓ ମନୋଭାବରେ ପରିବର୍ତ୍ତନ କରାଯିବା ଉଚିତ ।

ନାଗରିକର ଭୂମିକା ଯୋଗୁଁ ଦୁଇଟି କଥା ମିଳିଛି । ଗୋଟିଏ ହେଲା ସ୍ୱାଧୀନତା ଓ ଅନ୍ୟଟି ସାମାଜିକ ଦାୟିତ୍ୱ । ଆମେ ତଥା ଆମ ସମାଜର ପଣ୍ଡାମାନେ ଏହି ଦୁଇଟି କଥାକୁ ସମତାଳରେ ବା ଗୋଟିଏ ମୁଦ୍ରାର ଦୁଇପାଖ ଭାବରେ ନ ନେଇ ସ୍ୱାଧୀନତା ଓ ସେଥିରୁ ଉପୁଜୁଥିବା ଅଧିକାରଗୁଡ଼ିକ ଉପରେ ଅଧିକ ଗୁରୁତ୍ୱ ଦେଉଛନ୍ତି । ଅଥଚ ସାମାଜିକ ଦାୟିତ୍ୱ ଓ ସେଥିରୁ ଉପୁଜୁଥିବା କର୍ତ୍ତବ୍ୟଗୁଡ଼ିକ ଉପରେ ଗୁରୁତ୍ୱ ସେତେଦୂର ରହୁନାହିଁ । ଏହି ବିଷମତା ଫଳରେ ଆମ ନୀତି, ନିୟମ ଓ ନିର୍ଦ୍ଧାରଣଗୁଡ଼ିକରେ ତଥା ଆମ ନଥିପତ୍ର; କୋର୍ଟ କଚେରି, ଦପ୍ତର, ଶିକ୍ଷାଳୟ ଆଦି ବିଭିନ୍ନ ଲୋକଙ୍କ ଦ୍ୱାରା, ଲୋକଙ୍କପାଇଁ ଗଠିତ

ଅନୁଷ୍ଠାନଗୁଡ଼ିକରେ ଝାଳବୁହା ଶ୍ରମ ଓ ଉତ୍ସର୍ଗର ନିଷ୍ଠା କ୍ରମେ ହ୍ରାସ ପାଉଛି । ଉଲ୍ଲିଖିତ ଅନୁଷ୍ଠାନଗୁଡ଼ିକରେ ସମୟାନୁବର୍ତ୍ତିତା, ସାଧୁତା ଆଦି ମାମୁଲି ଗୁଣଗୁଡ଼ିକର ଅଭାବ ଆମ ସାମାଜିକ ଓ ଜାତୀୟ ଜୀବନକୁ ଜର୍ଜରିତ ଓ ଅସାର କରି ଦେଉଛି । ବେଳେବେଳେ ହାସ୍ୟୋଦ୍ଦୀପକ ଅନୁଚିନ୍ତା ଆମ ମନରେ ସ୍ୱତଃ ଆସେ ଯେ ଆମେ ଜରୁରୀକାଳୀନ ଅବସ୍ଥାରେ ସମୟାନୁବର୍ତ୍ତିତା ପରୀକ୍ଷା କରିବାପାଇଁ ଅଚାନକ ଅଫିସ, ଅନୁଷ୍ଠାନ ଆଦି ଉପରେ ଚଢ଼ାଉ କରୁ । ସାଧାରଣ ଅବସ୍ଥାରେ ଓ ଦୈନନ୍ଦିନ ଜୀବନରେ ଏହା କରଣୀୟ ନୁହେଁ କି ? ଜାତୀୟ ଚରିତ୍ର, ଜାତୀୟ ଭାବନା ଓ ଭାବମୂର୍ତ୍ତିକୁ ନିଜ ଜୀବନଯାପନ ପ୍ରଣାଳୀ ଓ ଶୈଳୀରେ ପରିଣତ କରି ନପାରି କେବଳ କାଗଜ-କଲମର ଚାଷ କରିଛୁ । ବିଧିବିଧାନ ପ୍ରଣୟନ କରିଛୁ । କମିଟି କମିଶନ ବସାଇଛୁ । ଯୌତୁକର ଅପସାରଣ, ବୈଜ୍ଞାନିକ ମନୋଭାବ, କ୍ଷୁଦ୍ର ପରିବାର ତଥା ନାରୀ-ନର ସମାନତାର ଆଦର୍ଶ ଆଦି ଗ୍ରହଣ କ୍ଷେତ୍ରରେ ଆମ ସଚେତନତା ଓ ସ୍ପର୍ଶକାତରତା ଆମକୁ ସେହିପରି ପ୍ରେରଣାଦାୟକ ହୋଇପାରି ନାହିଁ । ଏହା ଫଳରେ ଆମେ ଅନୁଭବ କରୁଛୁ ଯେ ଜନଜାଗୃତି, ଲୋକ ସହଯୋଗ ଓ ଜନ ଚରିତ୍ର ବିନା କେବଳ ବିଧିବିଧାନର ପ୍ରଣୟନ ସେପରି ଫଳପ୍ରଦ ନୁହେଁ । ଆମେ ଭାରତରେ ରହିଛୁ । ଆମେ ଭାରତୀୟ । ଆମେ ଭାରତରେ ଭାରତୀୟ ହୋଇ ଭାରତର ପ୍ରଗତି ପାଇଁ ଲାଗିପଡ଼ିବୁ । ଭାରତ ଆମର ଓ ଆମେ ଭାରତ ପାଇଁ । ଉତ୍କଳ ଗୌରବ ମଧୁସୂଦନ ଦେଶବାସୀଙ୍କୁ ସତର୍କ କରିଥିଲେ ଯେ ପ୍ରତିଦିନ ସନ୍ଧ୍ୟାରେ ଶୋଇବା ପୂର୍ବରୁ ଆମେ ଦେଶପାଇଁ କଣ କରିଛୁ ଆମକୁ ପଚାରିବା । ଉତ୍ତର ମିଳିଲେ ଏହାକୁ ତହିଁପର ଦିନ ସୁଦୃଢ଼ ଓ ସମ୍ପ୍ରସାରିତ କରିବା ଓ ନମିଳିଲେ ଉତ୍ତର ଖୋଜିବା । ଯେଉଁ ଧରଣୀ ଆମକୁ ଧାରଣ କରିଛି ଏହାର କୋଡ଼ରେ, କାଖରେ ଓ ପିଠିରେ ତାହାର ସନ୍ତାନସନ୍ତତିଙ୍କୁ ଆମେ ଆପଣାର କରିପାରୁନାହୁଁ । ଭାରତ ଭିତରେ ଓ ବାହାରେ ତଥା ବିଶ୍ୱସମାଜରେ ଆମ ଏକାତ୍ମତା, ସହୃଦୟତା ଓ ସମଦୃଷ୍ଟିର ଅଭାବ ଏକ ଉତ୍କଟ ସମସ୍ୟା ହୋଇପଡ଼ିଛି । ଗୋଷ୍ଠୀନିରପେକ୍ଷତା ଓ ଗଣତାନ୍ତ୍ରିକ ଜୀବନ ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ଚେତନାରେ ପରିଣତ ହେଉନାହିଁ । ବ୍ୟକ୍ତିଗତ ଓ ପାରିବାରିକ ସ୍ତରରେ ଆମ ଚେତନାର ଅଭାବ ହେତୁରୁ ପ୍ରଦୂଷଣ, ନିରକ୍ଷରତା, ଅଣସ୍ୱାସ୍ଥ୍ୟ ଆଦି ସମସ୍ୟାପାଇଁ ଆନୁଷ୍ଠାନିକ ବିଚାର ଫଳପ୍ରଦ ହେଉନାହିଁ । ଆମେ ଘାଣ୍ଟିହେଉଛୁ । ପ୍ରଚାରକର ମୁଖାପିନ୍ଧି ଅନ୍ତଃସାରଶୂନ୍ୟ ଲୋକଶକ୍ତି ଆଜି ବ୍ୟକ୍ତି ଓ ବିଶ୍ୱପାଇଁ କଣ କରିପାରିବ ? ଅହିଂସା ଓ ସତ୍ୟ ହେଉଛି ଆମ ଜୀବନ ଦର୍ଶନ । ଭାରତର ଭାବନା ଓ ବୈଶିଷ୍ଟ୍ୟ । ଏହା କେବଳ ପ୍ରଚାରରେ ସୀମିତ ରହିଲେ ଓ ଦୈନନ୍ଦିନ ତଥା ଜୀବନ ବିଚାରରେ ଅଙ୍ଗୀଭୂତ ନ ହେଲେ ଆମ ଦେଶରେ ଓ ଦେଶ ବାହାରେ ଏହା ମୂଲ୍ୟହୀନ ହୋଇଯିବ ।

ତେବେ ଏଥିରେ ଅନ୍ତରାୟ କଣ ହୋଇଛି ? ଆମେ ଭାରତରେ ବାସ କରୁଛୁ । କିନ୍ତୁ ଭାରତୀୟ ହେବାରେ କି ବିଡ଼ମ୍ବନା ରହିଛି ? କାହିଁକି ଯେତେ ଶୀଘ୍ର ଓ ଯେଉଁ ଉଚ୍ଚକୋଟୀର ପରିବର୍ତ୍ତନ ଆମ ଜାତୀୟ ଚରିତ୍ରର ବିକାଶରେ ହେବାର କଥା ତାହା ହୋଇପାରୁନାହିଁ ? ସେହି ବିକଶିତ ବ୍ୟକ୍ତିତ୍ୱ କାହିଁ ? ଏ ବିଷୟରେ ବହୁ ଦେଶବନ୍ଧୁ ଓ ବିଶ୍ୱବନ୍ଧୁ ନିଜନିଜର ବ୍ୟଥା ଓ ବ୍ୟାକୁଳତା ବିଭିନ୍ନ ସମୟରେ ବ୍ୟକ୍ତ କରିଛନ୍ତି । ଦାରିଦ୍ର୍ୟ ଏହାର ଅନ୍ୟତମ କାରଣ ହୋଇଛି । ମୁଠାଏ ପେଟପୂରା ଭାତ, ଲଜ୍ଜା ଦୂର କରିବାକୁ ଖଣ୍ଡେ କପଡ଼ା ଓ ମୁଣ୍ଡ ଗୁଞ୍ଜିବାକୁ ଯାଇତାଇ ଟିକିଏ ଚାଳରୁ ଯିଏ ବଞ୍ଚିତ ତା ପାଇଁ ବାଞ୍ଛିତ ଅନ୍ୟ କିଛି ଅଛି କି ? ଅଭାବ ସାଙ୍ଗକୁ ଅବଜ୍ଞା, ଅବମାନନା ଓ ଅନାଦର ସତେ ଯେପରି ବୋଝ ଉପରେ ନଳିତା ବିଡ଼ା ପରି ହୋଇଯାଏ । ଆମର ଆବୃତ୍ତି କିନ୍ତୁ ସେମାନଙ୍କୁ ଅନୁଭବ ହୁଏ, ''ବୁଭୁକ୍ଷିତ କିଂ ନ କରୋତି ପାପଃ'' । ସେମାନେ ଜାତୀୟ ସ୍ରୋତରେ ସାମିଲ ହୋଇପାରନ୍ତି ନାହିଁ । ଆମ ଜାତୀୟ ପ୍ରତିଶ୍ରୁତି ଓ ଜାତୀୟ ପର୍ବର ପାଳନ ସେମାନଙ୍କ ଆଗରେ କାଳ ପାଖରେ ମୂଳା ଚୋବାଇଲା ପରି ଲାଗେ । 'ପେଟ ଲାଗି ସବୁ ନାଟ' କିନ୍ତୁ ଏହାକୁ କେନ୍ଦ୍ର କରି ସବୁ ଦଳାଦଳି, କଳି କନ୍ଦଳ, କଳା କୌଶଳ ଲାଗିଯାଏ । ରଡ଼ ନିଆଁରେ ଶୁଖିଲା ବାଉଁଶପାଳିଆ ପେଲି ଦେଲେ ଯାହା ହୁଏ, ଅଭାବ ସାଙ୍ଗକୁ ଅଶିକ୍ଷା ଓ କୁଶିକ୍ଷା ଅବସ୍ଥାକୁ ସେପରି କରିଦିଏ । ସବୁ ଅଣାୟତ୍ତ । ଭାରତଭାବନା ଓ ଭାରତୀୟତା ସମସ୍ତଙ୍କ ତୁଣ୍ଡରେ; କିନ୍ତୁ ଆଚରଣରେ କାହିଁ ? ଶିକ୍ଷାର ପରିଧି ଓ ପରିସୀମା ଏ ପର୍ଯ୍ୟନ୍ତ ତମସୋ ମା ଜ୍ୟୋତିର୍ଗମୟ କରିପାରି ନାହିଁ । ବହୁ ଗାଁ ଓ ମା' ଶିକ୍ଷାର ପରିସରଭୁକ୍ତ ହୋଇପାରି ନାହାନ୍ତି । ଗୃହରୁ ଆରମ୍ଭ କରି ଗିରି ଗୁମ୍ଫା ପର୍ଯ୍ୟନ୍ତ ସର୍ବତ୍ର ''ଅସତୋ ମା ସଦ୍‌ଗମୟ''ର ଧ୍ୱନି ନିନାଦିତ ହୋଇପାରି ନାହିଁ । ପକ୍ଷାନ୍ତରରେ ଶିକ୍ଷାୟତନରେ ସୁଦ୍ଧା ଶିକ୍ଷାର ଗୁଣ ଓ ଗଭୀରତା ଆଶାନୁରୂପ ପରିସ୍ଫୁଟ ହୋଇପାରିନାହିଁ । ଧୂଳିଧୂସରିତ ଦର୍ପଣ ଯେପରି ସ୍ୱଚ୍ଛତା ହରାଇଥାଏ, ଆମେ ଶିକ୍ଷା ପାଇ ସୁଦ୍ଧା ସେପରି କୂପମଣ୍ଡୁକ ହୋଇ କେବଳ ନିଜ ଛଡ଼ା ପ୍ରତିବେଶୀର ପ୍ରତିବିମ୍ବ ଦେଖିପାରୁ ନାହୁଁ । ବ୍ୟକ୍ତିସର୍ବସ୍ୱ ହୋଇ ଶିକ୍ଷିତ ବ୍ୟକ୍ତି ଅଧିକାଂଶତଃ ସ୍ୱାର୍ଥାନ୍ଧ, ସଙ୍କୁଚିତ ଓ ଦୁର୍ନୀତିଗ୍ରସ୍ତ ହୋଇପଡ଼ିଛନ୍ତି । ଆମେ ଶିକ୍ଷିତ ଲୋକ ଏପରି କହୁଛୁଁ ଓ କରୁଛୁଁ ଭିନ୍ନ ପ୍ରକାରର । ଧ୍ୟାନମଗ୍ନ ମୁନିଋଷିଙ୍କ ପରି ଆମେ ଆଖିବୁଜି ପରାର୍ଥ ଓ ପରମାର୍ଥ ଦେଖୁ ନାହୁଁ । ଦେଖୁଛୁ କେବଳ ଅର୍ଥ, ଅନର୍ଥ ଓ ଅଧୋଗତି । ଭେଦ ବର୍ଜନ କରି ଅଭେଦର ସୂତ୍ରଟିକୁ ଆମେ ଧରିପାରୁନାହୁଁ । ସମସ୍ତଙ୍କର ସମୂହ ଚିନ୍ତା, ସନ୍ନିବିଷ୍ଟତା ଓ ସହଯୋଗିତାର ସ୍ରୋତ ଆମ ଦ୍ୱାରା ପ୍ରବାହିତ ହୋଇ ପାରୁନାହିଁ । ବରଂ ଯେ ପାରିଲା ସେ ଅନ୍ୟମାନଙ୍କୁ ଭୁଲିଗଲା । ସମାଜର ଅସ୍ଥିରୀକରଣ,

ବିଚ୍ଛିନ୍ନତା ଓ ସାମ୍ପ୍ରଦାୟିକତା ଆହୁରି ବଢ଼ିବାରେ ଲାଗିଲା । ରାଜନୀତି, ସେବା, ଧର୍ମ, ମାନବିକତା ଆଦି ଜୀବନର ସକଳ ବିଭାଗରେ ଅଭାବ, ଅଜ୍ଞତା, ଅଶିକ୍ଷା ଓ କୁଶିକ୍ଷା ହେତୁ ନିଜ ସ୍ୱାର୍ଥକୁ ଜାତୀୟ ଜୀବନ ଓ ଆଦର୍ଶର ଉର୍ଦ୍ଧ୍ୱରେ ଦେଖୁଛୁଁ । ଯେ ପୂଜିଲେ, ଯାହାଙ୍କୁ ପୂଜା କରାଗଲା, ଯେ ପୁରୋହିତ ହେଲେ ଓ ଯେ ପୂଜାସାମଗ୍ରୀ ଆଣିଦେଲେ ପ୍ରତ୍ୟେକେ ନିଜ ନିଜର ସ୍ୱାର୍ଥ ପାଇଁ ଲାଗିଲେ । କଥାରେ ଅଛି, ମା ଓ ଝିଅ ଦେଉଳକୁ ଗଲେ, ମାତ୍ର ଯେଝା ସୁଖ ଯେଝା ମନାସିଲେ । ସୁଖ ମନାସିବା ଆଜି ପ୍ରତ୍ୟେକ ବ୍ୟକ୍ତିର ସ୍ୱାତନ୍ତ୍ର୍ୟ ହେଉଛି । ପ୍ରତ୍ୟେକ ସାମାଜିକ ବ୍ୟାପାରରେ ବ୍ୟକ୍ତିଗତ ଓ ଦଳୀୟ ପ୍ରତିଷ୍ଠା ଆମର ସର୍ବଗ୍ରାସୀ ଚିନ୍ତା ହୋଇଯାଉଛି । ଏହି କାରଣରୁ ଓ ଜାତୀୟ ଚରିତ୍ରର ବିକାଶ ନହେବାରୁ ଆମ ଆଭ୍ୟନ୍ତରୀଣ ବ୍ୟାପାରରେ ବିଶ୍ୱଦରବାରରେ ବୈଫଲ୍ୟ ହିଁ ସାର ହେଉଛି । ଆମ ଦେଶର ସୁଖ, ଶାନ୍ତି, ପ୍ରଗତି ଓ ସମୃଦ୍ଧି ପାଇଁ ଆମ ଉତ୍ସର୍ଗପଣିଆ ପ୍ରଶ୍ନବାଚୀ ହୋଇ ରହୁଛି ।

ଭାରତୀୟତା ଓ ଭାରତଭାବନା ଏକ ସ୍ଥାଣୁ, ସ୍ଥିର, ସ୍ଥିତିଶୀଳ ସ୍ଥିତାବସ୍ଥା ନୁହେଁ । ଜାତିର ଜନକ ମହାତ୍ମା ଗାନ୍ଧୀଙ୍କର ସତ୍ୟାଗ୍ରହ, ଅସହଯୋଗ ଓ ଅହିଂସା ସଂଗ୍ରାମ ଭାରତ ପାଇଁ ନିମିତ୍ତମାତ୍ର ହେଲେହେଁ ବିଶ୍ୱର ଅଗଣିତ ନିଷ୍ପେଷିତଙ୍କ ପାଇଁ ଅଭିପ୍ରେତ ହୋଇଛି । ବୁଦ୍ଧ, ନେହେରୁ, ରାଧାକୃଷ୍ଣନ୍, ଅରବିନ୍ଦ, ରବୀନ୍ଦ୍ରନାଥ ପ୍ରମୁଖ ମହାମନୀଷୀଗଣ ଜାତୀୟତାକୁ ଭାରତର ଭୌଗୋଳିକ ସୀମାରେ ସୀମିତ ନକରି ମାନବସମାଜ ଗଠନରେ ଏହାର କ୍ରମବିକାଶ କରିଥିଲେ । ଆମ ସାଂସ୍କୃତିକ ଓ ଆଧ୍ୟାତ୍ମିକ ଐତିହ୍ୟ ଆଧ୍ୟାତ୍ମିକତା ଓ ସତ୍ୟର ପ୍ରତିଷ୍ଠା ଦିଗରେ ଭାରତ ବିଶ୍ୱର ଚିରନ୍ତନ ଗୁରୁ ହୋଇ ଆସିଛି । ଆମେରିକାର ଚିକାଗୋ ସହରରେ ବିଶ୍ୱଧର୍ମ ମହାସଭା ଚିରସ୍ମରଣୀୟ ହୋଇଛି ସ୍ୱାମୀ ବିବେକାନନ୍ଦଙ୍କ ଉଦ୍‌ବୋଧନ ଯୋଗୁଁ । ନୋହିଲେ ଏହା ଇତିହାସ ପୃଷ୍ଠାରେ ଅବଲୁପ୍ତ ପ୍ରାୟ ରହିଥାନ୍ତା । ସ୍ୱାମୀଜୀ ୧୮୯୭ ଖ୍ରୀଷ୍ଟାବ୍ଦରେ ଭାରତ ପ୍ରତ୍ୟାବର୍ତ୍ତନ କରିଛନ୍ତି । ସେତେବେଳେ New Work Herald ପତ୍ରିକା ଲେଖିଛନ୍ତି, "After hearing him, we feel how foolish it is to send missionaries to this learned nation." ଭାରତୀୟ ପ୍ରଜ୍ଞା ବିଶ୍ୱବିଦିତ । ଏହାର ସୁଦୀର୍ଘ ଇତିହାସ ବାର ହଜାର ବର୍ଷକୁ ଅତିକ୍ରମ କରିଛି ଓ ଏହାର ପ୍ରମାଣ ଛାଇ ହୋଇ ରହିଛି । ୧୮୮୨ ମସିହାରେ ମାକ୍ସ ମୁଲରଙ୍କ ପ୍ରଣୀତ ପୁସ୍ତକ ଆମ ଜାତୀୟ ଗୌରବ ତଥା ଚରିତ୍ରର ଅନ୍ୟତମ ବଳିଷ୍ଠ ପ୍ରମାଣ । Indian Civil Serviceର ଶିକ୍ଷାନବିସମାନଙ୍କୁ ସେ ଅକ୍ସଫୋର୍ଡ଼ରେ ଯେଉଁ ବକ୍ତୃତା ଦେଇଥିଲେ ତାହା 'India : What can it Teach Us ?' ଶୀର୍ଷକ ପୁସ୍ତକରେ ପ୍ରକାଶ ପାଇଛି । ଏହାର ଏକ କ୍ଷୁଦ୍ର

ଅଂଶ ହେଉଛି, "If I were to look over the whole world to find out the country most richly endowed with all the wealth, power and beauty that nature can bestow–in some parts of the paradise on earth– I should point to India. If I were asked under what sky the human mind has most fully developed some of the choicest gifts has most deeply pondered on the greatest problems of life and has found solution of some of them which will deserve the attention even of this who have studied Plato and Kant–I should point to India. And if I want to ask myself from what literature we here in Europe, we have been nurtured almost exclusively on the thoughts of Greeks and Romans and of one Semitic race, the Jewish, may draw that corrective which is most wanted in order to make our inner life more perfect, more comprehensive, more universal, infact, more truly human, a life, not for this life only, but a transfigured and eternal life–again I should point to India. ଆଧୁନିକ ବିଶ୍ୱ ଯେ କିପରି ଭାବରେ ଆଶାନ୍ୱିତ ହୋଇ ରହିଛି ଭାରତଠାରୁ ଏହାର ଏକ ସୁସ୍ପଷ୍ଟ ଚିତ୍ର ମିଳେ Will Durantଙ୍କ ଲେଖାରେ । ସେ ଆମେରିକାର ପ୍ରସିଦ୍ଧ ଐତିହାସିକ । ତାଙ୍କ ପ୍ରଣୀତ ସଭ୍ୟତାର କାହାଣୀ "Story of Civilization" ଦଶ ଖଣ୍ଡ ମଧ୍ୟରୁ ପ୍ରଥମ ଖଣ୍ଡ "Our Oriental Heritage" ଆମ ପ୍ରାଚ୍ୟ ଐତିହ୍ୟ ଶୀର୍ଷକରେ ପ୍ରକାଶିତ । ଏହାର ୬୩୩ ପୃଷ୍ଠାରେ ସୂଚିତ ହୁଏ, perhaps in return for conquest, arrogance and spoliation, India will teach us the tolerance and gentleness of mature mind, the quiet content of the unacquiuitive soul, the calm understanding spirit and a unifying, pacifying love for all living beings. ଏହାହିଁ ଆମ ପ୍ରତି ଜାତୀୟ ଓ ଆନ୍ତର୍ଜାତିକ ଦାୟିତ୍ୱ ସମ୍ପାଦନର ଆଶା ଓ ଜାତୀୟ ସଂହତି ତଥା ବିଶ୍ୱଶାନ୍ତି ସ୍ଥାପନାରେ ଆମ ଭାରତୀୟ ଜୀବନର ପ୍ରତିଶ୍ରୁତି ।

ଆଉ ଗୋଟିଏ ସାକ୍ଷ୍ୟନେବା । ସେ ହେଉଛନ୍ତି, ଦଶଖଣ୍ଡରେ ପ୍ରକାଶିତ A Study of History ଗ୍ରନ୍ଥର ରଚୟିତା ବ୍ରିଟେନର ଖ୍ୟାତନାମା ଐତିହାସିକ Professor Arnold Toynbee । ଲଣ୍ଡନ ରାମକୃଷ୍ଣ ବେଦାନ୍ତ ସମାଜର ସ୍ୱାମୀ ଘନାନନ୍ଦଙ୍କ ପ୍ରଣୀତ Shri Ramakrishna : Unique Message ଶୀର୍ଷକ ପୁସ୍ତକର ମୁଖବନ୍ଧରେ ସେ ଲେଖିଛନ୍ତି– "Today we are still living in this transitional chapter of the world's

history, but it is already becoming clear that a chapter which had a western beginning, will have to have an Indian ending, if it is not to end the self-destruction of the human race..." ସେ ଆହୁରି ମଧ୍ୟ ଲେଖିଛନ୍ତି– "At this supremely dangerous moment in human history, the only way of salvation for mankind is an Indian way. The Emperor Ashoka's and The Mahatma Gandhi's principle of non-violence and Shri Ramakrishna's testimony to the harmony of religions; here we have the attitude and the spirit that can make it possible for the human racd to grow together into a single family and in the atomic age, this is the only alternative to destroying ourselves." ପାଶ୍ଚାତ୍ୟ ଚିନ୍ତାନାୟକ ମାକ୍ସ ମୁଲ୍ଲର ଏବଂ ଟୟନବି ପ୍ରମୁଖ ବହୁ ମନୀଷୀଙ୍କ ମଧ୍ୟରେ ଅନ୍ୟତମ ଓ ସେମାନେ ଆମ ଗୌରବ ଗାନ କରିବା ସଙ୍ଗେ ଆମ ଦାୟିତ୍ୱ ତଥା କର୍ତ୍ତବ୍ୟ ସମ୍ବନ୍ଧରେ ସଚେତନ କରି ଦେଇଛନ୍ତି । କବିଗୁରୁଙ୍କ କଣ୍ଠରେ ଏହା ମଧ୍ୟ ନିନାଦିତ ହୁଏ । ''ଏଇ ଭାରତେର ମହାମାନବେର ସାଗରତୀରେ'' । ଶ୍ରୀ ଅରବିନ୍ଦଙ୍କ ଦୃଷ୍ଟିରେ ଜାତୀୟତାର ବିକାଶପାଇଁ କଂଗ୍ରେସ ଆନ୍ଦୋଳନ ଦୀର୍ଘଦିନ ପାଇଁ ପାଶ୍ଚାତ୍ୟ ଭଙ୍ଗୀରେ ପରିଚାଳିତ ହୋଇଥିଲା । ଇଂରେଜୀ ଶିକ୍ଷାପ୍ରାପ୍ତ ମୁଷ୍ଟିମେୟଙ୍କ ପାଇଁ ଏହା ଅଭିପ୍ରେତ ଥିଲା । ଶ୍ରୀ ଅରବିନ୍ଦ ଏହି ପ୍ରସଙ୍ଗରେ ମହାମାନ୍ୟ ତିଳକଙ୍କ ଭୂମିକାକୁ ସ୍ୱୀକାର କରିଛନ୍ତି । ଧରାବନ୍ଧା ପ୍ରଣାଳୀର ପରିବର୍ତ୍ତନ, ଅତୀତ ଓ ବର୍ତ୍ତମାନ ମଧ୍ୟରେ ସେତୁସ୍ଥାପନ ଓ ଜାତିର ରାଜନୈତିକ ଜୀବନରେ ନିରବଚ୍ଛିନ୍ନତାର ପୁନଃପ୍ରବର୍ତ୍ତନ କରିବାରେ ତିଳକ ହେଉଛନ୍ତି ସର୍ବପ୍ରଥମ ରାଜନୈତିକ ନେତା । ସେ ଏପରି ଭାଷା ଓ ଆତ୍ମିକତାର ବିକାଶ କଲେ ଏବଂ ଏପରି ଧାରା ଚାଲୁ କଲେ ଯାହାଫଳରେ ଜାତୀୟ ଆନ୍ଦୋଳନକୁ ଭାରତୀୟ କରିଦେଲେ ଓ ଗଣାଭିମୁଖୀ କରିଦେଲେ । ଶ୍ରୀ ଅରବିନ୍ଦ ତାଙ୍କ ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି, "To bring in the mass of the people to found the greatness of the future on the greatness of the past, to infuse Indian politics with Indian religious fervour and spirituality are the indispenable conditions for a great and powerful awakening in India. ଏହି ଅବସ୍ଥାର ସୃଷ୍ଟି ପାଇଁ ଶ୍ରୀ ଅରବିନ୍ଦ ସ୍ଥିର କରିନେଲେ ଯେ 'We must first ourselves be free in heart before our country is free."

ଭାରତୀୟ ହେବାପାଇଁ ପ୍ରତ୍ୟେକଙ୍କୁ ଏହା କରିବାକୁ ହେବ । ଆମେ ନିଜେ ନିଜେ ଆମ ଭିତରେ ସର୍ବପ୍ରଥମେ ମୁକ୍ତ ହେବା, ତେବେ ଯାଇ ଆମ ଦେଶ ଭାରତବର୍ଷ ମୁକ୍ତ ହେବ । ସେଥିପାଇଁ ବହୁ ମନୀଷୀ ବାରମ୍ବାର ସତର୍କ କରିଦେଇଛନ୍ତି ଯେ ଆମ ସ୍ୱାଧୀନତା କେବଳ ରାଜନୈତିକ ସ୍ତରରେ ହୋଇଛି । ଅର୍ଥନୈତିକ, ସାମାଜିକ, ସାଂସ୍କୃତିକ ଓ ଆଧ୍ୟାତ୍ମିକ ସ୍ୱାଧୀନତାର ସଂଗ୍ରାମ ସରିନାହିଁ । ଆତ୍ମିକ ଚେତନା ଓ ମୁକ୍ତି ପୂର୍ଣ୍ଣମାତ୍ରାରେ ବିକାଶଲାଭ କରିନାହିଁ । କେବଳ ଦେଶାନୁରାଗ ଏଥିପାଇଁ ଯଥେଷ୍ଟ ନୁହେଁ । ବେଳ ଥିଲା; ରାଜର୍ଷି ଓ ସାଧକମାନଙ୍କ ସଂଖ୍ୟା କମ୍‌ହେଲେ ହେଁ ସମାଜର ମଙ୍ଗ ସ୍ଥିର ହୋଇ ରହୁଥିଲା । ଏପରିକି ସର୍ବସ୍ୱ ଆନ୍ଦୋଳନର ମଧ୍ୟବର୍ତ୍ତୀ ନୁହେଁ, ଶେଷ ସମୟରେ ସୁଦ୍ଧା ମହାତ୍ମାଜୀ ସଂଖ୍ୟାରେ ହଜି ନଯାଇ ସଚ୍ଚୋଟ ସତ୍ୟାଗ୍ରହୀ ଜଣେ ହୁଅନ୍ତୁ ପଛକେ ଖୋଜିଥିଲେ ।

ଏସବୁ ଆମ ପ୍ରତ୍ୟେକ ଜଣକ ପାଇଁ ଆହ୍ୱାନ । ତାହାହିଁ ଭାରତୀୟ ହେବାର ଅସଲ ପ୍ରକ୍ରିୟା ଓ ଭାରତୀୟତାର ଅନ୍ୟତମ ଦିଗ ହେଉଛି, ଜାତୀୟ ଓ ଆନ୍ତର୍ଜାତିକ ସମସ୍ୟାବଳୀ ପାଇଁ ଆମ ତ୍ୟାଗପୂତ ସାଧନାନିଷ୍ଠ ଜୀବନର ସନ୍ଧାନ । ଜନ୍ମାନ୍ଧ ଭୀମ ଭୋଇ ସେଥିପାଇଁ ନର୍କଗାମିତାକୁ ବରଣ କଲେ ଜଗତ ଉଦ୍ଧାର ପାଇଁ ।



# ରାଷ୍ଟ୍ର ଚିନ୍ତନ ଓ ରାଷ୍ଟ୍ରୀୟ ଚେତନା

ରାଷ୍ଟ୍ର ସମ୍ବନ୍ଧୀୟ ଚିନ୍ତନ ଓ ଚେତନା ପରିପୂରକ । ଚିନ୍ତନ ସର୍ବାଙ୍ଗ ଶରୀର ଓ ସମସ୍ତ ବ୍ୟବସ୍ଥାରେ ଚେତନା ଆଣିଦିଏ । ଏହା ଯେତିକି ଉତ୍କଟ ହୁଏ, ଚେତନା ବିଦ୍ୟୁତ୍‌ପ୍ରବାହ ପରି ସେତିକି ଘନ ଓ ଗଭୀର ହୋଇଯାଏ । ପକ୍ଷାନ୍ତରରେ ଚେତନା ଚିନ୍ତନକୁ ଶାଣିତ ଓ ନିର୍ଦ୍ଦିଷ୍ଟ କରିଦିଏ । ଚିନ୍ତାର ସ୍ରୋତ ଚେତ଼ନା ଯୋଗୁଁ ଅବାରିତ ଓ ଅବିରତ ଚାଲେ । ଚିନ୍ତନ ମୁଖ୍ୟତଃ ମନ, ବୁଦ୍ଧି ଓ ବିବେକରେ ଖେଳିଯାଏ, ତେଣୁ ଏହାକୁ ଅଦୃଶ୍ୟ ପ୍ରକାଶ ବୋଲି କୁହାଯାଇପାରେ । ଏହା ଆନ୍ତଃ କ୍ରିୟା ଅଥଚ ଚେତନା ଦୃଶ୍ୟ ପ୍ରକାଶ । ଶିହରଣ, ସ୍ଫୀତି, ଆବେଗ ଆଦି ଏହାର ବହିଃ ପ୍ରକାଶ । ଏହା ପରିମାପ୍ୟ ଓ ପରିଲକ୍ଷ୍ୟ । ଆହୁରି ମଧ୍ୟ ରାଷ୍ଟ୍ର ସମ୍ବନ୍ଧରେ ଚିନ୍ତନ ଓ ଚେତନାର ସମନ୍ୱୟୀ ଭାବ ହେଉଛି ରାଷ୍ଟ୍ରୀୟତା । ପରିପୂର୍ଣ୍ଣ ଅଥଚ ପରିମିତ ଏବଂ ସମୁଚିତ ପ୍ରକାଶ ହିଁ ଜାତୀୟତା ବା ରାଷ୍ଟ୍ରୀୟତା । ଚେତନା ଫେନିଳ ତରଙ୍ଗ ସଦୃଶ ଏବଂ ଚିନ୍ତନ ସାମୁଦ୍ରିକ ଆନ୍ତଃ ସ୍ରୋତ ପରି ହେଲେ ହେଁ ଅଖଣ୍ଡ ଜଳରାଶିର ଏକ ଅଂଶରେ ନିଜର ଗୁଣ, ବର୍ଣ୍ଣ ଆଦି ଯୋଗୁଁ ବୈଶିଷ୍ଟ୍ୟ ଅର୍ଜ୍ଜନ କରିଥାଏ । ଠିକ୍ ସେହିପରି ସ୍ଥଳଭାଗର ଏକ ନିର୍ଦ୍ଦିଷ୍ଟ ଭୌଗୋଳିକ ସୀମା ମଧ୍ୟରେ ଇତିହାସ, ସଂସ୍କୃତି, ପରମ୍ପରା, ଶିକ୍ଷା, ସାହିତ୍ୟ ଆଦିର ସ୍ୱାତନ୍ତ୍ର୍ୟ ଯୋଗୁଁ ଜାତୀୟତା ଏକ ଅନନ୍ୟ ରୂପ ଧରିଥାଏ । ତେଣୁ ରାଷ୍ଟ୍ରୀୟତା ରାଷ୍ଟ୍ରର ସ୍ୱଧର୍ମ ଏବଂ ରାଷ୍ଟ୍ରବାସୀ ସ୍ୱଜୀବନରେ ରାଷ୍ଟ୍ରୀୟ ହୋଇ ରାଷ୍ଟ୍ରର ସ୍ୱାଭିମାନ ଓ ସ୍ୱାତନ୍ତ୍ର୍ୟ ପୋଷଣ କରନ୍ତି ଓ ବିକାଶ କରନ୍ତି ।

ଆମ ଦେଶରେ ଆଜି ସାମ୍ପ୍ରତିକ ସ୍ଥିତି ଜଟିଳ, ସମସ୍ୟାବହୁଳ ଓ ଭୟାବହ ହୋଇଛି । ଖଳ ଚକ୍ରାନ୍ତ ଅନେକ ସମୟରେ ବହୁରୂପୀ ହୋଇ ଜାତୀୟ ଜୀବନକୁ ନାନା ଭାବରେ ଆଘାତ ଦେଇଛି । ଅସୂୟା ଓ ବିଦ୍ୱେଷ ଯୋଗୁଁ ବହିଃଶତ୍ରୁ ଆକ୍ରମଣର ସୁଯୋଗ ଉଣ୍ଡୁଛନ୍ତି । ଧମକଚମକ ଦ୍ୱାରା ସେମାନଙ୍କ ରଣକୌଶଳ ଓ ପ୍ରସ୍ତୁତିର ସଙ୍କେତ ଦେଉଛନ୍ତି । ସୀମା ସମସ୍ୟା ବେଳେବେଳେ ଧନଜୀବନ ହାନିର କାରଣ ହେଉଛି । ଆମ ପଡ଼ୋଶୀ ଅଞ୍ଚଳର ରାଷ୍ଟ୍ରର ଗୃହ ବିବାଦରେ ବୃହତ୍ ଶକ୍ତିଙ୍କର ଯୁଦ୍ଧଖୋର ହସ୍ତକ୍ଷେପ ଆମ ପ୍ରତି ଆହ୍ୱାନ ହୋଇ ରହୁଛି । ଏହାଛଡ଼ା ଆଭ୍ୟନ୍ତରୀଣ କନ୍ଦଳ ''ଘର ଢିଙ୍କି କୁମ୍ଭୀର'' ପରି ଅନ୍ତର୍ଘାତୀ ହୋଇ ରହିଛି । ଆଞ୍ଚଳିକତା, ସାମ୍ପ୍ରଦାୟିକତା, ବିଚ୍ଛିନ୍ନତାବାଦ ଆଦି କୁତ୍ସିତ, କଦାକାର ଓ ବିରାଟକାୟ ରୂପ ଧାରଣ କରି ଅଣ୍ଟିଛୁରୀ ତଣ୍ଟି କାଟିଲା ସଦୃଶ ଭୀଷଣ ହୋଇପଡ଼ିଛି ।

ବଡ଼ିମା, ଅହଙ୍କାର, ସ୍ୱାର୍ଥସର୍ବସ୍ୱତା, ଅସହିଷ୍ଣୁତା, ମୂଲ୍ୟବୋଧର ଅବକ୍ଷୟ ଆଦି ଆମ ଜାତୀୟ ଜୀବନର ବିକାଶରେ ଘୋର ପରିପନ୍ଥୀ ହୋଇଛି । ବହୁ କ୍ଷେତ୍ରରେ ଆମ ଅନଗ୍ରସରତା, ଅପାରଗତା, ଅପରିଣାମଦର୍ଶିତା, କ୍ଷମତାର ଅପପ୍ରୟୋଗ ଆଦି ଏପରି ପରିବେଶ ସୃଷ୍ଟି କରୁଛି ଯଦ୍ୱାରା ରାଷ୍ଟ୍ରୀୟତାର ବିକାଶ ପରାଭୂତ ହେଉଛି । ଧର୍ମର ଜୀବନରେ ଆମେ ସାରସ୍ୱତ ଓ ସନାତନ ଆଧାର ପ୍ରତି ଭ୍ରୂକ୍ଷେପ ନକରି ବିରାଡ଼ି ବୈଷ୍ଣବ ସାଜିଛୁଁ ଏବଂ ଏହା ଫଳରେ ଧର୍ମ ଆମକୁ ଦେଶର ସନ୍ତାନ ଓ ମାନବ ସମାଜର ନରନାରୀ ଭାବରେ ଧାରଣ ନକରି ଐକ୍ୟ ଓ ଭ୍ରାତୃତ୍ୱର ବନ୍ଧନକୁ ବାରଣ ଓ ବ୍ୟାହତ କରୁଛି । ବିଜ୍ଞାନବିରୋଧୀ କୁସଂସ୍କାରଗୁଡ଼ିକ ଆମ ଅସ୍ଥିମଜ୍ଜାଗତ ହୋଇ ରାଷ୍ଟ୍ରୀୟ ଜୀବନର କ୍ଷୟସାଧନ କରୁଛି । ଅଣସାକ୍ଷରତା ଓ ଜନସଂଖ୍ୟା ବିସ୍ଫୋରଣ ଆମ ପାଇଁ ମାରାତ୍ମକ ହେବା ସଙ୍ଗେ ସଙ୍ଗେ ଆମ ଜାତୀୟ ଜୀବନର ବିକାଶ ପ୍ରକ୍ରିୟାକୁ ପଙ୍ଗୁ ଓ ବ୍ୟର୍ଥ କରି ଦେଉଛି । ଆମ ପରମ୍ପରାରେ ଏହା ପ୍ରତିଷ୍ଠିତ ଯେ ''ଅନାୟକ'' ହେବା ଯେତେ ବିପଜ୍ଜନକ ''ବହୁ ନାୟକ'' ହେବା ସେତେ କ୍ଷତିକାରକ । ''ଶିଖ୍ମନାଇ'' ଭୂମିକା ତତୋଽଧିକ ମାରାତ୍ମକ । ଏସବୁ କେବଳ ଆତ୍ମକୈନ୍ଦ୍ରିକତା ଏବଂ ରାଷ୍ଟ୍ରୀୟ ଜୀବନର ପୋଷକତାରେ କୁଠାରାଘାତ କରେ । ଉଦାହରଣ ବିନା ଉଚ୍ଚାରଣ-ସର୍ବସ୍ୱ ଜୀବନ ଆମ ପାଇଁ ଆସ୍ଫାଳନ ହୋଇ ରହେ । ତେଣୁ ଆମ ସମସ୍ୟା ହେଉଛି, ଆମ ରାଷ୍ଟ୍ରୀୟ ଜୀବନର ସମୁଚିତ ବିକାଶ ସାଧନ କରିବା । ଆମ ଚିନ୍ତା ଓ ଚେତନାରେ ରାଷ୍ଟ୍ରୀୟ ଭାବନାରେ ଉଦ୍‌ବୁଦ୍ଧ ହେବା । ଜାତୀୟ ଚରିତ୍ରର ନିର୍ମାଣ ହେଉଛି ସାମ୍ପ୍ରତିକ ସ୍ଥିତିରେ ମୁଖ୍ୟ ସମସ୍ୟା । ଏ ବିଷୟରେ ଅନ୍ଧାନୁସରଣ ଆମକୁ ସାହାଯ୍ୟ କରିବ ନାହିଁ । ରାଷ୍ଟ୍ରୀୟ ଚରିତ୍ରର ବିକାଶ ସମ୍ବନ୍ଧରେ ଆମେ ଅଧ୍ୟୟନ କରିବା ଏବଂ ସେଥିରୁ ଆମେ ଅଭିଜ୍ଞତା ଅର୍ଜନ କରିବା । କିନ୍ତୁ ଯୁଗ ଯୁଗର ସଞ୍ଚିତ ଓ ପରୀକ୍ଷିତ ତଥା ବିଶ୍ୱବକ୍ଷରେ ଅଭିନନ୍ଦିତ ମୂଲ୍ୟବୋଧ ଆମ ଜୀବନ ଚରିତ ଓ ଚରିତ୍ରର ସମ୍ବଳ ହେବା ଉଚିତ । ଏହାର ନିରବଚ୍ଛିନ୍ନ କ୍ରମ ଆମ ବିକାଶ ପ୍ରକ୍ରିୟା ଓ ରାଷ୍ଟ୍ରୀୟ ଜୀବନରେ ସୁସ୍ପଷ୍ଟ ହେବା ଆବଶ୍ୟକ । ଆମ ବ୍ୟକ୍ତିଗତ ଜୀବନ ଓ ପ୍ରଶାସନିକ ଦକ୍ଷତାରେ ମୂଲ୍ୟବୋଧର ମାନବିକ ସ୍ପର୍ଶ ରହିବା ଉଚିତ ।

ଏସବୁ କେବଳ ତତ୍ତ୍ୱରାଶି ନୁହେଁ । କାହାଣୀ ଓ କଥାର ଅଳଙ୍କାର ନୁହେଁ । ବାବଦୂକ ବ୍ୟାଖ୍ୟାକାରଙ୍କ ସଭାମଞ୍ଚର ଭାଷଣ ନୁହେଁ । ଶ୍ରୋତାମାନଙ୍କୁ ଭଣ୍ଡେଇ ଭଣ୍ଡୁର କରିଦେବାର ରଣକୌଶଳ ନୁହେଁ । ଜୀବନରେ ରୂପାୟିତ ହୋଇଛି ବେଶଭୂଷା, ଆହାରବିହାର, ଜୀବନଚର୍ଯ୍ୟା ଓ ଚର୍ଚ୍ଚା ମଧ୍ୟରେ । ଘରକରଣା, ଜୀବନ ଓ ଜୀବିକାରେ ପରିସ୍ଫୁଟ ହୋଇଛି । ଆତ୍ମିକ ଓ ଭୌତିକ ଦିଗରେ ଜୀବନକୁ ରେଖାପାତ କରିଛି । ସଙ୍କଟରେ ରକ୍ଷାକବଚ ହୋଇଛି ।

ଅଧିକ ଅଣାଳିବାର ପ୍ରୟାସ ଓ ପରିଶ୍ରମ ନକରି ଏହି ଅଳ୍ପ ଦିନ ତଳେ ସରିଛି, ମାତ୍ର ସୁଦୀର୍ଘ ହୋଇଛି ଏପରି ଏକ ଯୁଗାନ୍ତକାରୀ ଐତିହାସିକ ଘଟଣା ପ୍ରତି ଦୃଷ୍ଟିଦେବା ଓ ତାହା ହେଉଛି, ଆମ ସ୍ୱାଧୀନତା ସଂଗ୍ରାମ । ବିନା ରକ୍ତପାତରେ ଅହିଂସା ସଂଗ୍ରାମ ଭାବରେ ଏହା ସମଗ୍ର ପୃଥିବୀ ପୃଷ୍ଠରେ ଅନନ୍ୟସାଧାରଣ । ''ସତ୍ୟମେବ ଜୟତେ''– ଏହି ଶାସ୍ତ୍ରବାକ୍ୟର ଏହା ଅନ୍ୟ ଏକ ସଫଳ ପ୍ରୟୋଗ । ''ହିଂସାପ୍ରଣୋଦିତ ତରବାରିର ଜୟ, ଜୟ ନୁହେଁ'' ଅଶୋକଙ୍କର ଏହି ନାସ୍ତିସୂଚକ ଘୋଷଣାନାମାର ଅସ୍ତିସୂଚକ ''ଅହିଂସା ପରମ ଧର୍ମ'' ରୂପ ନିଏ ମହାତ୍ମା ଗାନ୍ଧୀଙ୍କ ସତ୍ୟାଗ୍ରହୀର ହୃଦୟ ପରିବର୍ତ୍ତନ କୌଶଳରେ । ରାଷ୍ଟ୍ରୀୟ ଚିନ୍ତନ ଓ ଚେତନାରେ ସମଗ୍ର ଭାରତବର୍ଷ ଏକ ହୋଇଯାଏ । ଭାରତମାତାଙ୍କ ଜୟଗାନ ମୂର୍ଚ୍ଛିତ ହୁଏ ବାଦ୍ୟଯନ୍ତ୍ର ତଥା ନୃତ୍ୟଗୀତର ମୂର୍ଚ୍ଛନା ପରି ପ୍ରତିଟି ପ୍ରାଣର ସ୍ପନ୍ଦନରେ । ଗିରିଗୁହା, ପୁରପଲ୍ଲୀ, କୁଟୀର, ପ୍ରାସାଦ, ସର୍ବତ୍ର ସ୍ୱାଧୀନ ଭାରତର ଆହ୍ୱାନ ପ୍ରତିଧ୍ୱନିତ ହୁଏ । ସାନଠାରୁ ବଡ଼ ପର୍ଯ୍ୟନ୍ତ, ଇତର ଜନଠାରୁ ଇଷ୍ଟ ଓ ଶିଷ୍ଟ ଜନ ପର୍ଯ୍ୟନ୍ତ ସମସ୍ତେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଝାସ ଦିଅନ୍ତି ଭାରତର ଜାତୀୟ ସଂଗ୍ରାମରେ । କାରାବରଣ, ଶୋଷଣ, କଷଣଠାରୁ ଆରମ୍ଭ କରି ପ୍ରାଣବଳି ପର୍ଯ୍ୟନ୍ତ ସବୁ କିଛି ତ୍ୟାଗ କରାଯାଏ କେବଳ ଦେଶର ସ୍ୱାଧୀନତା ପାଇଁ । ସୂର୍ଯ୍ୟକିରଣ ଓ ପବନ ପରି କଳ୍ପନାତୀତ ବେଗରେ ଏବଂ ଦେବାତୀତ ନିର୍ବିକାରରେ ସ୍ପର୍ଶ କରିଯାଏ ସଭିଙ୍କୁ ସର୍ବତ୍ର । ନାଉରିଆଟିଏ, ଇରମ ପାଖରେ ମତେଇ ନଦୀ କୂଳରେ ଚୂଡ଼ାମଣି ଘାଟ ଜଗିଥାଏ । ଜୁଆରିଆ ମତେଇ କୂଳଲଙ୍ଘୀ ଖରସ୍ରୋତକୁ ରାଜକୀୟ ଢଙ୍ଗରେ ଛାଡ଼ି ଦେଇଛି । ଇରମର ସଂଗ୍ରାମୀମାନଙ୍କୁ ଦମନ କରିବାପାଇଁ ସାମ୍ରାଜ୍ୟବାଦୀ ବ୍ରିଟିଶ୍ ସରକାରଙ୍କ ହୁକୁମ୍‌ନାମାରେ ଧାଇଁ ଆସିଛନ୍ତି ବାସୁଦେବପୁର ଥାନାର ଫୌଜ । କିନ୍ତୁ ମତେଇ ଯେ ଅଲଙ୍ଘ୍ୟ । ଅମାନିଆ ନାଉରିଆ ମାଡ଼ ଖାଇଛି । ଭୟରେ ଥରୁଛି । ତଥାପି କାତକୁ ମତେଇ ଗର୍ଭରେ ଭସାଇ ଦେଇଛି । ସେଦିନ ଇରମ ରକ୍ତରଞ୍ଜିତ ସଂଗ୍ରାମ ଭୂଇଁରେ ପରିଣତ ହୋଇଛି । ତିନି ଟଙ୍କିଆ ମୁଣ୍ଡର ସେ ନାଉରିଆ, କିନ୍ତୁ ୩୦ କୋଟି ଭାରତବାସୀଙ୍କ ସ୍ୱାଧୀନତା ପାଇଁ ସେ ଆଇନ୍ ଅମାନ୍ୟ କରିଛି । କିଏ ଚେତନା ଦେଇଛି ? ଇରମ ଜାଗି ଉଠିଛି କିପରି ? ରାଷ୍ଟ୍ରୀୟତାରେ ଦେଶର ଆବାଳବୃଦ୍ଧବନିତା ଜାଗି ଯାଇଛନ୍ତି । ଗଣମାଧମର ଜାଲ ଆଜି ଯେପରି, ସେତେବେଳେ ସେପରି ନଥିଲା । ତୁଣ୍ଡେ ତୁଣ୍ଡେ ବାଇଦ ସହସ୍ର କୋଶ । ଜାତୀୟ ଉନ୍ମାଦନା ତୂରୀଭେରୀ ନାଦରେ ଚାଲିଥିଲା । ଏପରି ସମୂହ ଗଣ ସଂଗ୍ରାମ ସତ୍ୟ, ଅହିଂସା, ପ୍ରେମ ବଳରେ ନୀରବ ବିପ୍ଳବ ସୃଷ୍ଟି କରି ଅଘଟଣ ଘଟଣ କରିଛି । ଜାତୀୟତାର ଉଜ୍ଜ୍ୱଳ ଉଦାହରଣ, ଏହାର ପଟାନ୍ତର ନାହିଁ । ଉତ୍କଳ ଗୌରବଙ୍କ ଭାଷାରେ ''ଜାତିପ୍ରେମ ବହ୍ନି ପ୍ରଜ୍ଜ୍ୱଳିତ

କର, ସ୍ୱାର୍ଥକୁ ଦିଅ ଆହୁତି'' । ପୁନଶ୍ଚ ''ଜାତି ନନ୍ଦିଘୋଷ ଚଳିବ କି ଭାଇ, ସ୍ୱାର୍ଥକୁ ସାରଥି କଲେ ?'' ନିଷ୍କପଟ ଓ ନିଃସ୍ୱାର୍ଥ ରାଷ୍ଟ୍ରୀୟତାର ନିଦର୍ଶନ ହେଉଛି ଆମ ସ୍ୱାଧୀନତା ସଂଗ୍ରାମ ।

ଏହା ଏକାନ୍ତ ସ୍ମରଣୀୟ ଯେ ଆତ୍ମଚେତନା ଓ ରାଷ୍ଟ୍ରଚେତନା ସହିତ ସ୍ୱତନ୍ତ୍ରତା ଜଡ଼ିତ । ଆତ୍ମଚେତନାର ଅଭାବ ହେଲେ ରାଷ୍ଟ୍ରଚେତନା ବାଧାପ୍ରାପ୍ତ ହେବ । ଆତ୍ମଚେତନାର ଅଭ୍ୟୁଦୟ ଦ୍ୱାରା ଏକତା, ଭ୍ରାତୃତ୍ୱ ଓ ସର୍ବଧର୍ମସମଭାବରେ ବିକାଶ ଘଟିବ ।

ବସ୍ତୁତଃ ରାଷ୍ଟ୍ର ହେଉଛି ଏକ ସମଗ୍ର ଚିନ୍ତନ । ସ୍ୱାର୍ଥ ଚିନ୍ତନରୁ ଉର୍ଦ୍ଧ୍ୱକୁ ଉଠି ସମଗ୍ର ଚିନ୍ତନକୁ ଗ୍ରହଣ କରିବାକୁ ହେବ । ସ୍ୱାର୍ଥ ଚିନ୍ତନ ଆମକୁ ନିମ୍ନଗାମୀ କରିଦିଏ ଓ ସମଗ୍ର ଚିନ୍ତନରୁ ଆମେ ଉର୍ଦ୍ଧ୍ୱାଭିମୁଖୀ ହୋଇପାରିବା । ସମଷ୍ଟ ଚିନ୍ତନରୁ ସମର୍ପଣ ଭାବ ଆସେ । ''ମୁଁ'' ମୋର ସ୍ୱାର୍ଥ ଜଡ଼ିତ, ଏହାହିଁ ବ୍ୟକ୍ତିକୈନ୍ଦ୍ରିକ । କିନ୍ତୁ ଆମର ଚିନ୍ତା, ଚେତନା ଓ ବିଚାରଧାରା ଯେତେ ଉଦାର, ପରାର୍ଥପରାୟଣ ଓ ଭ୍ରାତୃଭାବାପନ୍ନ ହେବ ଆମେ ସେତେ ସମଷ୍ଟି ଭାବାପନ୍ନ ହେବା । ରାଷ୍ଟ୍ର ଓ ବିଶ୍ୱ ସେହି ସମଷ୍ଟି ଭାବନାର ପରିଣତି । ଏହି ଭାବ ବୃତ୍ତର ପରିଧି କ୍ରମେ ଏତେଦୂର ସମ୍ପ୍ରସାରିତ ହେବ ଯେ ଏହା ଦେଶାତୀତ ହୋଇ ବିଶ୍ୱାତୀତ ହେବ । ବୈଦିକ ସାହିତ୍ୟରେ ରାଷ୍ଟ୍ରକୁ ସମଗ୍ର ବିଶ୍ୱ ରୂପରେ କଳ୍ପିତ କରାଯାଇଛି । ''ଲୋକାଃ ସମସ୍ତାଃ ସୁଖିଃ ଭବନ୍ତୁଃ'' । ଏହାହିଁ ଏକ ସାତ୍ତ୍ୱିକ ଦର୍ଶନ । ସାଧୁସନ୍ଥ ପରମ୍ପରାରେ ତଥା ବୀର ପୁରୁଷମାନଙ୍କ ଜୀବନରେ ସମସ୍ତ ରାଷ୍ଟ୍ରର କଲ୍ୟାଣ ପାଇଁ ସବୁ କିଛି ତ୍ୟାଗ ଓ ବିସର୍ଜନ କରିବାର ବହୁ ଦୃଷ୍ଟାନ୍ତ ରହିଛି । ତନ୍ମଧ୍ୟରେ ଦଧିଚୀ ହେଉଛନ୍ତି ଅନ୍ୟତମ ଉଜ୍ଜ୍ୱଳ ପ୍ରତିଭା । ଯଦି ବ୍ୟକ୍ତିଗତ କଥା ହୋଇଥାନ୍ତା, ସେ ତ ଉଚ୍ଚକୋଟୀର ସାଧୁସନ୍ଥ ଥିଲେ । ତେବେ ଅସ୍ଥି ଦାନ କରିବାଦ୍ୱାରା ସେ ଆଉ କ'ଣ ଅଧିକ ଲାଭ ପାଇବାର ଆଶା ରଖିଥିଲେ ?

ସୌଭାଗ୍ୟକ୍ରମେ ଏହି ଦେଶରେ ଆମ ରାଷ୍ଟ୍ରୀୟତ କେବଳ ଏକ ରାଜନୈତିକ ଦର୍ଶନ ନୁହେଁ, ଏହା ଆମ ସାଂସ୍କୃତିକ ଚେତନା ଦ୍ୱାରା ପରିପୋଷିତ ଓ ସମ୍ବର୍ଦ୍ଧିତ । ଏହାକୁ ଅଧ୍ୟୟନ ଓ ଆଚରଣ କଲେ ଜଣାଯାଏ ଯେ ମାତୃଭୂମି, ସଂସ୍କୃତି ଓ ରାଷ୍ଟ୍ର ପ୍ରତ୍ୟେକର ଭାବ ଏବଂ ତଦନୁକୂଳ ଆଚରଣ ହେଉଛି ରାଷ୍ଟ୍ରୀୟତା । ମାତୃଭୂମିରେ ଯୁଗେ ଯୁଗେ ଶ୍ରେଷ୍ଠ ପୁରୁଷ ଜନ୍ମ ଗ୍ରହଣ କରିଛନ୍ତି ଓ ତେଣୁ ଏହା ଆମର ସେବ୍ୟ । ଏଥିପାଇଁ ଆମେ ପ୍ରାଣ ଦେବା ପାଇଁ ପ୍ରସ୍ତୁତ ହେବା ଉଚିତ । ଠିକ ଏହି ମର୍ମରେ କୁହାଯାଏ :

*''ମାତୃଭୂମିଃ, ପିତୃଭୂମିଃ, କର୍ମଭୂମିଃ, ସୁଜନ୍ମନାଂ*

*ଭକ୍ତିମର୍ହତି ଦେଶୋଽୟଂ ସେବ୍ୟଃ ପ୍ରାଣଧନୈଃ ଅପି ।''*

ପ୍ରାଣଧନ ଅର୍ପଣ କରି ଆମ ଦେଶକୁ ଭକ୍ତି କରିବା । ସଂସ୍କୃତ ସାହିତ୍ୟର ସିଦ୍ଧାନ୍ତ ହେଉଛି ''ରାଷ୍ଟ୍ରଦେବ ଭବ'' ଅଥର୍ବ ବେଦ ମଧ୍ୟ କହନ୍ତି ''ଅୟଂ ଲୋକଃ ପ୍ରିୟତମଃ ଦେବେଭିଃ ଅପରାଜିତଃ'' । ଅଥର୍ବ ବେଦ ମଧ୍ୟ ଘୋଷଣା କରନ୍ତି ଯେ ''ଆମେ ସମସ୍ତେ ଶ୍ରେଷ୍ଠ ହେବା ଓ ଦେଶ ଭାବନାକୁ ଜାଗ୍ରତ ରଖିବା'' । ପକ୍ଷାନ୍ତରରେ ଅଥର୍ବ ବେଦ ସତର୍କ କରାଇ ଦିଅନ୍ତି, ''ନିଜ ରାଷ୍ଟ୍ରର ବିକାଶ ହେଲେ ନିଜ ହିତ ହୁଏ, ଏପରି ଧ୍ୟାନ ରହିବା ଉଚିତ । କେବେହେଁ ରାଷ୍ଟ୍ରର କ୍ଷତି କରି ନିଜ ଲାଭ ଉଠାଇବାର ଚେଷ୍ଟା ନହେଉ ।'' ଏପରି ଲାଭ ଲୋଭରୁ ଏକାନ୍ତ ନିବୃତ୍ତ ହେବା ଉଚିତ । ରାଷ୍ଟ୍ରର ଜୟଗାନ ଓ ଜୟଯାତ୍ରାରେ ଆମ୍ଭେମାନେ ଆନନ୍ଦ ଅନୁଭବ କରିବା ଦରକାର । ପ୍ରତିଦିନ ଆତ୍ମ ସମୀକ୍ଷା କରି ପ୍ରତ୍ୟେକଙ୍କର କର୍ତ୍ତବ୍ୟ ସ୍ଥିର କରିବାକୁ ହେବ । ରାଷ୍ଟ୍ରୀୟ ଜୀବନରେ ଏହାହିଁ କର୍ତ୍ତବ୍ୟ ।

ରାଷ୍ଟ୍ରୀୟ ଭାବନାର ପୋଷକ ଭାବରେ ଆମ ଜୀବନକୁ ଗଠନ କରିବାପାଇଁ ଆମେ ଋକ୍‌ବେଦର ଉପଦେଶ ଗ୍ରହଣ କରିବା । ସେଥିରେ ଅଛି ''ନିଜର ଶରୀର, ମନ, ବୁଦ୍ଧି ଉପରେ ପୂର୍ଣ୍ଣରୂପରେ ସ୍ୱାଧୀନତା ପ୍ରାପ୍ତି କରିବା ହେଉଛି ସ୍ୱରାଜ୍ୟ । ଏହି ସ୍ୱରାଜ୍ୟର ଅଧିକାରୀ ହୋଇପାରନ୍ତି ଜିତେନ୍ଦ୍ରିୟ ଲୋକମାନେ । ଜିତେନ୍ଦ୍ରିୟ ହେଉଛନ୍ତି ସେ ଯେ ମିତ୍ରବତ୍ ବ୍ୟବହାର କରନ୍ତି ଓ ଯାହାଙ୍କ ଦୃଷ୍ଟି ବ୍ୟାପକ ଓ ଯେ ସବୁ ପ୍ରକାର ଯୋଗ୍ୟ ଅଟନ୍ତି ।'' ଏହି ଯୋଗ୍ୟତା ଆମକୁ ଅର୍ଜନ କରିବାକୁ ପଡ଼ିବ । ଆମକୁ ସ୍ମରଣ କରିବାକୁ ହେବ ଯେ ଏହି ଯୋଗ୍ୟତା ଅର୍ଜନରୁ ଆମ ପାଇଁ ସ୍ୱରାଜ୍ୟର ପ୍ରାପ୍ତି । ମହାତ୍ମା ଗାନ୍ଧୀ ଜାତୀୟ ସଂଗ୍ରାମର କର୍ଣ୍ଣଧାର ଭାବରେ ଦେଶର ପୁନର୍ଗଠନରେ ଏହି ଦୃଷ୍ଟି ନିଜେ ରଖିଥିଲେ ଓ ଦେଶବାସୀଙ୍କ ସମ୍ମୁଖରେ ଉପସ୍ଥାପନ କରିଥିଲେ । ଏ ବିଷୟରେ କେବଳ ସ୍ୱାଧୀନ ଦେଶରେ ଜନ୍ମଗ୍ରହଣ ହିଁ ଆମ ପାଇଁ ଶେଷ କଥା ବା ଏକମାତ୍ର ବିଚାର ନୁହେଁ । ରାଷ୍ଟ୍ରଚିନ୍ତନ ଆମେ କରୁଛୁ କି ? ରାଷ୍ଟ୍ରୀୟ ଚେତନାରେ ଆମେ ଅନୁପ୍ରାଣିତ ହେଉଛୁଁ କି ? ଏହି ଦୃଷ୍ଟିରେ ଆମ ପ୍ରସ୍ତୁତି କ'ଣ ? ଏସବୁ ପ୍ରଶ୍ନର ଓତପ୍ରୋତ ଭାବରେ ଜଡ଼ିତ ହେବାହିଁ ସ୍ୱାଧୀନ ଦେଶରେ ଜନ୍ମଗ୍ରହଣର ସାର୍ଥକତା ।

ରାଷ୍ଟ୍ରୀୟତା ପୋଷକ ଯୋଗ୍ୟତାର ଲକ୍ଷଣ କ'ଣ ହୋଇପାରେ ? ଋକ୍‌ବେଦ ଦୁଇଟି ସୂକ୍ତିରେ ଉତ୍ତର ଦେଇଛନ୍ତି । ଗୋଟିଏ ହେଉଛି, ''ହେ ମନୁଷ୍ୟ ! ତୁମ ବିଚାର ଏକ ସଦୃଶ ହେଉ, ତୁମର ସଭାସମିତି ଏକ ସୂତ୍ରରେ ବନ୍ଧା ହେଉ, ତୁମର ଚିନ୍ତନ ଏକତ୍ର ହେଉ ।'' ଅନ୍ୟ ସୂକ୍ତିଟି ହେଉିଛି, ''ହେ ମନୁଷ୍ୟ ! ତୁମେ ଏକ ସଙ୍ଗରେ ଚାଲ । ପରସ୍ପର ବିରୋଧରେ ଚାଲ ନାହିଁ । ସମସ୍ତଙ୍କ ମନ ଏକ ସଦୃଶ ଜ୍ଞାନପ୍ରାପ୍ତ ହେଉ ।'' ଏଠାରେ ଏହା ଲକ୍ଷ୍ୟ କରିବା ଯେ ଉଲ୍ଲିଖିତ ଦୁଇଟି ସୂକ୍ତି ପରସ୍ପର ପରିପୂରକ ଓ ମନୁଷ୍ୟ ପ୍ରତି

ଉଦ୍ଦିଷ୍ଟ । ଆହୁରି ମଧ ବେଦ ବେଦାନ୍ତର ସାରସତ୍ୟ ସୂଚିତ କରେ, ମନୁଷ୍ୟ ଯେ ରାଷ୍ଟ୍ରୀୟ ଏହା ସତ୍ୟ, ସେ ରାଷ୍ଟ୍ରାତୀତ । ରାଷ୍ଟ୍ରୀୟତା ଓ ବିଶ୍ୱ ମାନବିକତା ମଧ୍ୟରେ ଦ୍ୱନ୍ଦ ନାହିଁ, ଅଛି ସହଯୋଗିତା ଓ ସମ୍ପ୍ରସାରିତତା । ସୀମା ଭିତରେ ଅସୀମର ଦର୍ଶନ, ଆକାର ମଧ୍ୟରେ ଅଣାକାରର ଉପଲବ୍ଧି, ରୂପର ବିଭିନ୍ନତା ମଧ୍ୟରେ ଅରୂପ ଓ ଅଣରୂପଙ୍କ ସ୍ୱୀକୃତି, ସନ୍ଧାନ ଓ ସ୍ୱୀୟ ଅନୁଭୂତି । ଯାହାହେଉ, ରାଷ୍ଟ୍ରୀୟତା ପୋଷକ ଯୋଗ୍ୟତାର ଲକ୍ଷଣ ହେଉଛି ସାମାଜିକ ଚିନ୍ତା, ଚିନ୍ତନ ଓ ଚେତନା । ଅନ୍ୟ କଥାରେ କହିଲେ, ଏହା ହେଉଛି ମାନବବାଦୀ ବିଚାର । ବଡ଼ିମାରେ ବାନ୍ଧି ନହୋଇ ଉନ୍ମୁକ୍ତ ମାନବିକ ଦର୍ଶନକୁ ଆଦରି ନେବା ।

କାହିଁକି ? କ'ଣ ହେଲା ? ଆମେ କାହିଁକି ସାଂସ୍କୃତିକ ଚେତନାଶୂନ୍ୟ ହେଉଛୁଁ ? ପରାଧୀନତାର ବିଷମୟ ପରିଣତି ବୋଲି ଦୋଷ ଦେବାର ସମୟ ଅତିବାହିତ ହୋଇଯାଇଛି । ଖରାଦିନର ଶୁଖିଲା ନଈର ସୁଅ ଦେଖାଯାଏ ନାହିଁ । ଏହା ନଈବାଲି ତଳେ ଲୁଚିଯାଏ । ବାଲି ଚିରି ଲୋକେ ପାଣି ଛେଦି ନିଅନ୍ତି । ଆମ ସଂସ୍କୃତିର ସୁଅ ରହିଛି । ଅଦେଖା ଅଶୁଣା ସେ ସୁଅ । ଧାରକୁ ଧରି ପାରୁନାହିଁ । ଗୁଡ଼ାଏ କୁଡ଼ିକଚାଡ଼ି ହେଉଛୁଁ । ସଂସ୍କୃତି ନାଁରେ ଉପରଠାଉରିଆ ଆତସବାଜି ମାରୁଛୁଁ । ସାଜସଜ୍ଜା କରିପକାଉଛୁଁ । ସମାଜକୁ ଚିହ୍ନୁ ନାହୁଁ । ଲୋକଶକ୍ତିକୁ ଠାବକରି ପାରୁନାହିଁ । ଅର୍ଥହାନି ଓ ଦେହପୀଡ଼ା ସହୁଛୁଁ । ସମାଜର ପୁନର୍ଗଠନ କାହିଁ ? ସେଥିପାଇଁ ସତରେ ଲୋକଙ୍କ ସଙ୍ଗରେ କାମ କିଏ କରୁଛି ? ସମସ୍ତଙ୍କର ହାକିମି, ହଇରାଣ ଓ ହନ୍ତସନ୍ତ । କେତେ ଲୋକଙ୍କ ପାଇଁ ପେଁକାଳି ସେ ବଜାଇବେ ? ହାତୀ ନାହିଁ, ଘୋଡ଼ା ନାହିଁ ? ସବୁ କାଗଜରେ । ହତାଶ ଓ ହରକତ ଭିତରେ ନାନା କୁସଂସ୍କାର ବେଶ୍ ଜବର ଚେର ଭିଡ଼ି ଦେଉଛି । ଜାତି, କୁଳର ପାରମ୍ପରିକ ଶ୍ରେଷ୍ଠତା ଆମ ମୂଲ୍ୟବୋଧ ଓ ସାଂସ୍କୃତିକ ଚେତନାର ବିକାଶକୁ ଉଧେଇ ଦେଉନାହିଁ । ବିଷ ଔଷଧ ଗଛ ମୁଣ୍ଡରେ ଢଳାଯାଉଛି । କୀଟ ମରିବା ତ ଦୂରର କଥା, ମୂଳରୁ ଗଛ ମରୁଛି । ଅପସଂସ୍କୃତି ବ୍ୟାପୁଛି । ଲୋକସଂସ୍କୃତି ହେଉନାହିଁ, ହେଉଛି ଅଲୌକିକ ଅପସଂସ୍କୃତି ।

ଶୁକ୍ର ନୀତିରେ କୁହାଯାଇଛି :

*କର୍ମଶୀଳଃ ଗୁଣାଃ ପୂର୍ଜ୍ୟାଃ ତଥା ଜାତିକୁଳେ ନହି*

*ନ ଜାତ୍ୟାଃ ନ କୁଳେ ନୈବ ଶ୍ରେଷ୍ଠତ୍ୱ ପ୍ରତିପଦ୍ୟତେ ।*

କର୍ମ, ଗୁଣ ଓ ଆଚରଣକୁ ଆଧାରିତ କରି ଶ୍ରେଷ୍ଠତା ପ୍ରତିପାଦନ କରିବା ଉଚିତ । ଜାତିବଳରେ ନୁହେଁ, ଜାତିରେ ନୁହେଁ, କୁଳରେ ନୁହେଁ ।

*"ଜନଂ ବିଭ୍ରତୀ ବହୁଦା ବିବାଚସଂ ନାନା ଧର୍ମାଣଂ ପୃଥିବୀ ଯଥୌ କସଂ ।"*

ବହୁ ଭାଷାଭାଷୀ ଓ ବହୁ ମତାବଲମ୍ବୀ ଲୋକଙ୍କୁ ଗୋଟିଏ ପରିବାରର ଲୋକଙ୍କ ପରି ଧରିତ୍ରୀ ଧାରଣ କରେ । ଏହି ଦେଶର ବିଭିନ୍ନ ବିଚାରବନ୍ତ ଓ ନାନା କର୍ତ୍ତବ୍ୟରେ ରତ ବ୍ୟକ୍ତି ଅଛନ୍ତି । ଏମାନଙ୍କ ମଧ୍ୟରେ ସଦା ସଦ୍ଭାବ ଓ ସହଯୋଗୀ ଭାବ ରହିଛି । ତଥାପି ବିଚ୍ଛିନ୍ନତାବାଦ ଓ ବିଭେଦପଣିଆ ଆମକୁ ଛିନ୍ନଭିନ୍ନ କରି ଦେଉଛି । ହତାଶାବାଦ ଓ ଅସନ୍ତୋଷର ନିଆଁ କୁହୁଳୁଛି । ରାଜନୀତିର ହାତବାରିସି ହୋଇ ଏ ସବୁ ଉଗ୍ରବାଦରେ ପରିଣତ ହେଉଛି । ଦେଶ ଓ ବିଶ୍ୱର ବିଚାର ଏବଂ ବ୍ୟବସ୍ଥାକୁ ଆମେ ସମ୍ମାନ ଦେଉନାହିଁ । ସଂହତି ଓ ସମ୍ବେଦନଶୀଳତା ବ୍ୟାହତ ଓ ବିଖଣ୍ଡିତ ହେଉଛି । ଏକତା ଏବଂ ଏକାତ୍ମତାର ଧ୍ୱନି ପ୍ରତ୍ୟେକ ଭାରତୀୟ ଭାଷାରେ ଗୁଞ୍ଜରିତ ହୋଇଛି । ଯୁଗେ ଯୁଗେ ଭାରତୀୟ ଭାବନା ଓ ଦର୍ଶନରେ ବସୁଧୈବ କୁଟୁମ୍ବକମ୍‌ର ଧ୍ୱନି ନିନାଦିତ ହୁଏ । ଅନ୍ୟତମ ସ୍ମରଣୀୟ ଉଦାହରଣ ହେଉଛି ସୁବ୍ରହ୍ମଣ୍ୟମ୍ ଭାରତୀଙ୍କ କାଳଜୟୀ ରଚନାରୁ ନିମ୍ନ କେତୋଟି ଧାଡ଼ି :

*"ବାର ବାର ହିଁ ବାରବାର*
*ଭାରତ ଭୁଁକି ବନ୍ଦନା କରେଗେଁ*
*ହମ୍ ବନ୍ଦେ ମାତରଂ କହେଗେଁ ।*
*ଉଚ୍ଚନୀଚ କା ଭେଦ ଭୁଲକର*
*ଜାତି ଧର୍ମ କା ଦମ, ନ ଭରେଗେଁ*
*ହମ୍ ବନ୍ଦେ ମାତରଂ କହେଗେଁ ।"*

ଜାତି, ଧର୍ମ, କୂଳ, ଛୁଆଁ-ଅଛୁଆଁର ଭେଦ ଭୁଲି ବିଭେଦ ମଧ୍ୟରେ ଅଭେଦତ୍ୱର ଉପଲବ୍ଧି ହେଉଛି ଆମର ଜାତୀୟ ଚରିତ୍ର । ସେଥିପାଇଁ ସତ୍ୟ, ନିଷ୍ଠା, ପରସ୍ପର ବିକାଶ, ନ୍ୟାୟ ବ୍ୟବହାର, କର୍ତ୍ତବ୍ୟଦକ୍ଷତା, ସହନଶକ୍ତି, ଜ୍ଞାନ ବିଜ୍ଞାନ, ଆଦରଭାବ, ପରସ୍ପର ଏକତା ଓ ଦୀନହୀନର ସହାୟତା ଦ୍ୱାରା ହିଁ ରାଷ୍ଟ୍ରୀୟତାର ବିକାଶ କରାଯାଇପାରେ ।

ପରିଶେଷରେ ରାଷ୍ଟ୍ରୀୟ ମମତା ଓ ଚରିତ୍ରର ଯୁଗୋଚିତ ଏବଂ ଆବଶ୍ୟକତା ଅନୁରୂପ ବିକାଶ କରିବା ଉଦ୍ଦେଶ୍ୟରେ ନିମ୍ନ କେତୋଟି କାର୍ଯ୍ୟକ୍ରମର ସୂଚନା ଦିଆଯାଇପାରେ :

(୧) ଆମ ଦେଶରେ ଶିକ୍ଷା ଏକ ଜୀବନବ୍ୟାପୀ କାର୍ଯ୍ୟକ୍ରମରେ ପରିଣତ ହୋଇନାହିଁ । ଏପରି ଅନେକ ଅଛନ୍ତି ଯେଉଁମାନେ ସମ୍ବିଧାନ ସମର୍ଥିତ ଶିକ୍ଷାର ମୌଳିକ ଅଧିକାରରୁ ଏ ପର୍ଯ୍ୟନ୍ତ ବଞ୍ଚିତ । ଜନସମାଜର ଦୁଇତୃତୀୟାଂଶ ବ୍ୟକ୍ତି ଏବଂ ଗ୍ରାମ ତଥା ଆଦିବାସୀ ଅଞ୍ଚଳରେ ତତୋଽଧିକ ନରନାରୀ ନିରକ୍ଷରତାର କଳଙ୍କରୁ ମୁକ୍ତ

ହୋଇପାରି ନାହାନ୍ତି । ଏପରି ସ୍ଥଳରେ ରାଷ୍ଟ୍ରୀୟ ଚିନ୍ତନ ଓ ଚେତନାର ବିକାଶ ସାଧିତ ହେବ କିପରି ? ଯେଉଁମାନେ ଶିକ୍ଷା ସୁଯୋଗ ଭୋଗ କରି ଭାଗ୍ୟବାନ, ସେମାନଙ୍କ ମଧ୍ୟରୁ ଅନେକ ନିଜ ପାଇଁ ଯେତେ ସଚେତନ ଦେଶ ପାଇଁ ସେତେ ନୁହଁନ୍ତି । ଜାତୀୟ ଚରିତ୍ରର ବିକାଶପାଇଁ ଶିକ୍ଷା ଅନିବାର୍ଯ୍ୟ ଓ ଶିକ୍ଷାର ସାର୍ବଜନନୀକରଣ ତଥା ନିରକ୍ଷରତା ଦୂରୀକରଣ ପାଇଁ ଯେଉଁ ଜାତୀୟ ଶପଥ ନିଆଯାଇଛି ଏହାକୁ ପାଳନ କରିବା ଆମର କର୍ତ୍ତବ୍ୟ ।

(୨) ଆଧ୍ୟାତ୍ମିକତା ଆଧାରିତ ଓ ପରସ୍ପର ସମନ୍ୱୟୀ ଏବଂ ସଂଶ୍ଳିଷ୍ଟ ପୂର୍ଣ୍ଣାଙ୍ଗ ବ୍ୟକ୍ତି ଏବଂ ସମାଜ ଗଠନ ପାଇଁ ଶିକ୍ଷା ଅଭିପ୍ରେତ ହେବା ଉଚିତ । ବ୍ୟକ୍ତିଗତ ଉତ୍କର୍ଷ ସାଧନ ଆମର ଯେପରି ଧ୍ୟେୟ ହୋଇଛି ସାମାଜିକ ତଥା ସାମଗ୍ରିକ ଦାୟିତ୍ୱ ବହନ ସେପରି ଅବହେଳିତ ଓ ଉପେକ୍ଷିତ ହେଉଛି । ଆମ ଲାଳନପାଳନ, ଉନ୍ନୟନ, ଚାଲିଚଳଣ, ଶିକ୍ଷାଦୀକ୍ଷା ଆଦିରେ 'ସର୍ବଜନ ହିତେରତା' ହଜିଯାଉଛି । ୧୯୬୬ ମସିହାରେ କୋଠାରୀ କମିଶନ୍ ଶିକ୍ଷାର ପ୍ରସାରକୁ ସାମୟିକ ଭାବରେ ଅଟକାଇ ଗୁଣାତ୍ମକ ବିକାଶ ଉପରେ ଧ୍ୟାନ ଦେବାକୁ ସୁପାରିଶ କରିଥିଲେ । ସମାଜ ଏହାକୁ ଶୁଣିଲେ ନାହିଁ ଓ ଶିକ୍ଷକମାନେ ଏଥିରେ ଉଦ୍‌ବୁଦ୍ଧ ହେଲେ ନାହିଁ । ବର୍ତ୍ତମାନ ଜାତୀୟ ସଙ୍କଟ ଓ ଏ ବେଳରେ ଆମକୁ ଶିକ୍ଷାର ଉଭୟ ପ୍ରସାର ଓ ବିକାଶ ଉପରେ ସମୁଚିତ ଦୃଷ୍ଟି ଦେବାକୁ ପଡ଼ିବ । ୧୯୮୬ ଜାତୀୟ ଶିକ୍ଷାନୀତି ଏ ବାବଦରେ ଅନେକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଦେଇଛନ୍ତି । ଏହା ଆମ ପାଇଁ ଆହ୍ୱାନ ଏବଂ ଜାତୀୟ ସଙ୍କଟକୁ ଅଧିକ ଜଟିଳ ନକରି ରାଷ୍ଟ୍ରୀୟ ଗୁରୁତ୍ୱ ଓ ଗୌରବ ଆମର ଧ୍ୟେୟ ହେଉ ।

(୩) ଜାତୀୟ ସଙ୍ଗୀତ, ଜାତୀୟ ପତାକା, ପ୍ରତୀକ, ରଷ୍ଟ୍ରଭାଷା ଆଦିର ଗୌରବାବହ ଇତିବୃତ୍ତ ଜାଣିବା ପ୍ରତ୍ୟେକ ନାଗରିକର କର୍ତ୍ତବ୍ୟ । ପବିତ୍ର ଚେତନା ପ୍ରକାଶ ପାଇବା ଉଚିତ । ଜାତୀୟ ଅନୁଷ୍ଠାନଗୁଡ଼ିକ ଆମର ଗର୍ବ ଓ ସେଥିପାଇଁ ବ୍ୟକ୍ତିଗତ, ଦଳୀୟ ଓ ଗୋଷ୍ଠୀଗତ ସ୍ୱାର୍ଥ ଓ ବଡ଼ିମାକୁ ଜଳାଞ୍ଜଳି ଦେବା ସର୍ବଦା କରଣୀୟ ।

(୪) ସାର୍ବଜନୀନ ସାଂସ୍କୃତିକ ତଥା ମାନବିକ ମୂଲ୍ୟବୋଧ ଆମ ଆଚରଣର ଅଙ୍ଗୀଭୂତ ହେବା ଉଚିତ । ଗଣମାଧ୍ୟମ, ଶିକ୍ଷାୟତନ ଆଦିରେ ଏସବୁ ବସ୍ତୁନିଷ୍ଠ ଭାବରେ ପ୍ରତିଫଳିତ ହେବା ଉଚିତ । ବ୍ୟକ୍ତି ନିର୍ବିଶେଷରେ ଓ ବ୍ୟକ୍ତି ଜୀବନରେ ସକଳ ବିଭାଗରେ ଏସବୁ ମୂଲ୍ୟବୋଧ ଆମକୁ ପ୍ରଭାବିତ କରିବା ଉଚିତ । ଉନ୍ନୟନ ଓ ବିକାଶ ପ୍ରକ୍ରିୟାର ମୌଳିକ ସୂତ୍ର ଏହି ଧାରା ଅନୁସରଣ କଲେ ଏହାର ମୌଳିକତା ରହିବ

ଓ ଲୋକଙ୍କ ଦ୍ୱାରା ଆଦୃତ ହେବ । ଏଥିରେ ଜଡ଼ିତ ସକଳ କର୍ମୀ, କର୍ମଚାରୀ ଓ କର୍ଣ୍ଣଧାର ବଡ଼ିମା ଛାଡ଼ି ସେବା, ସମସ୍ୟା ଓ ରାଷ୍ଟ୍ର ସଚେତନ ହେବା ଦରକାର । କୁସଂସ୍କାର ଓ ଧର୍ମାନ୍ଧତାରୁ ସର୍ବଭାବରେ ମୁକ୍ତ ହେବେ । ''ଅହଙ୍କାର ବିମୂଢ଼ାତ୍ମା କର୍ତ୍ତାଽହମ୍ ଇତି ମନ୍ୟତେ ।'' ଏଥିରୁ ଶିକ୍ଷା ଗ୍ରହଣ କରିବେ । ମାନବ ସେବା ମାଧବର ସେବା ବୋଲି ଉଦ୍‌ବୁଦ୍ଧ ହେବେ ।

(୫) ଜାତୀୟ ପର୍ବପର୍ବାଣି ଓ ପୁଣ୍ୟ ଦିବସ ଦଳମତ, ଧର୍ମ, ଜାତି ଆଦିର ଉର୍ଦ୍ଧ୍ୱରେ ରହି ପାଳନ କରାଯିବ । ଆନ୍ତର୍ଜାତୀୟ ଓ ରାଷ୍ଟ୍ରୀୟ ଜୀବନରେ ମନୀଷୀମାନଙ୍କୁ ସାତ୍ତ୍ୱିକ ମନରେ ଶିକ୍ଷାପ୍ରଦ ଭାବରେ ସ୍ମରଣ କରାଯିବ ।

(୬) ଧର୍ମ ପ୍ରାଣୀମାନଙ୍କୁ ଧାରଣ କରେ ଓ ଏକତ୍ର କରେ । ଯେଉଁମାନେ ହିଂସା ଓ ଘୃଣା କରନ୍ତି ସେମାନେ କେବେହେଁ ଧାର୍ମିକ ନୁହନ୍ତି । କିନ୍ତୁ ସମ୍ପ୍ରଦାୟ ଆମକୁ ପୃଥକ୍ କରେ ଓ ଆମ ମଧ୍ୟରେ ପ୍ରାଚୀର ସୃଷ୍ଟି କରେ । ଧର୍ମ ହେଉଛି ପ୍ରେମ ଓ ଏକତାର ମାର୍ଗ, ଅଥଚ ସାମ୍ପ୍ରଦାୟିକତା ରାଷ୍ଟ୍ରୀୟ ଏକତା ବିରୋଧୀ । ତେଣୁ ଆମେ ନିଜ ନିଜ ଧର୍ମକୁ ଆଦର କରି ପାଳନ କରିବା ଓ ଆଚରଣ କରିବା । ଏହା ଫଳରେ ଆମେ ଧର୍ମ ନିରପେକ୍ଷ, ଗଣତାନ୍ତ୍ରିକ ଓ ସାମ୍ୟବାଦୀ ରାଷ୍ଟ୍ରର ନାଗରିକ ହୋଇପାରିବା ।

(୭) ଜନ ଚେତନା ଓ ଜାତୀୟ ଚିନ୍ତନ ଏବଂ ଚେତନା ପାଇଁ ଜନଜାଗୃତି ଆବଶ୍ୟକ । ଏଥିପାଇଁ ଜନ ଆନ୍ଦୋଳନ ସୃଷ୍ଟି କରାଯିବା ଉଚିତ । ଚିନ୍ତନଶୀଳ ବିଚାରଗୋଷ୍ଠୀ ନିଜ ନିଜ ପରିସର ମଧ୍ୟରେ ଜାତୀୟ ଚରିତ୍ରର ବିକାଶ ପାଇଁ କାର୍ଯ୍ୟ କରିବା ଦରକାର ।



# ବିଶ୍ୱ, ବିଜ୍ଞାନ ଓ ବ୍ୟକ୍ତି

ବିଶ୍ୱ ଆଜି ଉଦ୍ଭାସିତ । ବିଶ୍ୱର ପ୍ରାଣ ନବଚେତନାରେ ଉନ୍ମୀଳିତ । ନବୀନ ଆଲୋକ ଓ ନବ ଦିଗନ୍ତ ବିଶ୍ୱକୁ ବିଭୋର କରିଛି । ଜାଗ୍ରତ ବିଶ୍ୱ ଉତ୍ତିଷ୍ଠତ, ପ୍ରାପ୍ୟ ବରାନ ନବୋଧତ । ଭୂମଣ୍ଡଳୀୟ ସହଯୋଗ ପାଇଁ ବଦ୍ଧପରିକର । ସହଯୋଗର ବିଶ୍ୱ ଏକ ସହଯୋଗୀ ପରିବାର ସ୍ୱପ୍ନକୁ ସାର୍ଥକ କରିବାରେ ପ୍ରୟାସୀ ।

ଏଥିରେ ବ୍ୟକ୍ତି ଅବହେଳିତ ନୁହେଁ । ବ୍ୟକ୍ତି-ସତ୍ତାର ସ୍ୱୀକୃତି ଓ ସମ୍ଭାବନା ଅଧିକ ଉଜ୍ଜ୍ୱଳ ହୋଇଛି । ସେ ଉପେକ୍ଷିତ ନୁହେଁ, ବରଂ ପୂର୍ଣ୍ଣ ମାତ୍ରାରେ ଅପେକ୍ଷିତ । ତା'ର ଅପ୍ରକଟ ସ୍ୱପ୍ନ ପ୍ରକଟିତ ହୁଏ ବିଶ୍ୱର ଏହି ନବ କଳେବରରେ । ସେ ଆଜି ବସୁଧୈବ କୁଟୁମ୍ବକମ୍‌ର ଦ୍ୱାରଦେଶରେ । ଯୁଗ ଯୁଗର ଏହି ଆକାଙ୍‌କ୍ଷା ପୋଥିବାଇଗଣ ଥିଲା, ଆଜି ଆଉଥରେ ବାଡ଼ି ବାଇଗଣ ହେବାରେ ଲାଗିଛି ।

ଆମ ନିଜ କଥା । ପିଲାମାନେ ଗଣିତ ପଢୁଥିଲେ, ଆଜି ମଧ ପଢୁଛନ୍ତି । କିନ୍ତୁ ସେ 'ଉଡ଼ାଙ୍କ ଫେଡ଼ାଙ୍କ' କାହିଁ ? କଡ଼ାଗଣ୍ଡା କ୍ରାନ୍ତିର କଡ଼ାକଡ଼ି ହିସାବ ଆଜିର ଶିକ୍ଷାର୍ଥୀଙ୍କୁ ଆଉ ଭୀତତ୍ରସ୍ତ କରୁ ନାହିଁ । ''ଚାଟମାନଙ୍କ ପ୍ରୟୋଜନ ଅର୍ଥେ'' ଯେଉଁ ଲୀଳାବତୀ ସୂତ୍ର ଥିଲା ତାହା ସେମାନଙ୍କ ପାଇଁ ଆଜି ଅପ୍ରୟୋଜନୀୟ, କିନ୍ତୁ ହୁଏତ ଗବେଷକଙ୍କ ପାଇଁ ପ୍ରୟୋଜନୀୟ । ତେଣୁ ସତରେ ସେତେବେଳେ ମଜାମଉଜ ପାଇଁ କୁହାଯାଉଥିଲା, ''ମଥା ମାଟି କରେ ବୋଲି ମେଥମେଟିକ୍‌ସ୍ ନାମ, ତା ପାଳେ ପଡ଼ିବ ଯିଏ ବୁଦ୍ଧି ତା'ର ବାମ'', ଆଜି ସେସବୁ ପାଠ ଥିଲେ ସେକଥା ନିରାଟ ସତ୍ୟ ହୋଇଥାନ୍ତା । ପୁଣି ଚାଟଙ୍କ ଉପରେ ଅବଧାନଙ୍କ ଛାଟ, ବୋଝ ଉପରେ ନଳିତାବିଡ଼ା ପରି । ସେବେଳ ଓ ପାଠ ଆଜି ଅକାମୀ ଓ ଅଚଳ । ପଣକିଆର ପ୍ରକୋପ ମଧ ନାହିଁ । ସାତ ଆଠ ସଂଖ୍ୟାର ମିଶାଣ, ଫେଡ଼ାଣ, ଗୁଣନ ଓ ହରଣ ଆଜି ଦେଖାଯାଉ ନାହିଁ, ଚାରି ପାଞ୍ଚ ସଂଖ୍ୟାର ଚାରିସୂତ୍ର ଫୁଟକି ମାତ୍ରକେ ଚଟକି ସରିଯାଉଛି ଏବର କାଲକ୍ୟୁଲେଟର, କମ୍ପ୍ୟୁଟର ଯୋଗୁଁ । ଶିକ୍ଷାର୍ଥୀର ମସ୍ତିଷ୍କ ପାଇଁ ଲାଘବ ହୋଇଛି, କିନ୍ତୁ ଏହା ଫଳରେ ଗାଣିତିକ ସମସ୍ୟା ସମାଧାନର ଶକ୍ତି ଛାତ୍ର ମନରେ ଅପରିସୀମ ହୋଇଛି । ସେବେଳର ମାନସିକ ବ୍ୟାୟାମ ଆଉ ଆମକୁ ଅସହାୟ କରୁନାହିଁ,

ପଲ୍ଲବେଶ ହେଉ ନାହିଁ, ବରଂ କଳନା ଓ କଳ୍ପନା ବଳରେ ଆମ ଶିକ୍ଷାର୍ଥୀ ସବୁଜିମା, ସଚେତତା ଓ ସତୃଷ୍ଣ ଜ୍ଞାନ ପିପାସାରେ ଅଗ୍ରଗାମୀ ହେଉଛନ୍ତି । ଏହା ଏକ ଉଦାହରଣ ମାତ୍ର, ଅଖଣ୍ଡ ଅମାପ ଚିନ୍ତନର ପରିସର ସପକ୍ଷରେ । ସମଗ୍ର ଶିକ୍ଷା ଓ ଶିକ୍ଷଣ ଜଗତରେ ଏହି ବୈପ୍ଳବିକ ପରିବର୍ତ୍ତନର ପ୍ରଭାବ ପରିଲକ୍ଷିତ ହୁଏ । ବ୍ୟକ୍ତିର ମନ ସବୁ ପ୍ରକାର ବାଡ଼ବତା ଓ ବନ୍ଧନରୁ ମୁକ୍ତ ହୋଇ ବ୍ୟକ୍ତିକୁ ଏକ ଉନ୍ମୁକ୍ତ ବେଳାଭୂମିରେ ଠିଆ କରାଇ ଦେଇଛି, ତା'ର ଦିଗ୍‌ବଳୟ ଓ ଦୃଷ୍ଟିକୋଣ ଅସୀମ ଓ ଅପ୍ରତିହତ ହେବାର ଲାଗିଛି ।

ଏହି ପରିପ୍ରେକ୍ଷୀରେ ଜଣ ଜଣ କରି ବ୍ୟକ୍ତିଙ୍କୁ ଏକତ୍ର କରି ସମାଜ ଚଳଣିର କିଆରି ମଧ୍ୟରେ ପୃଥକ୍ କରିନେବାର ପ୍ରୟାସ ଏକ ଅହଙ୍କାରୀ ଆସୁରିକ ଶକ୍ତିର ଆସ୍ଫାଳନ ପରି ମନେହୁଏ । ଆହୁରି ମଧ୍ୟ ବନ୍ଧନଯୁକ୍ତ ମନୁଷ୍ୟ ମାତା ବସୁନ୍ଧରାଙ୍କୁ ଜନନୀ କରି ଜନସମାଜକୁ କୁଟୁମ୍ବ କରିବା ସୁଯୋଗର ଚେର କାଟି ଦିଏ । ଯୁଗ ଯୁଗର ସାଧନା ଓ ସଂଗ୍ରାମ ଫଳରେ ତାହାର ପର୍ବତ ଉଚ୍ଚ ଉତ୍ତୁଙ୍ଗ ସିଦ୍ଧି ପାଣିରେ ବୁଦ୍‌ବୁଦ ପରି ମିଳାଇଯାଏ । ସତେ କଅଣ ମାନବି ସମାଜର ସଂସ୍କୃତି ଓ ସଭ୍ୟତାର ଇତିହାସ ଧାରାବାହିକ ଭାବରେ ପ୍ରତିହତ ପ୍ରଗତିର କାହାଣୀ ? ଟିକିଏ ଅପାଙ୍‌କ୍ତେୟ ଭାଷାରେ କହିଲେ, ଏହା କଅଣ ଗୋଦଡ଼ଗିରି ବା ତୈଳାକ୍ତ ସ୍ତମ୍ଭରେ ଆରୋହଣରତ ମର୍କଟର ମନ୍ଥର ସାଧନା ?

ଯାହାହେଉ, ପୂର୍ବସୂଚିତ ଏହି ପୃଥକୀକରଣ ପ୍ରୟାସଟିକୁ ଆମେ ଆଲୋଚନା କଲେ କଥାଟି ସ୍ପଷ୍ଟ ହୋଇଯାଏ । ସାମାଜିକ ମନୁଷ୍ୟକୁ ଆମେ ସ୍ୱତନ୍ତ୍ର ବ୍ୟକ୍ତି ଭାବରେ ଗ୍ରହଣ କରି ପାରିବାରିକ କରିବାପାଇଁ ମନ୍ତ୍ର ତନ୍ତ୍ର ଆଦି ନାନା ଉପଚାର ସୃଷ୍ଟି କରୁଛୁଁ । ସମାଜ-ବିଜ୍ଞାନୀମାନେ ଏହି ପ୍ରକ୍ରିୟାରେ ସାମିଲ ହୋଇ ଶିକ୍ଷା ଓ ସାମାଜିକୀକରଣ ତଥା ଶିକ୍ଷାରେ ସାମାଜିକୀକରଣ ବ୍ୟବସ୍ଥାକୁ ଅନୁଷ୍ଠାନ କରି ନେଇଛନ୍ତି । ପୁଣି ଏହି ପ୍ରକ୍ରିୟାର ସମ୍ପ୍ରସାରଣ କରି ସମାଜ, ଧର୍ମ, ଗୋଷ୍ଠୀ ଆଦି କରାଯାଇଛି । ରାଜନୈତିକ ସ୍ତରରେ ଭୌଗୋଳିକ ଓ ସାଂସ୍କୃତିକ ବେଢ଼ ଓ ବେଢ଼ା ତିଆରି କରି ରାଜ୍ୟ, ଦେଶ, ଜାତୀୟତା ଆଦି କରିଛୁଁ । ଆନ୍ତଃ ପ୍ରବେଶ ପାଇଁ ପ୍ରଶାସନିକ କଟକଣା କରିବା ସଙ୍ଗେ ସଙ୍ଗେ ସମାଧାନର ପନ୍ଥା ଜାରି କରାଯାଇଛି । ପୁନଶ୍ଚ ଜାତୀୟତା ଓ ବିଶ୍ୱବନ୍ଧୁତ୍ୱ ମଧ୍ୟରେ ବିରୋଧ ଏବଂ ସଦ୍ଭାବ ପ୍ରତିଷ୍ଠା ପାଇଁ କାଳାତୀତ ଓ ଅକଳଣା ସାଧନ କରି ଆସିଛୁଁ । ସେଥିପାଇଁ ଲିଗ୍ ଅଫ୍ ନେସନ ସଫଳ ହୋଇପାରି ନାହିଁ । ମିଳିତ ଜାତିସଂଘର ଅବିମିଶ୍ରିତ ସଫଳତାର କାହାଣୀ ନିରବଚ୍ଛିନ୍ନ ଓ କ୍ରମବର୍ଦ୍ଧିଷ୍ଣୁ ହେଉ ନାହିଁ । ବିଶ୍ୱକୁ ସଙ୍କଟ ବିମୁକ୍ତ ଓ ଶଙ୍କାବିରହିତ କରାଯାଇପାରିନାହିଁ । ବର୍ଣ୍ଣବୈଷମ୍ୟବାଦ ବିଭିନ୍ନ ରାଷ୍ଟ୍ର, ସମାଜ ଓ ଭୂଖଣ୍ଡରେ ସମ୍ପୂର୍ଣ୍ଣ

ନିର୍ମୂଳ ହୋଇନାହିଁ । ବିଶ୍ୱନିୟନ୍ତାଙ୍କ ସୃଷ୍ଟ ମାନବପ୍ରାଣ କଳଙ୍କ କାଳିମାରୁ ନିବୃତ୍ତି ପାଇପାରୁ ନାହିଁ । ଆମ ମନ ନାନା ଦିଗରୁ ଖୋଲା ହୋଇଯାଇଥିଲେ ହେଁ ଏହା ଯୁଗ ଯୁଗର ଆବର୍ଜନା ଓ ଅନ୍ଧବିଶ୍ୱାସକୁ ଖାଲି କରିପାରି ନାହିଁ ।

ଊନବିଂଶ ଶତାବ୍ଦୀରେ ଇଉରୋପୀୟ ଭୂଖଣ୍ଡର ବିଭାଜନୀକରଣ ବିଶ୍ୱ ଇତିହାସରେ ନୂତନ ଅଧ୍ୟାୟ ହୋଇ ରହିଛି । କଳ୍ପନାତୀତ କ୍ଷୁଦ୍ର ରାଷ୍ଟ୍ର ଗଠନର ପ୍ରକ୍ରିୟା ଯୋଗୁଁ ଉଗ୍ର ଜାତୀୟତାର ନଗ୍ନରୂପ ପ୍ରକାଶ ପାଇଛି । ଅନେକ ଦୃଷ୍ଟିରୁ ସମଗ୍ର ଇଉରୋପ ଊଣାଅଧିକେ ଏକ ରୂପ ହୋଇଥିଲେ ହେଁ ସଂକୀର୍ଣ୍ଣତା, ସ୍ୱାର୍ଥାନ୍ଧତା ଓ ସଙ୍କୁଚିତ ସ୍ୱାଭିମାନ ଯୋଗୁଁ ଇଉରୋପୀୟମାନେ ଯୁଦ୍ଧରତ ରହି ପରିଶେଷରେ ଯୁଦ୍ଧର ବିକଳ୍ପ ଭାବରେ ବିଭକ୍ତୀକରଣକୁ ମାନି ନେଇଛନ୍ତି । ଇଉରୋପରେ କ୍ଷୁଦ୍ର ରାଷ୍ଟ୍ରର ସଂଖ୍ୟା ଯେତେ ଅଧିକ ତାହା ଅନ୍ୟ ମହାଦେଶରେ ବିରଳ । ଏହି କ୍ଷୁଦ୍ରୀକରଣର ସ୍ୱାଭାବିକ ପରିଣତ ହେଉଛି, (୧) ରାଷ୍ଟ୍ରର ଆୟତନ କ୍ଷୁଦ୍ର ହୋଇଯିବାରୁ ଏହାର ଅର୍ଥନୈତିକ ବିକାଶ ସହଜସାଧ ହୋଇଛି । ଅଧିବାସୀଙ୍କ ଗଠନ ସମରୂପ ଓ ସେମାନଙ୍କ ସଂଖ୍ୟା କମ୍ ହୋଇଥିବାରୁ ଆଭ୍ୟନ୍ତରୀଣ ସଂହତି, ଚରିତ୍ର ଓ ଶୃଙ୍ଖଳା ଏକ ସମସ୍ୟା ନ ହୋଇ ବରଂ ଶକ୍ତିର ଉତ୍ସ ହୋଇଛି । ଏସବୁ ମାତ୍ର କେତୋଟି ସୁଯୋଗ । କ୍ଷୁଦ୍ରୀକରଣରେ ଅସୁବିଧା ଅନେକ ଅଛି । ତନ୍ମଧ୍ୟରୁ କେତୋଟି ହେଉଛି, (୨) ଭୌଗୋଳିକ ସୀମା ଅପେକ୍ଷାକୃତ ଦୀର୍ଘ ହୋଇଥିବାରୁ ଏହାର ସୁରକ୍ଷା ବ୍ୟୟବହୁଳ ହେବା ସ୍ୱାଭାବିକ । ସୀମାନ୍ତ ରାଷ୍ଟ୍ରଗୁଡ଼ିକର ସଂଖ୍ୟା ଅଧିକ ହେବା ହେତୁ ସୀମା ବିବାଦ ଲାଗି ରହିବା ସହଜ । ଏହି ବିବାଦ ପାଇଁ ପ୍ରସ୍ତୁତି ଦୃଷ୍ଟିରୁ ସାମରିକ ଶକ୍ତି ଠୁଳ କରିବା କର୍ତ୍ତବ୍ୟ ହୋଇପଡ଼େ । ରାଷ୍ଟ୍ରଗୁଡ଼ିକର ରାଜନୈତିକ ଓ ସାମାଜିକ ଦର୍ଶନ ଭିନ୍ନ ଭିନ୍ନ ହେବାରୁ ସାମରିକ ଓ ରାଜନୈତିକ ମେଣ୍ଟ ପ୍ରତିଷ୍ଠା କରିବାର ଆବଶ୍ୟକତା ଅନୁଭୂତ ହୁଏ । ଏଥିପାଇଁ ତଥା ସୀମାନ୍ତ ରାଷ୍ଟ୍ରଗୁଡ଼ିକ ସହିତ ସହଯୋଗ ସ୍ଥାପନ କରିବା ଲାଗି ବ୍ୟବସ୍ଥା କରିବାକୁ ପଡ଼େ । ସାଂସ୍କୃତିକ ଭାବଧାରା ଏକ ପ୍ରକାର ହୁଏ ଏବଂ ପ୍ରକୃତିର ବିଚିତ୍ର ବିଭିନ୍ନତା ପ୍ରାୟ ଅଦୃଶ୍ୟ ଓ ଅସ୍ପଷ୍ଟ ହୋଇଯାଏ । ତେଣୁ ସାଂସ୍କୃତିକ ବୈଚିତ୍ର୍ୟ ଉପଭୋଗ୍ୟ ହୁଏ ନାହିଁ । ସୁତରାଂ ଜୀବନର ଗତିରେ ସମ୍ଭାବନା, ସୃଷ୍ଟି ଓ ଅନୁଭବ ସ୍ଥାଣୁ ହୋଇଯାଏ । ପ୍ରାଣିକ ପରିତୃପ୍ତି ଓ ଉଲ୍ଲାସର ଆସ୍ୱାଦନ ପାଇଁ ପରିସର ସୀମିତ ହୁଏ । ଦିଗ୍‌ବଳୟ ତଥା ଦୃଷ୍ଟିକୋଣର ଅସୀମତା ଯେପରି ଉନ୍ମାଦନା ଆଣିଦିଏ ଓ ମନୁଷ୍ୟକୁ ଅଧୀର କରେ, ସସୀମତା ତାହା କରେ ନାହିଁ । ଏହିସବୁ କାରଣରୁ କ୍ଷୁଦ୍ର ରାଷ୍ଟ୍ରଗୁଡ଼ିକର ଅଧିବାସୀମାନେ ରାଷ୍ଟ୍ରାନ୍ତର ଭ୍ରମଣର ଆବଶ୍ୟକତା

ଅନୁଭବ କରନ୍ତି । ଏହି ସୁଯୋଗ ଦେବା ପାଇଁ ବ୍ୟବସ୍ଥା କରାଯାଏ । ଏ ପ୍ରକାର ସୀମିତ ସମୀକ୍ଷା ସ୍ପଷ୍ଟ କରି ଦିଏ ଯେ ଯେଉଁ ମନୁଷ୍ୟ ଦେଶ, କାଳ ନିର୍ବିଶେଷରେ ଜନ୍ମରୁ ମୁକ୍ତ, ନିର୍ବିକାର ଓ ଅସୀମତାର ଅଧିକାରୀ ଆମେ ତାକୁ ଧନ, ଧର୍ମ, ବର୍ଣ୍ଣ, ଲିଙ୍ଗ, ଭାଷା, ଅଞ୍ଚଳ, ଅହଙ୍କାର ଓ ସୀମା ସରହଦରେ ବାନ୍ଧି ଦେଇଛୁଁ । ସେ ମନୁଷ୍ୟ ବୋଲି ଆମେ ନ ଚିହ୍ନି ତା'ର ଅକ୍ଷାଂଶ ଓ ଦ୍ରାଘିମା ଠାବ କରିବାପାଇଁ ତାଙ୍କ ଦେହରେ ଅନେକଗୁଡ଼ିଏ ଦାଗ ଦେଇଛୁଁ । ଫରାସୀ ରାଷ୍ଟ୍ର ବିପ୍ଳବର ଅନ୍ୟତମ ନାୟକ ରୁଷୋ ସତରେ କହିଛନ୍ତି– "Man is born free, but he is everywhere in chains", ଯେ ମାତୃଗର୍ଭରେ 'କୋଽହମ୍' କହିଛି, ସେ ମର୍ତ୍ତ୍ୟମଣ୍ଡଳରେ କେବଳ 'ସ୍ୱଅହମ' କହି କାଳ କାଟୁଛି । ଯେ ଓଁ (ଅ+ଉ+ମ) କହିବାର ପ୍ରତିଜ୍ଞା କରିଛି, ସେ କେବଳ ମୁଁ (ମ+ଉ+ଅ)ର ମାଳା ଜପୁଛି । ଯେ ମାତୃଗର୍ଭର ଅମୁହାଁ ମନ୍ଦିରରେ ନିତ୍ୟ ସତ୍ୟକୁ ସ୍ମରିଛି ସେ ଚତୁର୍ମୁଖ ମନ୍ଦିରରେ ରୂପ, ରସ, ଗନ୍ଧ ଓ ଗୁଣର ଅନିତ୍ୟତାରେ ମଜ୍ଜିଯାଉଛି । ସେତିକି ନୁହେଁ, ଆମ ସାଧନାର ରହସ୍ୟ-ଏହି ଯେ ଏପରି ମନୁଷ୍ୟର ପୂର୍ବାବସ୍ଥା ଫେରାଇ ଆଣିବାପାଇଁ ନାନା ଭିଆଣ କରିଛୁଁ, ସେ ସବୁ ଭିତରୁ କେତୋଟି ହେଉଛି, ସାହିତ୍ୟ, ଶିକ୍ଷା, ଦୀକ୍ଷା, ସଂସ୍କୃତି, ଆଧ୍ୟାତ୍ମିକତା, ଜ୍ଞାନବିଜ୍ଞାନ, ସଭାସମିତି ଓ ସମାଲୋଚନା । ନିଷ୍ପାପ ଜୀବଟି ପାପ-ପଙ୍କରେ ପଡ଼ି ପୁନଶ୍ଚ ପବିତ୍ରାନନ୍ଦ ପାଇବାରେ ପ୍ରୟାସୀ ହେବାରେ ଲାଗିଛି । 'ଆତ୍ମ ଲୋକ'ରେ ଅନାତ୍ମ ଲୋକର ରିପୁକୁଳ ପ୍ରବେଶକରି ବିପ୍ଳବ କରୁଛି । ଅନ୍ୟ ପକ୍ଷରେ ତାକୁ ଅନନ୍ୟ କରିବାପାଇଁ ବହୁ ବାଛବିଚାରର ଭାବନା ଆମେ ଭର୍ତ୍ତି କରୁଛୁଁ । ଏହା ଫଳରେ ବିଶ୍ୱାତ୍ମା ଆଡ଼କୁ ହସ୍ତପ୍ରସାରିତ ବ୍ୟକ୍ତି ବିଶ୍ୱର ଆବାହନ କରି ନ ପାରି ସ୍ୱୀୟ ବକ୍ଷରେ ଛୁରିକା ଭୁଷି ଦେଉଛି । ଏକ ଭୟଙ୍କର ବିଡ଼ମ୍ବନା ନୁହେଁ କି ? ପରପରମାର୍ଥ ଭାବରେ ଆମେ ନିଜକୁ ଠାବ କରିପାରୁ ନାହିଁ । ଅଥଚ ''ଅୟଂ ନିଜଃପରୋବେତ୍ତି ଗଣନା ଲଘୁଚେତଷାଂ'' ରୀତିରେ ଆମେ ଲଘୁ ହେବାରେ ଲାଗିଛୁଁ । ଉଦାହରଣଟିଏ ନେବା । ମୁଁ ଜଣେ ପୁଅ, ମୋ ଭଉଣୀକୁ ଝିଅ ଭାବି ଦୂରେଇ ଦେଲି । ତାକୁ ହୀନ ଦୃଷ୍ଟିରେ ଦେଖି ମୋ ନିଜ ଆଖିରେ ନିଜକୁ ବଡ଼ କରିନେଲି । ଗର୍ବରେ ଫାଟି ପଡ଼ିଲି । ମା ବାପାଙ୍କର ସେହି ଦୃଷ୍ଟି ରହିଲା । ଝିଅ ପରଘରକୁ ଯିବ, କିନ୍ତୁ ମୁଁ କୁଟୁମ୍ବ ପୋଷିବି । ସେ ହେଲା ବାପାଙ୍କ ଗେହ୍ଲା ଓ ମୁଁ ଗୋଟାପଣେ ମା'ର । ମୁଁ ଆମ ଜାତିରେ ବାହା ହେଲି । ମୋ ଭଉଣୀ ଅନ୍ୟ ଜାତିରେ ବାହା ହେବାରୁ ଆମ ଘରୁ ବାସନ୍ଦ ହେଲା । ମୋ ରକ୍ତ ଶୁଦ୍ଧ ଓ ସ୍ୱଚ୍ଛ, କାରଣ ମୋର ବଡ଼ ଜାତିରେ ଜନ୍ମ । ଯେଉଁମାନେ ହୀନ କୁଳରେ ଜାତ, ସେମାନଙ୍କ ରକ୍ତ ଫିକା । ସାମ୍ରାଜ୍ୟବାଦ ହିଟଲର ଏହିପରି କହି ଦ୍ୱିତୀୟ ବିଶ୍ୱଯୁଦ୍ଧକୁ

ରଭ୍ରାନ୍ତ କରିଦେଲେ । ଏସବୁ ଆମ ଲାଳନପାଳନରେ ତ୍ରୁଟି ଓ ଏଥିଯୋଗୁଁ ଆମେ ସଂକୀର୍ଣ୍ଣମନା ହେଲୁଁ । ଈଶ୍ୱର ସୃଷ୍ଟିରେ ମନୁଷ୍ୟ ଶ୍ରେଷ୍ଠ ପ୍ରାଣୀ ଓ ତାର ଜନ୍ମ ଦୁର୍ଲ୍ଲଭ—ଏହି କଥାକୁ ଭୁଲିବା ପାଇଁ ଏକ ଷଡ଼ଯନ୍ତ୍ର କରାଯାଉଛି ବୋଲି ମନେହୁଏ ଏବଂ ପୁଣି ଏହାକୁ ଚେତାଇ ଦେବାପାଇଁ ଗୁଡ଼ାଏ ବିଧିବିଧାନ କରି ଚାଲିଛୁଁ । ମାଟି କଣ୍ଢାଇକୁ କଞ୍ଚାବେଳେ ମାଙ୍କଡ଼କରି ଗଢ଼ିସାରି ପୋଡ଼ କରିବା ପରେ ପୁଣି ମଣିଷ କରିବାକୁ ଚେଷ୍ଟା କଲେ ବିଫଳ ହେବାହିଁ ସାର ହୁଏ ।

ଏହି ପରିପ୍ରେକ୍ଷୀରେ ଆମେ ବିଜ୍ଞାନର ଭୂମିକା ବିଷୟରେ ଆଲୋଚନା କରିବା । ପାଶ୍ଚାତ୍ୟ ଜଗତରେ ଶହ ଶହ ବର୍ଷର ଓ ଆମ ଦେଶର ପ୍ରାୟ ଅର୍ଦ୍ଧଶତ ବର୍ଷର ପ୍ରଗତି ଆମ ପାଇଁ ଅଜସ୍ର ସୁଖ ସମ୍ଭୋଗ ସହଜଲଭ୍ୟ କରି ଦେଇଛି । ବହିଃ ଜଗତକୁ ଆମ ଆୟତ୍ତ ଓ ଅକ୍ତିଆରରେ ରଖିବାପାଇଁ ସାଧନ ଆମକୁ ମିଳିଛି । ମୁଦ୍ରଣ ଶିଳ୍ପର ପ୍ରକୃତି, ପ୍ରକାର ଓ ପ୍ରଗତି ଅଭୂତପୂର୍ବ ହୋଇଛି । ବିଶ୍ୱର ବିଭିନ୍ନ ରାଷ୍ଟ୍ର ଆମ ନଖଦର୍ପଣରେ ପ୍ରତିବିମ୍ବିତ ହୁଏ । ଏହାର ଭୂପ୍ରକୃତି, ସମସ୍ୟା, ଅଧିବାସୀ ଆଦି ଆମ ଦୈନନ୍ଦିନ ଜୀବନର ଅନୁଭୂତି ସାମଗ୍ରୀ ହୋଇଛି । ବ୍ୟକ୍ତି ବିଶ୍ୱ ଦରବାରରେ ଓ ବିଶ୍ୱ ବ୍ୟକ୍ତିର ଅନୁଭବରେ ଅତି ମାମୁଲି ବ୍ୟାପାର ହୋଇଯାଇଛି । ବେତାର, ଦୂରଦର୍ଶନ, ରେଡ଼ିଓ ଆଦି ଇଲେକ୍‌ଟ୍ରନିକ୍ ସଞ୍ଚାର ସାମଗ୍ରୀ ବିଜ୍ଞାନର ବରଦାନ । ସମଷ୍ଟି ଓ ବ୍ୟଷ୍ଟି ମଧ୍ୟରେ ବିରୋଧ ଓ ବ୍ୟବଧାନ ଆମ ପାଇଁ ସମସ୍ୟାର ବିଷୟ ହୋଇ ରହିନାହିଁ । ଗଣମାଧ୍ୟମର ସେବା ବ୍ୟକ୍ତିର ଦୃଷ୍ଟିକୋଣକୁ ସୁଦୂରପ୍ରସାରୀ କରିଛି ଓ ସେ ବିଶ୍ୱମୟ ହେବା ସଙ୍ଗେ ସଙ୍ଗେ ବିଶ୍ୱାତୀତ ଚିନ୍ତାର ଅଧିକାରୀ ହୋଇଛି । ପରିବହନର ଅତ୍ୟାଧୁନିକ ବିକାଶ ଆମକୁ ବିସ୍ମୟାଭିଭୂତ କରିଛି ଓ ବିଶ୍ୱବ୍ରହ୍ମାଣ୍ଡ ଆମ ପାଇଁ ଘର ବଖୁରିଏ ପରି ହୋଇଛି । ବିଜ୍ଞାନ କହିଲେ ଆମେ ସାଧାରଣତଃ ଏତିକି ବୁଝୁଁ ଓ ଏହି ସବୁ ବିଜ୍ଞାନର ମାତ୍ର କେତୋଟି ବରଦାନ, କିନ୍ତୁ ଅସାର ବିଜ୍ଞାନ ନୁହେଁ । ଆମର ବୈଜ୍ଞାନିକ ମନୋଭାବ ରହିବା ଉଚିତ । ଆମ ଜୀବନଯାପନ ପ୍ରଣାଳୀ ବୈଜ୍ଞାନିକ ହେବା ଆବଶ୍ୟକ । ବୈଜ୍ଞାନିକ ମୂଲ୍ୟବୋଧ ଆମ ଜୀବନର ପାଥେୟ ଓ ପଥପ୍ରଦର୍ଶକ ହେବା ଦରକାର । ପକ୍ଷପାତିତା, ମତାନ୍ଧତା ଓ ଅନ୍ଧାନୁସରଣରୁ ମୁକ୍ତ ବିଚାର ଓ ଆଚାର ବୈଜ୍ଞାନିକ ଜୀବନଯାପନର ଲକ୍ଷଣ । ତେଣୁ ଆମ ପାଇଁ ମୁକ୍ତ ମନର ଅନୁଶୀଳନ କରିବାକୁ ହେବ । ସତ୍ୟାନୁସନ୍ଧାନ ଓ ସତ୍ୟୋପଲବଧି ପାଇଁ ଆମେ ନିର୍ଭୀକ ଓ ନିରପେକ୍ଷ ହେବା । ସବୁ କଥା ସମସ୍ତ ଦିଗରୁ ପଚାରି ପର୍ଯ୍ୟବେକ୍ଷଣ କରିବାପାଇଁ ଆମେ ଧୈର୍ଯ୍ୟଶୀଳ ହେବା ଉଚିତ ଓ ଏହା ଫଳରେ ନିକଟ ଓ ଦୂର ତଥା ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ମଧ୍ୟରେ ସମ୍ପର୍କ

ଅନୁଭବ କରିପାରିବା । ସହିଷ୍ଣୁ ଓ ସହନଶୀଳ ହେବାର ସଦ୍‌ଗୁଣ ଆମେ ଅର୍ଜନ କରିବା । କାରିଗରି ବିଦ୍ୟା ଯୋଗୁଁ ଆମ ଉତ୍ପାଦନ ବୃଦ୍ଧି ପାଇବ ଓ ଏହି ଉତ୍ପାଦନ ବୃଦ୍ଧିର ସୀମା ଓ ବେଗ ବ୍ୟାହତ ହେବ ଯଦି ଆମେ ଏଥିଯୋଗୁଁ କେବଳ ଧନୀ, ମାନୀ ଓ ମତ୍ତଗର୍ବୀ ହେବାର ଲକ୍ଷ୍ୟ ରଖୁ । ଅନ୍ତିମ ଲକ୍ଷ୍ୟ ଭାବରେ ମାନବ କଲ୍ୟାଣ ଯଦି ଉତ୍ପାଦନ ବୃଦ୍ଧିର ନିୟାମକ ନହୁଏ ତେବେ ଆମ କଳ, ବଳ ଓ କୌଶଳ ସମତାଳରେ ଚାଲି ପାରିବ ନାହିଁ । କ୍ଳାନ୍ତି ଏସବୁକୁ ଜଡ଼ କରିଦେବ । ଅନ୍ୟ ଦିଗରୁ ବିଚାରକଲେ ଉତ୍ପାଦନ ବୃଦ୍ଧିକୁ ବିଜ୍ଞାନ ସମର୍ଥିତ କ୍ରମବର୍ଦ୍ଧିଷ୍ଣୁ କରିବାପାଇଁ କଞ୍ଚାମାଲର ଯୋଗାଣ ଓ ଉତ୍ପନ୍ନ ସାମଗ୍ରୀ ପାଇଁ ବିପଣୀ ଖୋଜିବାକୁ ପଡ଼ିବ । ଯେ କୌଣସି ଦେଶ ଏଥିଯୋଗୁଁ ବିଚ୍ଛିନ୍ନ ହୋଇ ରହିପାରିବ ନାହିଁ । ତେଣୁ ବିଜ୍ଞାନ ଓ କାରିଗରି ବିଦ୍ୟା ଯୋଗୁଁ ଉନ୍ନତ ଓ ସମୃଦ୍ଧ ଦେଶ ନିଶ୍ଚିତ ଭାବରେ ଆନ୍ତର୍ଜାତିକ ସହଯୋଗିତା ଏବଂ ପରସ୍ପର ନିର୍ଭରଶୀଳତା ବିନା ଚଳିପାରିବା ନାହିଁ । ବିଭିନ୍ନ ଦେଶ ମଧ୍ୟରେ ସହଯୋଗ ଓ ନିର୍ଭରଶୀଳତା ହେଉଛି ଆଜିର ବିଜ୍ଞାନ ଯୁଗରେ ଆବଶ୍ୟକତା । ବିଶ୍ୱର ରାଷ୍ଟ୍ରମାନଙ୍କ ମଧ୍ୟରୁ କୌଣସି ଗୋଟିକର ଦାରିଦ୍ର୍ୟ ଅନ୍ୟ ରାଷ୍ଟ୍ରଗୁଡ଼ିକର ଉପେକ୍ଷା, ଉଦାସୀନତା ଓ ଅବଜ୍ଞାର ଯେପରି ପରିଚାୟକ, ସମୃଦ୍ଧି ସେହିପରି ଅନ୍ୟମାନଙ୍କର ସାହାଯ୍ୟ, ସହଯୋଗ ଓ ସହାନୁଭୂତିର ସଙ୍କେତ ଅଟେ । ବିଜ୍ଞାନର ଅଗ୍ରଗତି ଏକ ସମୂହ ଆନ୍ଦୋଳନ ଓ ଏଥିରେ ବିଚ୍ଛିନ୍ନତାବଦର ସ୍ଥାନ ନାହିଁ । ଅଣୁ ଶକ୍ତି ହେଉଛି ବିଜ୍ଞାନର ବରିଷ୍ଠ ଅବଦାନ ଓ ପରାତ୍ପର ପରମେଶ୍ୱରଙ୍କର ମାନବ ସମାଜ ପ୍ରତି ଏକ ମହାନ୍ ଆଶୀର୍ବାଦ । ଅହିଂସ ସମାଜ ଓ ଇଉନିଭର୍ସର ନିର୍ମାଣରେ ଏହାହିଁ ଏକମାତ୍ର ଉପାଦାନ । କିନ୍ତୁ ଅଣୁଅସ୍ତ୍ର ସମଗ୍ର ବିଶ୍ୱବ୍ରହ୍ମାଣ୍ଡର ସମୂଳେ ଧ୍ୱଂସର କାରଣ ଓ କୁଚକ୍ରାନ୍ତକାରୀ, ସ୍ୱାର୍ଥପରାୟଣ ଓ ଅଦୂରଦର୍ଶୀ ବ୍ୟକ୍ତିବିଶେଷ ବା ରାଜନୈତିକ ଗୋଷ୍ଠୀର ଅଭିସନ୍ଧି । ରୋଗ, ଦାରିଦ୍ର୍ୟ, ଅଶିକ୍ଷା ଓ ସଂକୀର୍ଣ୍ଣତାମୁକ୍ତ ସମାଜ ପ୍ରତିଷ୍ଠାରେ ଅଣୁଶକ୍ତିର ଶାନ୍ତିପୂର୍ଣ୍ଣ ପ୍ରୟୋଗ କରାଯାଇପାରେ । ବିଜ୍ଞାନ ଓ କାରିଗରି ବିଦ୍ୟାର ଦ୍ରୁତ ବିକାଶ ଫଳରେ ସଞ୍ଚାର ସେବାର ଅଭୂତପୂର୍ବ ପରିବର୍ତ୍ତନ ଓ ପ୍ରଗତି ଘଟୁଛି । ଏସବୁ ଗଣମାଧ୍ୟମର ସମୁଚିତ ଉପଯୋଗ କରାଯାଇ ପାରିଲେ ବିଶ୍ୱ ସଚେତନ ବ୍ୟକ୍ତି ଓ ବ୍ୟକ୍ତିର ବିଭିନ୍ନତାରେ ବର୍ଣ୍ଣାଢ଼୍ୟ ବିଶ୍ୱ ସମ୍ଭବ ହେବ । ବସ୍ତୁତଃ ଆମେ ଏଥିରୁ ପାଇବା, ଯାହା ସ୍ୱାମୀ ବିବେକାନନ୍ଦଙ୍କ କଣ୍ଠରେ ନିନାଦିତ ହୋଇଥିଲା, ସମ୍ପ୍ରସାରଣ ହିଁ ବ୍ୟକ୍ତିର ଜୀବନ ଓ ସଙ୍କୋଚନ ହିଁ ମୃତ୍ୟୁ । ଏହି ସମ୍ପ୍ରସାରିତ ଜୀବନରେ ପ୍ରତ୍ୟେକ ପ୍ରାଣୀ ପାଇଁ ସମ୍ବେଦନଶୀଳ ସ୍ପନ୍ଦନ ରକ୍ତର ପ୍ରବାହ ତଥା ଶ୍ୱାସ ପ୍ରଶ୍ୱାସରେ ପ୍ରବାହିତ ହେବ । ଏଥିରେ ବିଶ୍ୱ ହେବ ମଧୁମୟ ଓ ବ୍ୟକ୍ତି ହେବ ଅମୃତର ସନ୍ତାନ ।

ଆଜି ପ୍ରାଗ୍-ଐତିହାସିକ ଯୁଗକୁ ପ୍ରତ୍ୟାବର୍ତ୍ତନ କଲେ ଋଷି କଣ୍ଠରୁ ନିଃସୃତ ହୁଏ "ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ" (ଋକ୍ ୧୦,୧୩,୧) ଅମୃତରୂପୀ ପରମ ପ୍ରଭୁଙ୍କ ସମସ୍ତ ସନ୍ତାନ ସମଗ୍ର ବିଶ୍ୱରେ ଶୁଣନ୍ତୁ । ବେଦବେଦାନ୍ତର ବାଣୀ ସମଗ୍ର ମାନବସମାଜ ପାଇଁ ଉଦ୍ଦିଷ୍ଟ । ରାଷ୍ଟ୍ର କହିଲେ ବିଶ୍ୱକୁ ବୁଝାଏ । ଏହି ବିଶ୍ୱ-ବାଣୀର ପ୍ରଭାବରେ ଆଜି ସୁଦ୍ଧା ଗ୍ରାମାଞ୍ଚଳର ନିରକ୍ଷର ଲୋକ "ଭୂମିମାତା, ମାଟିମା" କହି ଭୂମିକୁ କଳୁଷିତ କରିବାରୁ ନିବୃତ୍ତ ହୁଅନ୍ତି । ଏ ପ୍ରକାର ପ୍ରତିଧ୍ୱନିର ଉତ୍ସ ହେଉଛି, "ମାତା ଭୂମିଃ ପୁତ୍ରୋଽହଂ ପୃଥିବ୍ୟାଃ" (ଅଥର୍ବ ୧୨,୧,୧୨) ଅର୍ଥାତ୍ ଭୂମି ମୋର ମାତା, ମୁଁ ପୃଥିବୀର ପୁତ୍ର । ମହାନ୍ ଗୌରବର ବ୍ୟକ୍ତି, ସେ ସାମାନ୍ୟ ନୁହନ୍ତି, ସେ ଭୂମି ଚାଖଣ୍ଡକର ମନୁଷ୍ୟ ନୁହନ୍ତି । ସେ ମାନବ ସମାଜର ପୁଅ । ଯଜୁର୍ବେଦ (୧୪,୨)ରେ ମଧ୍ୟ କୁହାଯାଏ, "ସୀଦ ସଦନେ ପୃଥିବ୍ୟାଃ" ଅର୍ଥାତ୍ ପୃଥିବୀ ସଦନରେ ବାସ କର । ପୃଥିବୀ ମୋର ପରିବାର । ଆମ ସିଦ୍ଧ ସାଧୁ ଓ ସନ୍ଥ ପରମ୍ପରାରେ ଭୂମି ଆସନ ଓ ଭୂମି ଶଯ୍ୟା ଉପରେ ଗୁରୁତ୍ୱ ଦିଆଯାଇଛି । କ୍ଷର ଅକ୍ଷରର ଅତୀତ ଅକ୍ଷୟ ପୁରୁଷଙ୍କ ଉପଲବ୍ଧି ପାଇଁ ପ୍ରଥମ ସୋପାନ ଭାବରେ ଏହାକୁ ବିଚାର କରାଯାଏ । ବେଦ ବେଦାନ୍ତ ଅନୁସାରେ ଆମ ଉପାସ୍ୟ ହେଉଛନ୍ତି "ଅଣୋଃ ଅଣୀୟାନ୍,ମହତୋ ମହୀୟାନ" । ସେ ସର୍ବଭୂତେଷୁ ଗୂଢ଼ ଏକଃ ଦେବଃ, ସେ ଦୁଇ, ତିନି ବା ଅଧିକ ନୁହନ୍ତି । ଆମ ଉପାସନା ତଦନୁସାରେ "ସର୍ବେଽତ୍ର ସୁଖିନଃ ସନ୍ତୁ, ସର୍ବେଃ ସନ୍ତୁ ନିରାମୟାଃ, ସର୍ବେଃ ଭଦ୍ରାଣି ପଶ୍ୟନ୍ତୁ, ମା କଶ୍ଚିତ୍ ଦୁଃଖଭାକ୍ ଭବେତ୍ ।" ଏହି 'ସର୍ବେ' ଶବ୍ଦଟି କେବେହେଁ କେବଳ ଉପାସକ ପାଇଁ ବ୍ୟବହୃତ ହୋଇ ନାହିଁ । ଏହା ସାର୍ବଜନୀନ ସନାତନ ଓ ବ୍ୟାପକ ଅର୍ଥରେ ବ୍ୟବହାର କରାଯାଇଛି । ତେଣୁ ବୃକ୍ଷଲତା, ତରୁତୃଣ ସମେତ କୀଟପତଙ୍ଗାଦିଠାରୁ ଆରମ୍ଭ କରି ଦୃଶ୍ୟାଦୃଶ୍ୟ ପ୍ରାଣୀଙ୍କ ପାଇଁ ବ୍ୟବହାର କରାଯାଇଛି । ଈଶ୍ୱର ସୃଷ୍ଟିର ସବୁକିଛି ଏହି ପର୍ଯ୍ୟାୟଭୁକ୍ତ । ଉପାସକ ଯେତିକି କଳ୍ପନା କରିଛନ୍ତି ସେତିକିରେ 'ସର୍ବମୟ' ହୋଇ ତାଙ୍କ କଳ୍ପନାର ବାହାରେ ଯେଉଁମାନେ ଅଛନ୍ତି ସେମାନଙ୍କ ପାଇଁ 'ସର୍ବାତୀତ' ହୋଇଛନ୍ତି । ଏହି ଦୃଷ୍ଟିରୁ ଉପାସକଙ୍କ ପ୍ରସ୍ତୁତି ପାଇଁ ପ୍ରାର୍ଥନା କରାଯାଇଛି "ମିତ୍ରସ୍ୟ ମା ଚକ୍ଷୁଷା ସର୍ବାଣି ଭୂତାନି ସମୀକ୍ଷନ୍ତାମ, ମିତ୍ରସ୍ୟାହଂ ଚକ୍ଷୁଷା ସର୍ବାଣି ଭୂତାନି ସମୀକ୍ଷେ, ମିତ୍ରସ୍ୟ ଚକ୍ଷୁଷା ସମୀକ୍ଷା ମହେ ।" (ଯଜୁଃ ୩୬, ୧୮) ଅର୍ଥାତ୍ ସମସ୍ତ ପ୍ରାଣୀ ମୋତେ ମିତ୍ର ଚକ୍ଷୁରେ ଦେଖନ୍ତୁ, ମୁଁ ସମସ୍ତ ପ୍ରାଣୀଙ୍କୁ ମିତ୍ର ଚକ୍ଷୁରେ ଦେଖେ, ଆମ୍ଭେମାନେ ମିତ୍ର ଚକ୍ଷୁରେ ପରସ୍ପରକୁ ଦେଖୁ । ଏହା ଫଳରେ ରିପୁଗଣ ମିତ୍ର ମନୋଭାବାପନ୍ନ ହେବେ । ଅଧିକ ଦୃଷ୍ଟାନ୍ତ ନ ଦେଇ ବର୍ତ୍ତମାନ ପ୍ରଶ୍ନ କରାଯାଇପାରେ ଯେ ଆମ୍ଭେମାନେ ଆଜିକାଲି

ଏକାନ୍ତ ଅସୀମ ଓ ସଙ୍କୀର୍ଣ୍ଣ ହେଉଥିଲା ବେଳେ ପ୍ରାଚୀନ ଋଷିଗଣ କିପରି ଅସୀମ ଓ ସୀମାତୀତ ହେଲେ ? ସେମାନଙ୍କର ସେହି ଉପଲବ୍ଧି ଥିଲା । ସେମାନେ ଦିବ୍ୟଦ୍ରଷ୍ଟା ଥିଲେ । ଆତ୍ମସାକ୍ଷାତକାର କରିଥିଲେ । ଶ୍ରୀଅରବିନ୍ଦଙ୍କ ଭାଷାରେ ସେମାନେ "ନିଜକୁ ଅପୌରୁଷେୟ ଜ୍ଞାନର ପାତ୍ର ରୂପେ ପ୍ରଥମରୁହିଁ ପ୍ରସ୍ତୁତ କରିଥିଲେ ।"

ଆଧୁନିକ ଯୁଗରେ ଆମେ ଛଟପଟ ହେଉଛୁଁ । ବିଜ୍ଞାନର ଅସଲ ଦିଗକୁ ଛାଡ଼ି ଗୌଣ ଦିଗକୁ ଗୌରବ ଦେଉଛୁଁ । ଏକ ଚକଚକ ସଂସାର ଆମ ଆଗରେ ଭେଲିକି ଦେଖାଉଛି । ଏହା ଫଳରେ ଆମେ ବହିଃମୁଖୀ ହେଉଛୁଁ । ଏକ ବସ୍ତୁବାଦୀ ଦୁନିଆରେ ଜୀବନ ଯାପନ କରି ଅନ୍ତଃମୁଖିତା ହରାଇ ବସିଛୁଁ । ଯେତେ ଯାହା ହେଲେ ସୁଦ୍ଧା ରାଜନୈତିକ, ସାମରିକ ଓ ଅର୍ଥନୈତିକ ସ୍ତରରେ ମାନବିକ ମନୋଭଙ୍ଗି (human concern) ଆଡ଼କୁ ଅବସ୍ଥା ଚକ୍ରରେ ପଡ଼ି ବର୍ତ୍ତମାନ ଅଧିକରୁ ଅଧିକ ଦୃଷ୍ଟି ଦେବାକୁ ବାଧ ହେଉଛୁଁ । ଶାନ୍ତି, ମୈତ୍ରୀ ଓ ପ୍ରୀତିର ବିଶ୍ୱଚେତନା ଆମର ଏକମାତ୍ର ପନ୍ଥା ହେଉଛି । ଅଣୁ ଅସ୍ତ୍ରର ହ୍ରାସ ହେଉଛି ଓ ହେବ । ସେତିକି ନୁହେଁ ଅଣୁଅସ୍ତ୍ର ବିମୁକ୍ତ ବିଶ୍ୱକୁ ଏକ ବାସ୍ତବତାରେ ପରିଣତ କରିବାପାଇଁ ବିଶ୍ୱର ବୃହଦ୍ ରାଷ୍ଟ୍ର ଗୋଷ୍ଠୀ ଆଗ୍ରହ ପ୍ରକାଶ କରୁଛନ୍ତି । ଗୋଷ୍ଠୀନିରପେକ୍ଷ ଆନ୍ଦୋଳନର (NAM)ର ନିର୍ଦ୍ଦିଷ୍ଟ ଭୂମିକା ସ୍ୱୀକୃତି ଲାଭ କରୁଛି । ଜନସଂଖ୍ୟା ବିସ୍ଫୋରଣ, ପରିବେଶ ପ୍ରଦୂଷଣ ତଥା ପର୍ଯ୍ୟାବରଣ ସନ୍ତୁଳନ, ମାନବିକ ଅଧିକାର ଓ ମର୍ଯ୍ୟାଦା ଆଦି ବିଶ୍ୱସମସ୍ୟା ଆଜି ବିଭିନ୍ନ ରାଷ୍ଟ୍ରର ତଥା ବ୍ୟକ୍ତିର ସମସ୍ୟା ହୋଇଛି । ଶିଶୁ, ମହିଳା, ଯୁବକ ଆଦିଙ୍କ ସମସ୍ୟାକୁ କେନ୍ଦ୍ରକରି ବିଶ୍ୱସ୍ତରୀୟ ସଙ୍ଗଠନ ସୃଷ୍ଟି କରାଯାଇଛି ଓ ବିଶ୍ୱ ସଚେତନତା ପ୍ରକାଶ ପାଉଛି । ଶିକ୍ଷା, ସ୍ୱାସ୍ଥ୍ୟ, ପୁଷ୍ଟି, ଉତ୍ପାଦନ, ସଂସ୍କୃତି, ବିଜ୍ଞାନ, ଶାନ୍ତି ଆଦି ବ୍ୟକ୍ତି ତଥା ରାଷ୍ଟ୍ରର ଚିନ୍ତାର ବିଷୟ ହେବା ସଙ୍ଗେ ସଙ୍ଗେ ବିଶ୍ୱ ସଙ୍ଗଠନ ଓ ସମ୍ମିଳନ ମାଧ୍ୟମରେ ଉଦ୍‌ବେଗ ପ୍ରକାଶ ପାଉଛି ଓ ଉପାୟମାନ ସ୍ଥିର କରାଯାଉଛି । ବିଭିନ୍ନ ରାଷ୍ଟ୍ରର ସମ୍ପୃକ୍ତ ବିଶେଷଜ୍ଞମାନେ ବିଶ୍ୱ ଦରବାରରେ ଏକତ୍ର ହେଉଛନ୍ତି । ଏହି ଧାରାଟିକୁ ଅବରୁଦ୍ଧ କରିବା କାହାର ତାରାରେ ନାହିଁ । ରୁଷଦେଶ, ଜର୍ମାନ ଦେଶ, ଚୀନ ଦେଶ, ଦକ୍ଷିଣ ପଶ୍ଚିମ ଆଫ୍ରିକା, ଇଂଲଣ୍ଡ, ଆମେରିକା ପ୍ରଭୃତିରେ ମାନବିକ ଚେତନାର ସ୍ୱର କ୍ରମେ ସମୃଦ୍ଧ ହେବାରେ ଲାଗିଛି । ଅନଟନ-ଅବହେଳା ଓ ଅସ୍ପୃଶ୍ୟାଗ୍ରସ୍ତ ତଥା ଅଭାବ ଓ ଦୁର୍ଗତି ପ୍ରପୀଡ଼ିତ ଲୋକଙ୍କ ପାଇଁ ବିଶ୍ୱର ଜନଜୀବନ ଅଧିକ ଉନ୍ମୁକ୍ତ ହେବାରେ ଲାଗିଛି । ବ୍ୟକ୍ତି, ସମାଜ ଓ ରାଷ୍ଟ୍ର ମଧ୍ୟରେ ଚିରାଚରିତ ଶତ୍ରୁତା ଓ ଆବଦ୍ଧ ମନୋଭାବ ଆଜି ସହାବସ୍ଥାନ ଏବଂ ସହନଶୀଳତାରେ ପରିଣତ ହେଉଛି । ଯେ କୌଣସି ବିବାଦ ଆଜି ସମାଧାନ ଯୋଗ୍ୟ, ଏହି ବିଶ୍ୱାସ ଟାଣ ହେବାରେ ଲାଗିଛି ।

ଏପରିସ୍ଥଳରେ ଆମ ପରମ୍ପରାରେ ଆଚରିତ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱକୁ ପୁନଃ ଜାଗ୍ରତ କରିବା । ପିଣ୍ଡ ଓ ବ୍ରହ୍ମାଣ୍ଡର ହିତଦୃଷ୍ଟିରୁ ଏହା କରଣୀୟ । ତାହାହିଁ ପିଣ୍ଡ ପାଇଁ କରଣୀୟ ଓ ବରଣୀୟ ଯାହା ବ୍ରହ୍ମାଣ୍ଡ ବିଚାର ପାଇଁ ଅନୁକୂଳ । ସେଥିପାଇଁ କୁହାଯାଏ, ''ପିଣ୍ଡବ୍ରହ୍ମାଣ୍ଡ ଏକମତ'' । ଏଥିସହିତ ବିଜ୍ଞାନର ବିଚାରଧାରା ଓ ପଦ୍ଧତି ଆମର ଆଚରଣୀୟ ହେବା ଉଚିତ । 'ବିଦ୍ୱାନ୍ ସର୍ବତ୍ର ପୂଜ୍ୟତେ' ନ୍ୟାୟରେ ବିଦ୍ୟା ସର୍ବତ୍ର ଆଦରଣୀୟ । ଜନସେବାହିଁ ସକଳ ବିଦ୍ୟାର ଲକ୍ଷ୍ୟ । ବିଜ୍ଞାନର ଗତି ସେ ଦିଗରେ ସ୍ଥିର ନିଶ୍ଚିତ ହେବା ଆବଶ୍ୟକ । ଆଚରଣସିଦ୍ଧ ସନତକୁମାର ଯୁବକ ନାରଦଙ୍କ ଜୀବନର ଭାରାକୁ ଉଶ୍ୱାସ କରିଦେବାପାଇଁ ଆତ୍ମବିତ୍ ହେବାକୁ କହିଥିଲେ । ଏହି ସୂଚନା (Information) ବିସ୍ଫୋରଣର ଯୁଗରେ ଆମେ 'ମନ୍ତ୍ରବିତ୍' ହେଉଛୁଁ । ଅଧ୍ୟାତ୍ମବିଜ୍ଞାନହିଁ ବ୍ୟକ୍ତି ଓ ବିଶ୍ୱର ବ୍ୟବଧାନ ତଥା ବିରୋଧର ବିଲୋପ କରି ଉଭୟ ମଧ୍ୟରେ ସମତା ଓ ସହଯୋଗ ସ୍ଥାପନ କରିପାରିବ । ବିଷୟ ଦୃଷ୍ଟିରୁ ଆମର ଅତ୍ୟାଧୁନିକ ଗଣମାଧ୍ୟମଗୁଡ଼ିକ ବିଶେଷକରି ରେଡ଼ିଓ ଟେଲିଭିଜନ ଆଦି ସେଦିନର ବୁଢ଼ୀମାଉସୀର ହାଣ୍ଡି ମାଠିଆରେ ପରିଣତ ହେଲାଣି । ଏହି ବିଷୟାସକ୍ତି ଏଯୁଗର ଗୌରବ ନୁହେଁ । ବସ୍ତୁତଃ ଏହାହିଁ ଆତ୍ମବିଦ୍ୟା । ଆମ ଆଧୁନିକ ଗୌରବର ଗାଥା ଅଧ୍ୟାତ୍ମ ବିଦ୍ୟାର ଅଦୃଶ୍ୟ ସ୍ରୋତ ଉପରେ ବିକାଶ ଲାଭ କରିବ । ଆତ୍ମଜ୍ଞାନର ପରିପୂରକ ଭାବରେ ଆମକୁ ଭୌତିକ ଜ୍ଞାନ ଅର୍ଜନ କରିବାକୁ ହେବ ।



# ମାନବିକ ମୂଲ୍ୟବୋଧର ରୂପାୟନ

## (ସଂଗଠିତ, ସମଗ୍ର ଓ ସମନ୍ୱିତ ଆନ୍ଦୋଳନ ଅପେକ୍ଷାରେ)

ମନୁଷ୍ୟମାତ୍ରେ ହିଁ ମାନବିକ ସଦ୍‌ଗୁଣସମ୍ପନ୍ନ । ଏହା ସତେ ଯେପରି ତା'ର ଆଜନ୍ମ ସମ୍ପଦ । ସେ ପଶୁଠାରୁ ଭିନ୍ନ, ଅସୁରଠାରୁ ଅଲଗା । ପ୍ରବୃତ୍ତି ପରିଚାଳିତ ପଶୁପ୍ରାୟ ସେ ହୋଇପାରେ ନାହିଁ । କାମ-କ୍ରୋଧାଦି ରିପୁଗଣର ସେ ଅଧିକାରୀ । ତେଣୁ ସେପରି ପରିଚାଳିତ ନ ହୋଇ ଷଡ଼ରିପୁଙ୍କର ପରିଚାଳନା ସେ କରିଥାଏ । ଗର୍ବ, ଦର୍ପ, ଦମ୍ଭ, ଅହଂକାର, ବଡ଼ିମା ଏସବୁ ଆସୁରିକ ଶକ୍ତି । ଏହାଦ୍ୱାରା ସେ କବଳିତ ହେଲେ ତା'ର ବୁଦ୍ଧି, ବିବେକ ଓ ଜ୍ଞାନ ହଜିଯାଏ । ସେ ମୂଢ଼ ବିବେଚିତ ହୁଏ । ମନୁଷ୍ୟ ହିଁ ଏକମାତ୍ର ପ୍ରାଣୀ, ଶ୍ରେଷ୍ଠ ପ୍ରାଣୀ  ପରମେଶ୍ୱରଙ୍କ ସୃଷ୍ଟିରେ, ଯେ ଆସୁରିକ ଶକ୍ତିକୁ ନିଜ କବଳରେ ରଖିପାରେ, ଲଗାମ ଲଗାଇ ନିୟନ୍ତ୍ରଣ କରେ, ଉଭୟ ପଶୁତ୍ୱ ଓ ଆସୁରିକତାକୁ ସେ ଛାଟ ମାରି ନିଜକୁ ଶୂନ୍ୟ କରି ନେଇପାରେ, ମାନବିକତା ସେଠି ପୂର୍ଣ୍ଣରୂପେ ବିରାଜିତ ହୁଏ । 'ପଙ୍କଜ ଶୋଭଇ ଯଥା ପଙ୍କମୟ ସରେ'—ଏହା କବିଙ୍କର ଅନୁଭବ । ମନୁଷ୍ୟଠାରେ ଅସମ୍ଭବ ସମ୍ଭାବନା ସମ୍ଭବ ହୁଏ । ସେ ନିଜକୁ ସଂଯତ କରିପାରେ । ତେଣୁ ସେ ଜିତେନ୍ଦ୍ରିୟ ହୁଏ । ସମସ୍ତଙ୍କ ସହିତ ସେ ମିଳିମିଶି ସହନଶୀଳ ହୋଇପାରେ ।

ଜିତେନ୍ଦ୍ରିୟ ମନୁଷ୍ୟ ହୁଏ ନିରହଂକାର ଓ ଆଡ଼ମ୍ବରଶୂନ୍ୟ । ସମତା ଓ ମମତା ତାର ଭୂଷଣ ହୁଏ । କୂଟକପଟ ସେ କରିପାରେ ନାହିଁ । ସମସ୍ତଙ୍କୁ ସେ ଆପଣାର କରେ ଓ ସମସ୍ତେ ତା'ର ଆପଣାର ହୋଇଯାଆନ୍ତି । ସମସ୍ତ ବସୁଧାର ଅଧିବାସୀ ତା'ର କୁଟୁମ୍ବ ହୋଇଯାନ୍ତି । ବିଶ୍ୱମୈତ୍ରୀ ସେ କେବଳ ଘୋଷଣା କରେ ନାହିଁ, କାମରେ କରେ ତଥା ମନରେ ଚିନ୍ତା କରେ । 'ସର୍ବଜନ ହିତେ ରତାଃ ଓ ସର୍ବଜନ ସୁଖେ ରତାଃ'—ତା'ର ଆଚରଣ ଓ ଅଭ୍ୟାସରେ ପରିଣତ ହୁଏ । ଏକ ନିଭୃତ ସ୍ଥାନରେ ରହି ସୁଦ୍ଧା ସେ ବିଶ୍ୱକଲ୍ୟାଣକାମୀ ହୋଇପାରେ । ନିଜକୁ ବିପଦସଙ୍କୁଳ କରି ସୁଦ୍ଧା ସେ ଅନ୍ୟର ସେବା କରିପାରେ । ମାନବ ସେବା ତା'ପାଇଁ ମାଧବସେବା ହୁଏ । ନିରକ୍ଷର, ଚର୍ମଚକ୍ଷୁହୀନ ଭୀମଭୋଇଙ୍କ ଉଚ୍ଚାରଣ :

*"ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ*
*ଦେଖୁ ଦେଖୁ କେବା ସହୁ,*
*ମୋ ଜୀବନ ପଛେ ନର୍କେ ପଡ଼ିଥାଉ*
*ଜଗତ ଉଦ୍ଧାର ହେଉ ।"*

ଉପରୋକ୍ତ ଉକ୍ତିକୁ ମନୁଷ୍ୟ ନିଜ ଜୀବନରେ ସାକାର କରେ । ବିଭେଦ ମଧ୍ୟରେ ଅଭେଦତ୍ୱକୁ ଜୀବନର ଅଙ୍ଗୀଭୂତ କରେ । ଏ ସବୁ ସଦ୍‌ଗୁଣ ଓ ମୂଲ୍ୟବୋଧକୁ ଆଚରିତ କରି କହେ :

*"ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ ।"*

ଅନ୍ତରରେ ଭଜି ଭଜି ସତ୍ୟ ସଚେତନ କନ୍ଧ ଭୀମଭୋଇ ଗାଇଛନ୍ତି :

*"କହୁ ଅଛି ସମସ୍ତଙ୍କୁ,*
*ବ୍ରହ୍ମାଣ୍ଡକୁ ସମ୍ଭାଳ ସତ୍ୟଧର୍ମକୁ ।"*

ଜଙ୍ଗଲବାସୀ ଆଦିବାସୀ ପିଲାଟି ସତ୍ୟର ଡାକରା ଦିଅନ୍ତି ଜାତି, ଧର୍ମ, ବର୍ଣ୍ଣ, ଦେଶ ନିର୍ବିଶେଷରେ ସମସ୍ତଙ୍କୁ । ଧର୍ମ ହିଁ ସତ୍ୟ ଓ ସତ୍ୟ ହିଁ ଧର୍ମ । ପରାତ୍ପର ପରମାତ୍ମା ହୁଅନ୍ତି ସତ୍ୟ ଓ ସତ୍ୟ ହିଁ ପରମାତ୍ମା । ସତ୍ୟ ଓ ଅହିଂସାକୁ ଆୟୁଧ, ଆଶ୍ରୟ ଓ ଆଚରଣ କରି ଜାତିର୍ ଜନକ ମହାତ୍ମା ଗାନ୍ଧୀଙ୍କ ଦ୍ୱାରା ଚାଳିତ ସଂଗ୍ରାମରେ ପ୍ରବଳ ପରାକ୍ରମୀ ବ୍ରିଟିଶ ସାମ୍ରାଜ୍ୟବାଦୀ ସରକାର ହଟିଯାଏ । ସତ୍ୟାଗ୍ରହୀର ରଣ କୌଶଳରେ ସେ ହତପ୍ରଭ ପାଲଟିଯାଏ । ଦେଶ ଓ ବିଶ୍ୱରୁ ଉତ୍ପୀଡ଼ନ ଘୁଞ୍ଚାଇ ଦେବାର ଶପଥ ମହାତ୍ମାଜୀ ଗ୍ରହଣ କରନ୍ତି । ଘୃଣା ନୁହେଁ, ପ୍ରେମର ବିଜୟ ଘଟେ । ଜୀବ ପରମାତ୍ମା ହୋଇଯାଆନ୍ତି । ଏପରି ସବୁ ମୂଲ୍ୟବୋଧ ମାନବଜୀବନକୁ ଦେବୋପମ ଓ ଦେବାତୀତ କରିଛି ।

ବାୟାଚଢ଼େଇ ଦୋହଲୁଥାଏ ମଜାରେ । ତା'ବସାଟି ଅନନ୍ୟ କାରିଗରୀ କୌଶଳ । ବାୟା ପାଇଁ କାରିଗରୀ ଶିକ୍ଷା ଦିଆଯାଇଛି କି ? କୋଇଲିର କୁହୁତାନ କେଡ଼େ ମଧୁର ଓ ମନୋଲୋଭା । କୋଇଲି ଛୁଆ ପାଇଁ ସଙ୍ଗୀତ ବିଦ୍ୟାଳୟ ଖୋଲାଯାଇଛି କି ? ଶିଶୁ କଙ୍କି ନିରନ୍ତର ଉଡ଼ିବୁଲେ । ଏଥିପାଇଁ ଶିକ୍ଷକ ନିଯୁକ୍ତ ହୁଏ କି ? ବାୟା, କୋଇଲି ଓ କଙ୍କି ଜନ୍ମରୁ ଏପରି ହୋଇ ଜନ୍ମ ନିଅନ୍ତି । ମନୁଷ୍ୟ ବାଳୁତ କାଳରେ ଅସହାୟ ହୋଇ ଜନ୍ମ ନିଏ । ଏହା ଶିକ୍ଷାର ସମୟ । ଜନନୀ ଶିକ୍ଷକ ହୁଅନ୍ତି, ଦେଖି ଶୁଣି ଶିଶୁ ଶିକ୍ଷା କରେ । ତାଲିମପ୍ରାପ୍ତ ଶିକ୍ଷକ ମଧ ଥାଆନ୍ତି । ଖିଆପିଆ, ବେଶଭୂଷା, ଚାଲିଚଳନ, ଡିଆଁଡେଇଁ କରେ । ନାଚକୁଦ ଶିଖେ । ଅନୁକରଣ ମଧ କରେ । ଶିଶୁ ନମନୀୟ ଥାଏ । ବିକାଶ ସାଧନ କରେ । ଆଜୀବନ

ଏହି କାମ ଚାଲିଥାଏ । ଲାଳନପାଳନ ଶିଶୁ ଶିକ୍ଷାର ଅନ୍ତର୍ଭୁକ୍ତ । ସମନ୍ୱୟ ଘଟେ । ପରିବେଶ ସହିତ ଘାତ ପ୍ରତିଘାତ ମଧ୍ୟ ଚାଲେ । ପରିବାର, ପାଠଶାଳା, ପରିବେଶ ଓ ଶିଶୁ ବହୁଦିଗରୁ ପରସ୍ପର ମଧ୍ୟରେ ଏହି ଘାତ ପ୍ରତିଘାତ କ୍ରମେ କ୍ରମେ ଜଟିଳତର ହୋଇ ଉଠେ । ବାଲ୍ୟ, କୈଶୋର, ଯୌବନ, ବାର୍ଦ୍ଧକ୍ୟ ଏପରି ମୃତ୍ୟୁ ପର୍ଯ୍ୟନ୍ତ ବିଭିନ୍ନ ପ୍ରକାରରେ ରୂପାନ୍ତରୀକରଣ ଚାଲୁଥାଏ । ଏହିପରି ଭାବରେ ଶିକ୍ଷା ଜୀବନବ୍ୟାପୀ ଜୀବନ ପାଇଁ ଓ ଜୀବନଯାପନ ମାଧ୍ୟମରେ ଚାଲେ ।

ଅଧିକନ୍ତୁ ମନୁଷ୍ୟର ବୈଶିଷ୍ଟ୍ୟ ହେଉଛି, ସେ ହିଁ ମନନ କରିପାରେ । ଏଥିପାଇଁ ସେ ମସ୍ତିଷ୍କର ଅଧିକାରୀ । ତେଣୁ ହେତୁ-ଚେତା ରଖି ସେ ଗଭୀର ଭାବରେ ଚିନ୍ତନ କରିପାରେ, ବିଶ୍ଳେଷଣ ଓ ସଂଶ୍ଳେଷଣ କରିପାରେ, ସ୍ମରଣ ରଖି ନିଶ୍ଚିତ ଅନୁମାନ କରିବାକୁ ସମର୍ଥ ହୁଏ । ଏଥିସହିତ ହିତାହିତ ଶ୍ରେୟ ପ୍ରେୟ ନିତ୍ୟାନିତ୍ୟର ବିଚାରକରି ସିଦ୍ଧାନ୍ତରେ ଉପନୀତ ହୋଇପାରେ । ଏଣୁ ମାନବିକ ମୂଲ୍ୟବୋଧ କ୍ରମେ ପରିପୁଷ୍ଟ ଓ ବଳିଷ୍ଠ ହେଉଥାଏ, ଯେଉଁଥିପାଇଁ ସେ ନିଜ ଜୀବନ ବିସର୍ଜନ ପାଇଁ ପ୍ରସ୍ତୁତ ରହେ; ପ୍ରାଣ ଯାଉ ପଛକେ, ଯାହା ଜୀବନକୁ ସାର୍ଥକ କରିଛି ଓ କରୁଛି ସେହି ମୂଲ୍ୟବୋଧରେ ଭୂଷିତ ହୋଇ ରହିବ ।

ଏଠାରେ ଗୋଟିଏ ଆଧ୍ୟାତ୍ମିକ ପ୍ରଶ୍ନ ଉଠେ, ବହୁ ମନୀଷୀ ଯୁଗେ ଯୁଗେ ଏହି ପ୍ରଶ୍ନ ଉଠାଇଛନ୍ତି ଓ ନିଜ ସାଧନାରେ ସିଦ୍ଧି ଲାଭକରି ମହାନ୍ ସାଧକ ଭାବରେ ଇତିହାସର ପୃଷ୍ଠା ମଣ୍ଡନକରି ଏହାର ଉତ୍ତର ଦେଇଛନ୍ତି । ମନୁଷ୍ୟକୁ କିଏ କାହିଁକି ଏହି ସଂସାରକୁ ପଠାଇଛନ୍ତି ? ସେ କାହାର ପୁତ୍ର ଓ କିଏ ତାଙ୍କର ପୁତ୍ର, କନ୍ୟା, ସହୋଦର ଓ ଆତ୍ମୀୟ ବାନ୍ଧବ ? ପ୍ରଭୁ ପରମାତ୍ମାଙ୍କ ଦ୍ୱାରା ପ୍ରେରିତ ଏହି ମାନବ; ଧନ, ଦାରା, ସୁତ ଆଦି ସବୁକିଛି ଓ ସମସ୍ତ ତାଙ୍କ ଦାନ । ତାଙ୍କଠାରେ ନିତ୍ୟ, ବାରମ୍ବାର, ସର୍ବଦା ସମର୍ପିତ ହୋଇ ରହିବା ମନୁଷ୍ୟର ଧର୍ମ ଓ କର୍ମ । ଭାଗବତକାର ଜଗନ୍ନାଥ ଦାସଙ୍କର ଦୁଇଟି ଧାଡ଼ି ଏଠାରେ ସ୍ମରଣୀୟ :

*''ଧନ୍ୟ ଜୀବନ ଏ ଜଗତେ*
*ଯେ ପ୍ରାଣଧରେ ପର ହିତେ ।''*

ବ୍ୟାସଦେବ ମଧ୍ୟ ଅଷ୍ଟାଦଶ ପୁରାଣାଦି ରଚନାକରି ଏହାର ସାର ସଂକ୍ଷିପ୍ତ ଦୁଇଟି ବଚନ ସମଗ୍ର ମାନବସମାଜ ପାଇଁ ଶାଶ୍ୱତ ସତ୍ୟ ଭାବରେ ସିଦ୍ଧାନ୍ତ ଦେଇଛନ୍ତି :

*''ପରୋପକାରାୟ ସ୍ୱର୍ଗାୟ,*
*ପାପାୟ ପରପୀଡ଼ନମ୍ ।''*

କଥା, କାମ ଓ ଚିନ୍ତାରେ ଅନ୍ୟକୁ ଯନ୍ତ୍ରଣା ଦେବା ପାପ । ଏହି ପାପରୁ ରକ୍ଷା ପାଇଁ ମହାତ୍ମା ଗାନ୍ଧୀ ''ଖରାପ କଥା ଶୁଣିବି ନାହିଁ, ଖରାପ କାମ ଦେଖିବି ନାହିଁ, ଖରାପ ବାକ୍ୟ ଉଚ୍ଚାରଣ କରିବି ନାହିଁ'', ଏହି ଶପଥର ବ୍ରତ ଜାରି ରଖିବା ଉଦ୍ଦେଶ୍ୟରେ ତିନିଗୋଟି ମାଙ୍କଡ଼ ମୂର୍ତ୍ତି ରଖିଥିଲେ । ଗୋଟିକର ଆଖି ଉପରେ ହାତ, ଅନ୍ୟଟିର କାନ ଉପରେ ଓ ଅବଶିଷ୍ଟଟିର ପାଟି ଉପରେ ହାତ ରହିଥିଲା । ପକ୍ଷାନ୍ତରେ, ଭୋକିଲା ମଣିଷଟିକୁ ନିଜ ଖାଇବାରୁ କାଟି ମୁଠାଏ ଦେବା, ଶୋଷିଲା ବ୍ୟକ୍ତିକୁ ଟୋପାଏ ପାଣି ନିଜ ମାଠିଆରୁ ଦେବା, ଶୀତରେ ଥରୁଥିବା ମଣିଷଟିର ପିଠି ଉପରେ ନିଜ କପଡ଼ାରୁ ଖଣ୍ଡେ ଢାଙ୍କି ଦେବା, ବର୍ଷା ଢୁ ଢୁ ପଡୁଥିଲାବେଳେ ନିଜ ପିଣ୍ଡାରେ ସାମୟିକ ଆଶ୍ରୟଦେବା ଆଦି ହେଉଛି ପୁଣ୍ୟ । ଏଠି କଠିନ ହୃଦୟକୁ କୋମଳ କରାଯାଉଛି, ତ୍ୟାଗ ସହିବାକୁ ପଡୁଛି । ଅନ୍ୟ ଜଣେ ଆଶ୍ରୟ, ଭରସା ଓ ଶାନ୍ତି ପାଇବାର ଦେଖି ଆମ ମନରେ ଆନନ୍ଦ ଆସୁଛି । ଏହି ସବୁ ତ ମୂଲ୍ୟବୋଧ, ଯାହାର ନିଦର୍ଶନ ମଣିଷ ନିଜର ଦୈନନ୍ଦିନ କାମରେ ଦେଖାଇ ନିଜ ମନୁଷ୍ୟତାର ପ୍ରମାଣ ଦେଉଛି ।

ଈଶୋପନିଷଦରେ 'ତେନ ତ୍ୟକ୍ତେନ ଭୁଞ୍ଜୀଥା' କୁହାଯାଇଛି । ତ୍ୟାଗରେ ଭୋଗ, ଆନନ୍ଦ ଓ ଶାନ୍ତି । ସଂସ୍କୃତ ସାହିତ୍ୟରେ ମୂଲ୍ୟବୋଧର ଭଣ୍ଡାର ନିହିତ ଅଛି । ଏ ସବୁ ଆମ ଉଜ୍ଜ୍ୱଳ ପରମ୍ପରା । ଆମ ଐତିହ୍ୟ ପଥଭ୍ରଷ୍ଟ ମନୁଷ୍ୟକୁ ଆଲୋକ ଦେଖାଏ । ଜୀବନଯାତ୍ରାର ମାର୍ଗ ସେ ପାଏ । ମାର୍ଗରେ ରହିବାର ବ୍ରତ ସେ ପୋଷଣ କରେ । ସମୟ ଏପରି ହେଲା । ଆମ ଦେଶ ପରାଧୀନ ହୋଇ ରହିଲା ଦୀର୍ଘକାଳ । ଏହାଫଳରେ ଆତ୍ମବିଶ୍ୱାସ, ଆତ୍ମନିୟନ୍ତ୍ରଣ ଓ ଆତ୍ମନିର୍ଭରଶୀଳତା ଯାହାକି ମାନବିକ ମୂଲ୍ୟବୋଧ ଓ ମନୁଷ୍ୟର ଅଧିକାର, ଏ ସବୁକୁ ମନୁଷ୍ୟ ହରାଇ ବସିଲା ବା ଏସବୁ ସଙ୍କୁଚିତ ହୋଇଗଲା । ଅଧିକ ସଂଖ୍ୟାରେ ନିରକ୍ଷର ଲୋକେ ରହିଲେ । ଅଣଅକ୍ଷରର ଜ୍ଞାନକୁ ଛାଡ଼ି ଆମେ ଅକ୍ଷର ଜ୍ଞାନକୁ ଜାବୁଡ଼ି ଧରି ସାକ୍ଷର ହେବାର ଡିଣ୍ଡିମ ବଜାଇ ବସିଲୁ । ନୈତିକବଳ ଯାହାକି ଅନ୍ୟତମ ମୂଲ୍ୟବୋଧ ତାକୁ ହରାଇ ଦେଲୁ । ନୀତିନିଷ୍ଠର ବିରତ୍ୱ ଓ କାପୁରୁଷର ବୀରତ୍ୱ ମଧରେ ଆକାଶ ପାତାଳ ପ୍ରଭେଦ । ପରାଧୀନତା ଏକ ଦୁର୍ଦ୍ଦଶା । ଏହି ଦୁଃସମୟରେ ଆମେ ଜ୍ଞାନ, ବୁଦ୍ଧି ଓ ବିବେକକୁ ହରାଇ ବସିଲୁ । ଏ ତ ମନୁଷ୍ୟତା, ତେବେ ଆଉ ରହିଲା କ'ଣ ?

ଏତେବେଳେ ଦେଶରେ ମୁକ୍ତି ସଂଗ୍ରାମ ଚାଲିଲା । ମହାନାୟକ ମହାତ୍ମା ଗାନ୍ଧୀ ଆମର କର୍ଣ୍ଣଧାର ହେଲେ । ସତ୍ୟାଗ୍ରହ, ଅହିଂସା, ନୈତିକଶକ୍ତି, ତ୍ୟାଗ ଆଦି ମାନବିକ ମୂଲ୍ୟବୋଧର ପ୍ରୟୋଗ ଦକ୍ଷିଣ ଆଫ୍ରିକାରେ କରି ସାରି ନିଜ ମାତୃଭୂମିରେ ଓ ବିଶ୍ୱବକ୍ଷରେ ଏହାର ବ୍ୟାପକ ପ୍ରୟୋଗ କଲେ । ଭାରତ ଆତ୍ମାନୁସନ୍ଧାନରେ ସେ ବିଶ୍ୱାତ୍ମା ଅନୁଭବ

କରନ୍ତି । ତେଣୁ ମୁକ୍ତି ସଂଗ୍ରାମର ରଣ-କୌଶଳ ବିଶ୍ୱରୁ ଦାରିଦ୍ର୍ୟ, ଉତ୍ପୀଡ଼ନ, ଶୋଷଣ ଓ କଷଣ ଦୂର କରିବାରେ ସହାୟକ ହୋଇଛି । ସତ୍ୟ, ଅହିଂସା ଓ ପ୍ରେମ ଆଧାରିତ ଏହି ରଣ-କୌଶଳର ବିଶ୍ୱବ୍ୟାପୀ ସଫଳ ପ୍ରୟୋଗ କରାଯାଇଛି । ସତ୍ୟ ହେଉଛି 'ଏକୋଽହଂ ବହୁସ୍ୟାମ' ଏହାଛଡ଼ା 'ନାୟମାତ୍ମା ବଳହୀନେନ ଲଭ୍ୟ' । ତେଣୁ ମହାତ୍ମାଙ୍କୀ ଦଣ୍ଡାୟମାନ ହୁଅନ୍ତି ନୈତିକ ବଳରେ । 'ପରଧନ ନ ଛୁଅଁ ହାତରେ ଓ ପରସ୍ତ୍ରୀ ମାତରେ' ଏହାକୁ ସେ କାୟମନୋବାକ୍ୟରେ ପାଳନ କରନ୍ତି । ମୂଳକଥାଟି ହେଉଛି, 'ପରଦ୍ରବ୍ୟେଷୁ ଲୋଷ୍ଟ୍ରବତ୍, ପରଦାରେଷୁ ମାତୃବତ୍' । ନିଜ ଆଚରଣରୁ No greed but need ଅର୍ଥାତ୍ ଲୋଭ ବର୍ଜନ କରି ଆବଶ୍ୟକତା ଅନୁରୂପ ଗ୍ରହଣ କରିବା । ବସ୍ତୁତଃ ଭାରତୀୟ ଐତିହ୍ୟର ପ୍ରୟୋଗଶାଳା ହୁଏ ମହାତ୍ମାଙ୍କୀଙ୍କର ମାର୍ଗଦର୍ଶନରେ ପରିଚାଳିତ ମୁକ୍ତିସଂଗ୍ରାମ—ଏକ ଜନ ଆନ୍ଦୋଳନ । ବିଶୁଦ୍ଧତା, ସ୍ୱଚ୍ଛତା, ଅନାବିଳତା ଓ ସହୃଦୟତାର କଷଟିପଥରରେ ଉଭୟ ଉଦ୍ଦେଶ୍ୟ ଓ ଉପାୟ ପରୀକ୍ଷିତ ହୁଏ । 'ସତ୍ୟସନ୍ଧାନ ମାର୍ଗରେ ମୋ ପରୀକ୍ଷା' ହେଉଛି ଯଥାର୍ଥତଃ ତାଙ୍କ ଆତ୍ମକଥା ।

ସଂଗ୍ରାମ ତେଣୁ ସଫଳ ହୁଏ ଓ ଦେଶବାସୀ ସ୍ୱାଧୀନତା ଲାଭ କରନ୍ତି । ରାଷ୍ଟ୍ରୀୟ ପ୍ରତୀକ, ସଙ୍ଗୀତ ଓ ସମ୍ବିଧାନ ବହନ କରନ୍ତି ଆମ ଐତିହ୍ୟର ପରୀକ୍ଷିତ ମୂଲ୍ୟବୋଧଗୁଡ଼ିକୁ । ନ୍ୟାୟ, ସମାନତା, ଭ୍ରାତୃତ୍ୱ, ଗଣତନ୍ତ୍ର, ସାର୍ବଭୌମତ୍ୱ, ଧର୍ମନିରପେକ୍ଷତା, ଜନକଲ୍ୟାଣ ଆଦି ଦିଗରେ ସମ୍ବିଧାନର ପୂର୍ବାଭାସ ସମର୍ପିତ ହୁଏ । ତଦନୁସାରେ ପଞ୍ଚବାର୍ଷିକ ଯୋଜନା କାର୍ଯ୍ୟକାରୀ କରାଯାଏ ଦେଶବାସୀଙ୍କର ସର୍ବୋତ୍ତମ ବିକାଶ ପାଇଁ । ସମ୍ବିଧାନର ସଂଶୋଧନ ଅଶୀରୁ ଅଧିକ ଥର କରାଯାଇ ସାରିଛି ଓ ଏହାକୁ କାର୍ଯ୍ୟକାରୀ କରିବା ପାଇଁ ଉଦ୍ୟମ ଚାଲୁ ରହିଛି । ତଥାପି ସମ୍ବିଧାନର ଅଙ୍ଗୀକାର ଅନେକାଂଶରେ ଅସଂପୂର୍ଣ୍ଣ ରହିଛି ।

ଇତ୍ୟବସରରେ ଜାତିର ଜନକ ମହାତ୍ମା ଗାନ୍ଧୀ ଆତ୍ମବଳି ଦାନ ଦିଅନ୍ତି ଆତତାୟୀର ଗୁଳି ଚୋଟରେ ।

*''ଈଶ୍ୱର ଆଲ୍ଲା ତେରେ ନାମ,*
*ସବ୍‌କୋ ସନମତି ଦେ ଭଗବାନ୍ ।''*

ଧର୍ମନିରପେକ୍ଷତାର ଏହି ଧ୍ୱନି ଉଚ୍ଚାରଣ କରୁ କରୁ ଆତତାୟୀକୁ କ୍ଷମା ଦେବାକୁ କହୁଥିବାବେଳେ ସେ ଶେଷନିଃଶ୍ୱାସ ତ୍ୟାଗ କରନ୍ତି । ମାନବିକ ମୂଲ୍ୟବୋଧର ମୂର୍ତ୍ତିମନ୍ତ ପ୍ରତୀକ ମହାତ୍ମା ଗାନ୍ଧୀ ଦେଶ ଓ ବିଶ୍ୱକୁ ସେହି ମୂଲ୍ୟବୋଧର ଟେକ ରଖି ପାର୍ଥିବ ଶରୀରକୁ ଛାଡ଼ି ଅମରଧାମକୁ ଗତି କରିଛନ୍ତି । ଭାରତର ପ୍ରଥମ ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ,

ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ, ମୌଲନା ଆବୁଲ୍ କାଲାମ ଆଜାଦ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ ପ୍ରମୁଖ ତାଙ୍କର ସହକର୍ମୀଗଣ ମଧ୍ୟ ସଂସାରରୁ ବିଦାୟ ନେଇଯାଇଛନ୍ତି । ଦେଶ ବିଦେଶର ଗାଁ ଗଣ୍ଡା, ଗିରିବନ, ସହରାଞ୍ଚଳର ନରନାରୀ ଗାନ୍ଧୀମାର୍ଗୀ ସତ୍ୟ-ଅହିଂସାର ପୂଜକ ଦେଶପ୍ରେମୀମାନେ କାଳର ଗତିରେ ଇହ ଜଗତରେ ନାହାନ୍ତି । ସେମାନଙ୍କ ମଧ୍ୟରୁ ଯେଉଁ ମୁଷ୍ଟିମେୟ ସ୍ମରଣୀୟ ବ୍ୟକ୍ତିମାନେ ଜୀବିତ ଅଛନ୍ତି ସେମାନେ ଜୀବନ ସହିତ ଶେଷ ସଂଗ୍ରାମ କରୁଛନ୍ତି । ମୂଲ୍ୟବୋଧର ଅବକ୍ଷୟରେ ତୀବ୍ର ଜ୍ୱାଳା ଅନୁଭବ କରୁଥିଲେ ହେଁ ନ୍ୟାଯ୍ୟ ପଥରେ ସେମାନେ ଅବିଚଳିତ ଅଛନ୍ତି । କିନ୍ତୁ ବେଳକୁ ବେଳ ଅବକ୍ଷୟର ଦ୍ୱାର ଅଧିକରୁ ଅଧିକ ମେଲା ହେବାରେ ଲାଗିଛି ।

ଗୋଟିଏ ଦାବି ଉପସ୍ଥାପନ କାଳରେ ଅନୁରୂପ ଦାୟିତ୍ୱ ସମ୍ପାଦନ ନ କରି, ଦାବି ସଇତାନର ଭୂମିକାରେ ସବୁକୁ ମାଡ଼ି ବସୁଛି । କଥା ଓ କାମ ମଧ୍ୟରେ ସମାନୁପାତିକତା ରକ୍ଷା ନ କରି, କଥା ହିଁ ରାଜତ୍ୱ କରୁଛି । କାମ ଦେଖା ନାହିଁ କହିଲେ ଚଳେ । ରାଜନୀତି ନୀତିଶ୍ରେଷ୍ଠ ବା ଉତ୍କୃଷ୍ଟ ନୀତି ନ ହୋଇ ନିକୃଷ୍ଟତାର ଆସନ ଅଳଂକୃତ କରୁଛି; ସେବାର ମାଧ୍ୟମ ନ ହୋଇ ଦେବା ନେବାରେ ପରିଣତ ହୋଇଛି; ସ୍ୱାର୍ଥସିଦ୍ଧିର ବଳିଷ୍ଠ ଆୟୁଧ ହୋଇ ଯାଉଛି । କ୍ଷମତାଲୋଭର ହାତବାରିସି ହେବାରେ ଲାଗିଛି । କଳିକାଳକୁ ଲକ୍ଷ୍ୟ କରି ଅନ୍ଧ କନ୍ଧକବି ଭୀମଭୋଇ ଧନମଦ, ପଣମଦ, ମାୟାମଦ ଓ ସ୍ତ୍ରୀମଦର ଉଲ୍ଲେଖ କରିଛନ୍ତି । ଆଜି ଏଥିସହିତ ବୋତଲର ମଦ ଓ କ୍ଷମତାର ମଦକୁ ସାମିଲ କରାଯାଇଛି । ଏ ସବୁ ଏକରୁ ଆରେକ ବଳୀୟାର । ବିଜ୍ଞାନର କରାମତିରୁ ମଦ ବହୁବିଧ ହେବାରେ ଲାଗିଛି । ମାୟାମଦର ଜାଲ ଆମକୁ ଅନ୍ଧ କରି ଦେଉଛି—ପ୍ରତିଟି ମୂହୂର୍ତ୍ତ ଆମକୁ ବେଢ଼ିଛି । ସ୍ୱପ୍ନ, ଶୟନ ଓ ଜାଗରଣରେ ମଧ୍ୟ ଛାଡୁ ନାହିଁ । ଜୁଆ, ପଶା ଆଦି ସେ ବେଳରେ ରଜା ରାଜୁଡ଼ା ଏଥିରେ ମାତୁଥିଲେ । ଆଜି କଥା କଥାକେ ମଦ ବାଜି ଲଗାଇ ଦେଉଛୁ । ସ୍ତ୍ରୀମଦର ଯାଦୁକରୀ ପ୍ରଭାବ ଆମ ଆଗରେ କୁହେଳିକା ସୃଷ୍ଟି କରୁଛି । ନାରୀକୁ ଜନନୀ, ଜାୟା ଓ ଭଗିନୀ ରୂପରେ ଦେଖିବାର ସୁଯୋଗ ନାହିଁ । ସେ ଯେ ନରକର ଦ୍ୱାର ବୋଲି କୁହାଯାଉଥିଲା ସମ୍ଭବତଃ ଆଜି ତାହା ପ୍ରତ୍ୟକ୍ଷୀଭୂତ । ଧନର ମଦ ସବୁ ମଦର ମୂଳ ହୋଇଛି । ସେଥିପାଇଁ ବହୁକାଳ ପୂର୍ବରୁ ଆଦି ଶଙ୍କରାଚାର୍ଯ୍ୟ ଗୃହୀମାନଙ୍କୁ ସତର୍କ କରିଦେଇଛନ୍ତି । ବ୍ରହ୍ମପଦରେ ଭରସା ରଖିବା ପାଇଁ ଧନ, ଜନ, ଯଉବନର ଗର୍ବ କରିବ ନାହିଁ । ନିମିଷକ ମଧ୍ୟରେ କାଳ ଏ ସବୁ କଳନା କରି ଅପହରଣ କରି ନିଏ । ଏ ସବୁ ମହାନ୍ ବାକ୍ୟ ଆମେ ଶୁଣିଲୁ ନାହିଁ । ମଣିଷପଣିଆର ବିକାଶ କଲୁ ନାହିଁ । ଧନରୁ ଧନ ବଢ଼ାଇବାକୁ ଲାଗିଲୁ । ବାଟ ଅବାଟ ଜାଣିଲୁ ନାହିଁ ।

ଗାଁ ଗପଟିଏ କହୁଛି, ଧନର ମୋହ କିପରି ହୋଇପାରେ । ଜଣେ ଲୋକ ବୁଢ଼ା ହୋଇଥାଆନ୍ତି । ଅଚଳାଚଳ ସମ୍ପତ୍ତି ଠୁଳ କରିଥାନ୍ତି । ଘର ଏପରି ଲୋଭନୀୟ ହୋଇଥାଏ ଯେ, ସ୍ୱୟଂ ଇନ୍ଦ୍ର ମଧ୍ୟ ସମ୍ଭାଳି ପାରିବେ ନାହିଁ । ତାଙ୍କୁ ଜଣେ କେହି ପଚାରିଲେ, 'ଆପଣ ଆଉ ଅଧିକ କଣ ଚାହାନ୍ତି ?' ବୁଢ଼ା ଲୋକଟି ଅଟକି ଯାଇ କହିଲେ, ମୁଁ ଏହି ଘରେ ମୋର ଅଣନାତି ହୋଇ ଜନ୍ମ ହେବାକୁ ଚାହୁଁଛି । ପ୍ରାଶ୍ନିକ ବୁଝି ନ ପାରି ପୁଣି ପ୍ରଶ୍ନ କଲେ, 'ଏହାର ଅର୍ଥ କ'ଣ ?'—ଏତେ ସମ୍ପତ୍ତି ଠୁଳ କରିଛି, ଆଉ ଟିକିଏ ଭୋଗ କରନ୍ତି । ଏହି ତ ଧନ ମଦ । ଯମ ଆମ ଚୁଟି ଧରି ଟାଣୁଥିଲା ବେଳେ ଆମେ ଏହି ଉନ୍ମତ୍ତତାରୁ କ୍ଷାନ୍ତ ହେଉ ନାହୁଁ । ଗାଉଁଲିଆ ଆଉ ଗୋଟିଏ କଥା, "ଯାହା ଖାଇଯିବୁ ପେଟକୁ, ଯାହା ରଖିଥିବୁ ଥେଣ୍ଟକୁ ।" ତେବେ ପ୍ରଶ୍ନ ଉଠୁଛି ଧନର ସଦୁପଯୋଗ କିପରି କରିବା ? ଶାସ୍ତ୍ର କହୁଛନ୍ତି ବିଦ୍ୟାଧନ ବା ଟଙ୍କାକଉଡ଼ି, ଜମିବାଡ଼ିର ଧନ ହେଉ ଯୋଗ୍ୟ ହୋଇ ଅର୍ଥାତ୍ ସଦ୍ ଉପାୟରେ ରୋଜଗର କରିବ । କାହାକୁ କଅଁଳ କଥା ପଦେ କହି ସୁପରାମର୍ଶ ଦେଇ, ଶିକ୍ଷା ସୁଯୋଗ ଆଡ଼କୁ ବାଟ କଢ଼ାଇ ନେଇ, ବିପତ୍ତିରେ ସାହାଯ୍ୟ କରି ଉକ୍ତ ଧନକୁ ବ୍ୟୟ କରିପାରିଲେ ଏହା ହେବ ଧର୍ମ । ସେଥିରୁ ସୁଖ ମିଳିବ ।

*"ପାତ୍ରତ୍ୱାତ୍ ଧନମାପ୍ନୋତି*
*ଧନାଦ୍ ଧର୍ମଃ ତତଃ ସୁଖମ୍ ।"*

ଭାଗବତକାରଙ୍କ ଭାଷାରେ ଏହା ପ୍ରତିଫଳିତ ହୁଏ ।

*"ଧନ ଅର୍ଜିଲେ ଧର୍ମ କରି*
*ଧର୍ମେ ପ୍ରାପତ ନରହରି ।"*

ଏହା ନ ହେଲେ,

*"ଅନ୍ୟାୟ ବିତ୍ତ, ବଢ଼େ ବହୁତ*
*ଗଲାବେଳେ ଯାଏ ମୂଳ ସହିତ ।"*

କିନ୍ତୁ ଉଲ୍ଲିଖିତ ଶାସ୍ତ୍ରବାଣୀ ଓ ହିତୋପଦେଶ ଆମେ ଧରିଲେ ଆମ ମାନବିକ ମୂଲ୍ୟବୋଧ ଆମ ମଧ୍ୟରେ ପଲ୍ଲବିତ ହୋଇଥାନ୍ତା । ଆମ ବ୍ୟକ୍ତିତ୍ୱ ମହାନ୍ ହୁଅନ୍ତା ।

ଯୁଗେ ଯୁଗେ ସର୍ବତ୍ର ଶିକ୍ଷା ବ୍ୟବସ୍ଥା କରାଯାଇଛି । ବ୍ୟକ୍ତି ଓ ସମାଜ ପରସ୍ପର ଘାତ ପ୍ରତିଘାତ ମାଧ୍ୟମରେ ବିକଶିତ ହେବାପାଇଁ ଧର୍ମଶିକ୍ଷା ଏଥିପାଇଁ ଏକ ଆଦ୍ୟ ବ୍ୟବସ୍ଥା ବୋଲି ଜଣାଯାଏ । ଏହି ସ୍ଥାନରେ ନୀତିଶିକ୍ଷା କାଳକ୍ରମେ ସୃଜିତ ହୁଏ । ଆଜିକାଲି ଏ

ସବୁ ବଦଳରେ ମୂଲ୍ୟବୋଧ ଶିକ୍ଷା ସମସ୍ତଙ୍କ ଆଦୃତ ହୋଇଛି । ମାନବିକ ମୂଲ୍ୟବୋଧ କହିଲେ ଏହାର ଅନ୍ତର୍ଭୁକ୍ତ ହୁଏ ନୈତିକ, ସାମାଜିକ, ଗଣତାନ୍ତ୍ରିକ, ବୈଜ୍ଞାନିକ ଓ ଆଧ୍ୟାତ୍ମିକ ମୂଲ୍ୟବୋଧ ଆଦି । ଏହାର ପରିସର ଜନ୍ମରୁ, ଏପରିକି ମାତୃଗର୍ଭରୁ ମୃତ୍ୟୁ ପର୍ଯ୍ୟନ୍ତ ପରିବ୍ୟାପ୍ତ କରାଯାଇଛି । ସବୁ ସ୍ତରରେ ଏହା ଶିକ୍ଷାର ଅଙ୍ଗୀଭୂତ । ଉଭୟ ପ୍ରାକ୍‌ସେବା ଓ ସେବାକଳୀନ ଶିକ୍ଷା ଏଥିରୁ ବାଦ୍ ପଡ଼ି ନାହିଁ । ଜାତୀୟସଂହତି, ଐକ୍ୟ, ଧର୍ମନିରପେକ୍ଷତା, ପରିବେଶ ସୁରକ୍ଷା, ସଂଘୀୟ ସମତା, କ୍ଷୁଦ୍ର ପରିବାର, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ଏହା ମଧ୍ୟ ପାଠ୍ୟକ୍ରମ ଓ ପରୀକ୍ଷାର ଅନ୍ତର୍ଭୁକ୍ତ । ପାଠ୍ୟପୁସ୍ତକରେ ମହାପୁରୁଷମାନଙ୍କ ଜୀବନୀ ଅଧ୍ୟୟନ, ଅନ୍ତର୍ରାଷ୍ଟ୍ରୀୟ, ରାଷ୍ଟ୍ରୀୟ, ରାଜ୍ୟସ୍ତରୀୟ ଓ ଆଞ୍ଚଳିକ ଉତ୍ସବାଦି ପାଳନ ଅବସରରେ ମାନବିକ ମୂଲ୍ୟବୋଧ ଶିକ୍ଷା ଦେବାର ପରିକଳ୍ପନା ରହିଛି । ପରିଦର୍ଶକ ଓ ପରିବାର ଏହି ସହିତ ଅଙ୍ଗୀଭୂତ କି ନାହିଁ କହିହେଉ ନାହିଁ । ଏହା ସତ୍ତ୍ୱେ ଏହା କେବଳ ବାଚନିକ ହୋଇ ରହିଛି । ଆହୁରି ମଧ୍ୟ ସମ୍ପୃକ୍ତ ସମସ୍ତେ ବରଂ ନିଜ ନିଜ ଜୀବନରେ ଏହାକୁ ପାଳନ କରିବାର କ୍ୱଚିତ୍ ଦେଖାଯାଏ । 'ବାପା କହିଛନ୍ତି, ବାପା ଆଜି ଘରେ ନାହାନ୍ତି' ପରି ହୋଇଯାଉଛି । ସତ୍ୟ କହିବାକୁ ପରାମର୍ଶ, ଉପଦେଶ ଦେଉଥିବା ବ୍ୟକ୍ତିମାନେ ନିଜେ ମିଥ୍ୟା, କପଟତା ଓ ଦୁରାଚାରରେ ବୁଡ଼ୁବୁଡ଼ୁ ହୋଇ ରହିଥିବାର ବେଳେବେଳେ ଜଣାଯାଏ । ଏଥିରେ ଅନ୍ୟ ଏକ ମାନବିକ ମୂଲ୍ୟବୋଧ ମଧ୍ୟ ପାଳିତ ହୁଏ ନାହିଁ । ତାହା ହେଉଛି ଯାହା ଆମେ ପଢ଼ିବା ଓ ପଢ଼ାଇବା, ସେଥିରେ ଥିବା ମୂଲ୍ୟବୋଧକୁ ଆମେ ହୃଦୟଙ୍ଗମ କରି ନିଜ ନିଜର ଆଚରଣରେ ଦେଖାଇବା ଆବଶ୍ୟକ । ଅଧ୍ୟାତ୍ମ ବୋଧ ଆଚରଣ ପ୍ରତ୍ୟେକର କରିବାର କଥା ।

ଆଜିର ସମାଜରେ ନିଜ ଆଚରଣରେ ଏ ପ୍ରକାର ସାକାର ହୋଇନଥିବା ନୀତିଗୁଡ଼ିକର ନିଷ୍ଫଳ ପ୍ରଚାର ଦେଖିବାକୁ ମିଳେ ।

ଏହାହିଁ ଭ୍ରଷ୍ଟାଚାର, ଏଥିଯୋଗୁଁ ଦୁର୍ନୀତି, ଅପସଂସ୍କୃତି, ଅପରାଧୀକରଣ, ନିଶାଭ୍ୟାସ, ସନ୍ତ୍ରାସବାଦ, ଉପଭୋକ୍ତାବାଦ ଆଦି ଆମ ବ୍ୟକ୍ତିଗତ ତଥା ସାମାଜିକ ଜୀବନକୁ ତଳିତଳାନ୍ତ କରିଦେଉଛି । ମାନସିକ, ସାମାଜିକ ଓ ପ୍ରାକୃତିକ ସ୍ତରରେ ପ୍ରଦୂଷଣ ଆଜି ସର୍ବଗ୍ରାସୀ ହେବାରେ ଲାଗିଛି । ସ୍ୱେଚ୍ଛାକୃତ ସଂଯମର ଅଭାବରେ ଜନ୍ମ ନିରୋଧକ ବ୍ୟବସ୍ଥାର ଆଶ୍ରୟନେଇ ହୀନବୀର୍ଯ୍ୟ, ଦୁର୍ବଳ, କାପୁରୁଷ ଉତ୍ପାହିତ ହେଉଛନ୍ତି । ସମସ୍ତ ମାନସମାଜ ନିଶାସକ୍ତପରି ଲାଗୁଛି ।

ଆମ ଚିନ୍ତା ଓ ଚେତନା ନିଶ୍ଚଳ ଓ ନିଷ୍ଫଳ ହୋଇ ନାହିଁ, ଲୋପ ପାଇ ଯାଇ ନାହିଁ ମଧ୍ୟ । ନଈବାଲିର ଗଭୀରତା ମଧ୍ୟରେ ଲୁଚିଥିବା ଖରାଦିନର ଧାର ଠାଏ ଠାଏ ସୁଅକୁ

ହଜାଇ ନେଇଥିବାର ପରି ଜଣାଯାଏ । ବାଳ, ବନିତା ଓ ବୃଦ୍ଧ ଖୋଳିତାଡ଼ି ଅଣ୍ଡାଳନ୍ତି । କିଏ ବା ଟୋପେ ଟୋପେ ପାଏ, ଆଉ କିଏ ନିରାଶ ହୋଇଯାଏ, ଏପରି ତିରୋଟବେଳରେ ଭାଗବତକାରଙ୍କ ସହିତ କଣ୍ଠମିଳାଇ ଗାଇବା :

*''ସର୍ବେ ହୋଇଣ ଏକମୁଖ*
*ବୋଇଲେ ନାରାୟଣ ରଖ ।''*

ଅବକ୍ଷୟ ଆମ ପାଇଁ ବିପର୍ଯ୍ୟୟ । ଏଠି ଆଞ୍ଜୁଡ଼ା ଆଞ୍ଜୁଡ଼ି କଲେ ଚଳିବ ନାହିଁ । ଖଣ୍ଡଫାଳିକିଆ ମେଘ ପରି କେଉଁଠି ମେଞ୍ଚେ କେଉଁଠି କେଞ୍ଚେ କଲେ ଚଳିବ ନାହିଁ । ଅବକ୍ଷୟର ଖରସ୍ରୋତରେ କୁମ୍ଭୀର ଆମକୁ ଉଠପଡ଼ କରୁଥିବାବେଳେ ଆମ ସର୍ବମୁଖ ଏକମୁଖ ହେବା ଆବଶ୍ୟକ । ଏକମୁଖ ଦେବମୁଖ ହୋଇପାରିବ । ସେଥିରୁ ଆମ ମୁଖ ଦେବାତୀତ ହେବ । କାରଣ ଆମ ପ୍ରତ୍ୟେକଙ୍କ ମଧରେ ''ଅହଂ ବ୍ରହ୍ମାସ୍ମି''ର ସମ୍ଭାବନା ରହିଛି । ଏହା ଦିନେ ସାର୍ଥକ ହୋଇଥିଲା । ଏଥିରେ ଅଟଳ ବିଶ୍ୱାସରଖି ଓ ନିରନ୍ତର ସାଧନାକରି ଏ ଯୁଗରେ ସାର୍ଥକ କରିବା ।

ସେଥିପାଇଁ ବିଶେଷକରି ଆମ ଦେଶ, ରାଜ୍ୟ, ପରିବାର ଓ ସମାଜର ସଂକଳ ବ୍ୟବସ୍ଥାରେ ମାନବିକ ମୂଲ୍ୟବୋଧର ରୂପାୟନ ପାଇଁ ସମଗ୍ର ସଂଗଠିତ ଓ ସମନ୍ୱିତ ଆନ୍ଦୋଳନ ଆବଶ୍ୟକ । ଜାତୀୟ ମୁକ୍ତି ସଂଗ୍ରାମକୁ ବିନା ରକ୍ତପାତରେ ସତ୍ୟ ଅହିଂସାକୁ ଆୟୁଧକରି ମହାତ୍ମାଗାନ୍ଧୀ ଜନଗଣଆନ୍ଦୋଳନରେ ପରିଣତ କଲେ ଓ ଏହା ସଫଳ ହେଲା । ମାନବିକ ମୂଲ୍ୟବୋଧର ଅବକ୍ଷୟ ଆଜି ସେ ପ୍ରକାର ଆହ୍ୱାନ ସୃଷ୍ଟି କରିଛି । ଦୁର୍ନୀତି, ଦୁର୍ଗତି, ଦୁରାଚାର ବିଷରେ ଦେଶ ଓ ବିଶ୍ୱ ଜର୍ଜରିତ । ଏହି ପରିପ୍ରେକ୍ଷୀରେ ଆମ ପୂର୍ବ ଅଭିଜ୍ଞତାକୁ ସ୍ମରଣକରି ଦ୍ୱିତୀୟ ମୁକ୍ତି ସଂଗ୍ରାମ କରିବାର ସମୟ ଆସିଛି ।



# ଶିକ୍ଷା—ଏକ ଦିବ୍ୟ ଅନୁଭୂତି

*ଅସତୋ ମା ସଦ୍‌ଗମୟ*
*ତମସୋ ମା ଜ୍ୟୋତିର୍ଗମୟ*
*ମୃତ୍ୟୁର୍ମା ଅମୃତମ ଗମୟ ।*

ପ୍ରାଣର ଏକ ଆକୁଳ ଆବେଦନ । ଏଠି ଧର୍ମ, ଭାଷା, ଭାବଭଙ୍ଗୀ, ରାଷ୍ଟ୍ର ଆଦିର ବିଭେଦ ନାହିଁ । ନିଭୃତ କୋଣରେ ବ୍ୟକ୍ତିବିଶେଷର ଆବେଗର ବ୍ୟାକୁଳ ଅଭିବ୍ୟକ୍ତି ପ୍ରକାଶ ପାଇଛି । ଅଧିକନ୍ତୁ ସମୂହ ଜୀବନରେ ସମବେତ କଣ୍ଠର ପରିପ୍ରକାଶ ''ହେ ପରମପିତା, ମୋତେ ସତ୍ୟାଶ୍ରିତ ହେବାକୁ ଦିଅ । ଆଲୋକ ଆଡ଼କୁ ଆଗେଇ ଚାଲେ, ଅମୃତ ଆସ୍ୱାଦନ କରେ । କାରଣ ଅସତ୍ୟ ଓ ଅନ୍ଧକାର ମୋ ପାଇଁ ଅସହ୍ୟ । ମୁଁ ଅମୃତର ସନ୍ତାନ । ଦ୍ୱେଷ, ବିଦ୍ୱେଷ, ବିବାଦ, ଘୃଣା, ଶତ୍ରୁତା ଆଦିରେ ଜଡ଼ିସଡ଼ି ମୁଁ ମୃତ୍ୟୁ ବରଣ କରିବି ନାହିଁ । ସଂକୀର୍ଣ୍ଣତା ମୋତେ ସ୍ପର୍ଶ ନକରୁ । ମୋତେ କ୍ଷୁଦ୍ର ଓ ଖର୍ବ କରୁ ନାହିଁ ।''

ଶିକ୍ଷା ଏହି ଅମୃତ ଅନୁଭୂତିର ମାଧ୍ୟମ । ଶିକ୍ଷାଳୟରେ ଏହାର ଆବୃତ୍ତି ଉଚ୍ଚାରଣ ଓ ଅଭ୍ୟାସ କରାଯାଏ । ଉପରନ୍ତୁ ଶ୍ରବଣ, ମନନ, ଚିନ୍ତନ ଓ ସ୍ୱାଙ୍ଗୀକରଣ ଦ୍ୱାରା ଆତ୍ମସ୍ଥ ହେବାକୁ ପଡ଼େ । ପଶୁ ଜନ୍ମ ନିଏ ପଶୁ ହୋଇ, ଅଧିକରୁ ଅଧିକ ପଶୁ ହେବା ପାଇଁ । ପଶୁ ପ୍ରକୃତି କେବଳ ଦୃଢ଼ ହୁଏ । ପଘା ପାଖରେ ବେକ ଲଗାଇଦିଏ । ଯୁଆଳିରେ କାନ୍ଧ ଯୋଚି ହୋଇଯାଏ । ଶିକ୍ଷାନୁକୂଳ ନ ହୋଇ ପଶୁ ଦିନକୁ ଦିନ ଅଧିକମାତ୍ରାରେ ପ୍ରବୃତ୍ତି ପରିଚାଳିତ ହୁଏ । ଜନ୍ତୁ ହେବାର ଭାବନା ମନୁଷ୍ୟକୁ କବଳିତ କରେ । କିନ୍ତୁ ମନୁଷ୍ୟ ଜନ୍ମନିଏ ଅସହାୟ ହୋଇ, ଅଧିକରୁ ଅଧିକ ମନୁଷ୍ୟ ହେବା ପାଇଁ । ମଣିଷପଣିଆର ବିକାଶକ୍ଷେତ୍ର ହେଉଛି, ମାନବ ଜୀବନ । ପ୍ରବୃତ୍ତିର ପରିଚାଳନା ଓ ଦେବତ୍ୱର ବିକାଶ ମନୁଷ୍ୟର କରାମତି । ଏଥିପାଇଁ ଶିକ୍ଷା, ଶିକ୍ଷକ, ଉପକରଣ, ଶିକ୍ଷାଳୟ ଆବଶ୍ୟକ । ଏହି ମଣିଷପଣିଆର ପରିସର ଅକଳନ, ଏଥିରେ ଶିକ୍ଷାନୁକୂଳତାର ଦୀର୍ଘ ଓ ପ୍ରସ୍ଥ ଅସୀମ ଓ ଅମାପ, ମାତୃଗର୍ଭରୁ

ମୃତ୍ୟୁଯାଏଁ ଲମ୍ବିଥାଏ । ଏହା ଅସମ୍ଭବ ଭାବରେ ଉତ୍ତୁଙ୍ଗ । ଦେବ ଓ ମାନବ ଜୀବନରେ ଯାହା ଏଯାବତ୍ ସମ୍ଭବ ହୋଇପାରି ନାହିଁ, ତାହାର ସମ୍ଭାବନା କାଳଜୟୀ । ଏହା ଜୀବନରୁ ଜୀବନାନ୍ତର ଗଡ଼ି ଗଡ଼ି ଚାଲେ । ତେଣୁ ଶିକ୍ଷା ଏକ ଦିବ୍ୟ ଅନୁଭୂତି ହୋଇଯାଏ । ଶିକ୍ଷାର୍ଥୀର ଗତି, ପ୍ରକୃତି ଓ ମନୋବୃତ୍ତି ଏ ଦିଗରେ ପ୍ରବର୍ତ୍ତିତ ଓ ପରିବର୍ତ୍ତିତ ହୋଇଯାଉଥାଏ । କେବଳ ଉଚ୍ଚାରଣ ନୁହେଁ, ଆଚରଣର ଅଙ୍ଗୀକାର ଏଥିରେ ଆସିଯାଏ । ଏହାକୁ ଉପଲବ୍ଧି କହନ୍ତି । ସ୍ରୋତସ୍ୱିନୀ ଯେପରି ଅଖଣ୍ଡ ଜଳରାଶି, ଜୀବନ ସେପରି ସମନ୍ୱିତ ଓ ସୁସଂହତ ପ୍ରବାହ । କଥା, କାମ ଓ ଚିନ୍ତାରେ ଜୀବନ ଖଣ୍ଡିତ ବା ବିରୋଧାତ୍ମକ ହୁଏ ନାହିଁ, ବରଂ ମଣ୍ଡିତ, ଏକୀଭୂତ ଓ ଦ୍ୟୋତକ ହୁଏ, ଏତେବେଳକୁ ପଠନର ପାଠ ଅବବୋଧକୁ ଆସେ, ତାହା ଆଚରଣରେ ଫୁଟି ଉଠେ, ଏବେ ସେ ଠିଆହୋଇ ପ୍ରଚାରକ ସାଜିପଡ଼େ ।

ଏହାହିଁ ଆତ୍ମସଚେତନତା, ଏହାର ସୋପାନ ସ୍ଥାପନ କରନ୍ତି ପାଠଶାଳା, ପରିବାର ଓ ପରିବେଶରେ ଶିକ୍ଷକ । ନିଶୁଣି ଲଗାଇ ଶୂନ୍ୟକୁ ଉଠିବାପାଇଁ କିଏ ଆଗ୍ରହୀ କି ? ବାଳ, ବୃଦ୍ଧ, ଯୁବା, ନାରୀ ଓ ନର ସମସ୍ତଙ୍କ ପାଇଁ ଉତ୍ତରଣ ହେଉଛି ଦୁଃସାହସ (adventure) ଉର୍ଦ୍ଧ୍ୱାୟମାନ ହେବା ଜୀବନର ଗତି । ଅରିକୁ ତ୍ୟାଗ କରି ନାରୀ ହୁଏ, ସେ ଅଗ୍ରସର କରେ ସମଗ୍ର ସମାଜରେ । ଦେହର ଅଭିମାନ, ମନର ଅହଙ୍କାର, ଧନର ମଦ, କୁଳର ଗାରିମା ଆଦି ଏଥିରେ ଅଲକ୍ଷ୍ୟ ବନ୍ଧନ ହୁଏ ନାହିଁ । ଦେଶ, ବିଶ୍ୱ ଓ ମାନବ ସମାଜ ତଥା ସକଳ ସୃଷ୍ଟିପ୍ରତି ଦୃଷ୍ଟି, ଦର୍ଶନ ଓ ଦିଗ୍‌ବଳୟ ବିସ୍ତାରିତ ହୁଏ । ଶିକ୍ଷା ଦ୍ୱାରା ମନୁଷ୍ୟଠାରେ ସମଗ୍ରତାର ଦୃଷ୍ଟିକୋଣ ବିକାଶ ଲାଭକରେ । "ଆତ୍ମବତ୍ ସର୍ବଭୂତେଷୁ" ସେ ଅନୁଭବ କରନ୍ତି, ସତ୍ ବିଚାରର ଉଦୟ ଘଟେ । ତେଣୁ ମାନବୀୟ ସମ୍ବନ୍ଧ ସ୍ୱଭାବସିଦ୍ଧ ହୋଇଯାଏ ।

ଶିକ୍ଷା ଆଜି ବ୍ୟକ୍ତିଗତ ଓ ସାଂସାରିକ ଉତ୍‌ଥାନର ସାଧନ ହୋଇଛି, ପଦ, ପଦବୀ ଓ ପଦାଧିକାର ମନୁଷ୍ୟକୁ ମୋହଗ୍ରସ୍ତ କରିଛି । ଜଡ଼ବାଦୀ ଚିନ୍ତା ଦ୍ୱାରା ସେ କଳ, କୌଶଳ ଓ କରାମତି ପାଇଁ କବଳିତ ହୋଇପଡ଼ିଛି । ଭୋଗଲାଳସା ଓ ବିଳାସର ସାଧନରୂପେ ଶିକ୍ଷା କାର୍ଯ୍ୟତଃ ବ୍ୟବହୃତ ହେଉଛି । ପରୀକ୍ଷା ପାଇଁ ଶିକ୍ଷା କେଉଁ ଏକ ଅଜବ କଥା ? ପୁନଶ୍ଚ କୌଣସି ପ୍ରକାରେ ପରୀକ୍ଷାରେ ପାସ ବା ପ୍ରଥମ ହେବା ପାଇଁ ସମସ୍ତ ଶିକ୍ଷା ଓ ଦୀକ୍ଷା କଅଣ ଶିକ୍ଷାର ଆୟୋଜନ, ଆଡ଼ମ୍ବର ଓ ଆନ୍ଦୋଳନକୁ ପଣ୍ଡ କରୁନାହିଁ ? କାହିଁ ସେହି ପ୍ରତିବେଶୀ ପ୍ରୀତି, ଦେଶଭକ୍ତି ଓ ବିଶ୍ୱଭ୍ରାତୃତ୍ୱ ? ବରଂ ଉଗ୍ରବାଦ ଉତ୍କଟ ରୂପ ଧାରଣ କରୁଛି । ଶିକ୍ଷା, ଶିକ୍ଷକ ଓ ଶିକ୍ଷାର୍ଥୀ ତଥା ଶିକ୍ଷିତ ବ୍ୟକ୍ତି ସମାଜ ଅଭିମୁଖୀ ହେଉଛନ୍ତି କି ? ଭାଇଚାରା ଆମ ହୃଦୟରେ ସ୍ଥାନିତ କି ? ମନୁଷ୍ୟ ବିବେକୀ ଓ ବିଚାରବନ୍ତ ପ୍ରାଣୀ । ମାଟି ଢେଲାଟେ ବିଚାର କରିପାରେ କି ? କିନ୍ତୁ ଚିନ୍ତନ ଓ ମନନ କରିବେ ମନୁଷ୍ୟ । ଏ ଦୃଷ୍ଟିରୁ

ସେ ଅନନ୍ୟସାଧାରଣ । ତେଣୁ ଶିକ୍ଷା ଏହି ସୁଯୋଗ ଦେଉ, ଶିକ୍ଷାର୍ଥୀ ଚିନ୍ତନ କରନ୍ତୁ । ଉନ୍ନତ ଆଦର୍ଶପ୍ରତି ସମର୍ପିତ ହୁଅନ୍ତୁ । ମାନବିକ ସଦ୍‌ଗୁଣ ଓ ମୂଲ୍ୟବୋଧର ବିକାଶ ବ୍ୟକ୍ତି ଓ ସମାଜରେ ଘଟୁ । ମନୁଷ୍ୟପଣିଆ ମନୁଷ୍ୟର, ଅନ୍ୟ କାହାର ନୁହେଁ । ବାଲ୍ୟକାଳରୁ ଅସହାୟତା ଅଧିକରୁ ଅଧିକ ମଣିଷପଣିଆ ଅର୍ଜନ କରିବାରେ କ୍ଷେତ୍ରପ୍ରସ୍ତୁତ କରେ, ସେଥିପାଇଁ ପରିବାର ଓ ପାଠଶାଳାର ସହଯୋଗ ଆବଶ୍ୟକ । ଶିକ୍ଷା ମନୁଷ୍ୟ ପାଇଁ ଅନିବାର୍ଯ୍ୟ । ଏହିସବୁ କାରଣରୁ ଶିକ୍ଷା ଏକ ଦିବ୍ୟ ଅନୁଭୂତି । ଏକ ଅପୂର୍ବ ସୁଯୋଗ ଓ ବରଦାନ ।

ମହୀମଣ୍ଡଳରେ ମନୁଷ୍ୟ ଯେଉଁଦିନ ପାଦ ପକାଇଛି ସେ ସଂଗଠିତ ହୋଇଛି । ସମାଜର ସୁରକ୍ଷା ଓ ଏହାର ପରିବର୍ତ୍ତନ ପାଇଁ ଶିକ୍ଷାକୁ ଆଦରି ନେଇଛି । ଶିକ୍ଷା ମଧ କ୍ରମେ ସଂଗଠିତ, ଔପଚାରିକ ଓ ଆୟୋଜିତ ହେଉଛି । ତେଣୁ ଶିକ୍ଷା ମନୁଷ୍ୟ ପାଇଁ ଓ ଜୀବନବ୍ୟାପୀ ହେଉଛି, ଜୀବନଯାପନକୁ ଆଧାରିତ କରି । ଏହାର ମୂଲ୍ୟ ଓ ମୂଲ୍ୟବୋଧ ରହିଛି । ଅନ୍ତର୍ନିହିତ ସମ୍ଭାବନା ଓ ପୂର୍ଣ୍ଣତାର ବିକାଶ କରିବା ଏହା ଧେୟ । ସ୍ନେହ, ସହାନୁଭୂତି, ସମୟାନୁବର୍ତ୍ତିତା, ସଂଯମ, ସଦାଚାର, ସହିଷ୍ଣୁତା, ସଦ୍ଭାବ ହେଉଛି ମନୁଷ୍ୟ ଜୀବନର ଦେବୋପମ ଉପଲବ୍ଧି । ସ୍ୱାମୀ ବିବେକାନନ୍ଦ କହିଛନ୍ତି, "Expansion is life, contraction is death." ଜୀବନ ବନ୍ଧନରେ ରହି ସୁଦ୍ଧା ଜୀବ ବଦ୍ଧ ହେବ ନାହିଁ । ସେ ମୁକ୍ତ ହେବ । ଜୀବନର ସାର୍ଥକତା ପାଇଁ ସଂଗ୍ରାମ କରିବ । କୁହାଯାଏ ସା ବିଦ୍ୟା, ଯୋ ବିମୁକ୍ତୟେ । ଏଯାବତ୍ ଆମ ସର୍ବାଙ୍ଗ ଶରୀର ଓ ମନ ଅନ୍ଧବିଶ୍ୱାସ ତଥା କୁସଂସ୍କାରରେ ଆଚ୍ଛନ୍ନ ରହିଛି । ଭୟରୁ ରକ୍ଷା ପାଇ ଆମେ ଅଭୟ ଅନୁଭବ କରୁ ନାହୁଁ । ଅସୂୟାର ଚେର ଆମ ଶିରାପ୍ରଶିରାରେ ଛନ୍ଦିଛି, ଆମ ଆଖିରେ ପଟି ଦେଇଛି । କଷଣ, ଶୋଷଣ ଓ ପାତରଅନ୍ତରରେ ସଢ଼ିବାର ସମୟ ଯାଇ ନାହିଁ, ଏ ସବୁଥିରୁ ମୁକ୍ତ ମନୁଷ୍ୟ ହେଉଛି ଯଥାର୍ଥରେ ବିଦ୍ୱାନ୍ । ଜ୍ଞାନପିପାସାକୁ ଅବାରିତ କରିବାର ଓ ମାନବପ୍ରେମକୁ ବିଶ୍ୱବ୍ୟାପୀ କରିବାର ସାଧନାକ୍ଷେତ୍ର ହେଉଛି ଶିକ୍ଷାଳୟ । ଦିବ୍ୟ ଅନୁଭୂତିର ସାଧନ ହେଉଛି ଶିକ୍ଷା ଓ ଶିକ୍ଷାଳୟରେ ଏହି ଅନୁଭୂତିର ସାଧନା କରାଯାଏ ।

ବର୍ତ୍ତମାନ ତିଳ ଓ ତୈଳର ବିଚାର କରିବା । ତିଳ ହେଉଛି ଗୋଟିଏ ଶସ୍ୟ । ଏହା ଏକ ମୌଳିକ ଉପାଦାନ । ତୈଳ ହେଉଛି ଉତ୍ପନ୍ନ ଦ୍ରବ୍ୟ । ଏକ ପ୍ରକ୍ରିୟା ମାଧ୍ୟମରେ ତିଳରୁ ତୈଳ ବାହାର କରାଯାଏ, ସେହିପରି କ୍ଷୀରରୁ ଘୃତ ଉତ୍ପାଦନ କରାଯାଏ । ତିଳରେ ଯେପରି ତୈଳ, କ୍ଷୀରରେ ସେପରି ଘୃତ ସନ୍ନିହିତ ଅଛି । କେତେକ ପ୍ରକ୍ରିୟା ଓ ପ୍ରଚେଷ୍ଟା ଯୋଗୁଁ ଯଥାକ୍ରମେ ତୈଳ ଓ ଘୃତ ଆମକୁ ମିଳେ । ଦେବତ୍ୱ ଆମ ହୃଦୟରେ ଆସୀନ, ତାଙ୍କୁ ଆମ

ଆଚରଣରେ ପରିସ୍ଫୁଟ କରିବା ପାଇଁ ଆମକୁ ଅଧ୍ୟୟନ, ଅଧ୍ୟବସାୟ ଓ ମନୋନିବେଶ କରିବାକୁ ପଡ଼ିବ । ଦେବତ୍ୱ ହେଉଛି ଅବ୍ୟକ୍ତ ଓ ଏହାର ବ୍ୟକ୍ତରୂପ ହେଉଛି ଆମ ଆଚରଣ । ଏହି ସାଧନା ହେଉଛି ଶିକ୍ଷା ଯଦ୍ୱାରା ଆମ ଅନ୍ତର୍ନିହିତ ସ୍ୱରୂପର ବହିଃପ୍ରକାଶ ଆମେ କରିପାରିବା । ଏହି ବହିଃପ୍ରକାଶ ଏପରି ହେବ ଯଦ୍ୱାରା ଆମେ ସମାଜରେ ଆଦୃତ ହେବା, ସମାଜର ଆଶା, ଆକାଙ୍କ୍ଷା ଓ ଆବଶ୍ୟକତା ଆମେ ପୂରଣ କରିପାରିବା । ସାମାଜିକ ଜୀବନକୁ ଅଧିକରୁ ଅଧିକ ପ୍ରଗତିଶୀଳ କରିପାରିବା । ଏହାହିଁ ହେବ ଆମ ସାମାଜିକ ସାର୍ଥକତା, ଆତ୍ମିକ ଉତ୍ତରଣ ଓ ଆଧ୍ୟାତ୍ମିକ ଫଳଶ୍ରୁତି ।

ଶିକ୍ଷା ଏହି ବ୍ୟାପକ ସନ୍ଦର୍ଭରେ ପ୍ରକାଶିତ, ଆଲୋକିତ ଓ ଜ୍ୟୋତିର୍ମୟ । ଏହାର ଅନେକ ପ୍ରତିଶ୍ରୁତି କେବଳ ଉଚ୍ଚାରଣରେ ରହିଯାଉଛି । ସମଗ୍ର ସମାଜର ଏଦିଗରେ ଅନୁକୂଳ ହେଉନାହିଁ । ଏହି ସ୍ଥିତିର ଫାଇଦା ନେବା ଲୋଭରୁ କ୍ଷାନ୍ତ ହୋଇ ଆମେ ଶିକ୍ଷିତ ବ୍ୟକ୍ତିଗଣ ସମାଜ ଓ ଶିକ୍ଷାରେ ଦିବ୍ୟ ଅନୁଭୂତି ପାଇଁ ସୁଯୋଗ ଭର୍ତ୍ତି କରିଦେବା ଦରକାର । ତଦ୍ୱାରା ଆମେ ଆମ ପ୍ରତିଷ୍ଠିତ ଓ ବିକଶିତ ବ୍ୟକ୍ତିତ୍ୱ ଲାଭ କରିପାରିବା ।

ଉଭୟ ପ୍ରତିଶ୍ରୁତି ଓ ପ୍ରଚେଷ୍ଟା ଦୃଷ୍ଟିରୁ ଶିକ୍ଷାର ପ୍ରକ୍ରିୟା ଯେପରି ପରିଣତି ସେପରି ଆନନ୍ଦଦାୟକ, ସର୍ଜନାତ୍ମକ ଓ ସନ୍ତୋଷପ୍ରଦାୟକ ।

ଏଠି ପ୍ରଶ୍ନ ଉଠେ, ଦେହକୁ ଦେବାଳୟ କରିବା ନା ଭୋଗାଳୟ କରି ବ୍ୟାଧି ମନ୍ଦିର କରିବା; ବୁଦ୍ଧିକୁ ସର୍ବଜନିହତେ ରତ କରିବା ନା ବୁଦ୍ଧିବଳରେ ବିବାଦ ଲଗାଇବା; ଧନ ଅର୍ଜନକରି ଧର୍ମ ପାଳିବା ଓ ସୁଖରେ ରହିବା ନା ଧନଦ୍ୱାରା ବିଳାସ କିଣିବା; ଦୈହିକ ଶକ୍ତି ଦ୍ୱାରା ପରୋପକାର କରିବା ନା ଉଗ୍ରବାଦ ବୃଦ୍ଧିକରି ସୃଷ୍ଟିର ଧ୍ୱଂସ ସାଧନ କରିବା, ଇତ୍ୟାଦି । ଶିକ୍ଷା ସାର୍ଥକ ହେବ ଓ ଦିବ୍ୟାନୁଭୂତି ଆଣିଦେବ ଯଦି ପ୍ରଥମୋକ୍ତ ସେହି ପନ୍ଥାକୁ ଜୀବନର ବ୍ରତ କରିନବା ।



# ସେବାହିଁ ଧର୍ମ ଓ କର୍ମ

କର୍ମ ଓ ଧର୍ମ ମଧରେ କି ସମ୍ପର୍କ ଅଛି ? ଉଭୟର ସେବା ସହିତ କେଉଁ ସମ୍ପର୍କ ରହିଛି ? ଏହାହିଁ ଏହି ପ୍ରବନ୍ଧର ଆଲୋଚ୍ୟ ।

କର୍ମ ଓ ଧର୍ମ ମଧରେ ସମ୍ପର୍କର ବିଚାର କାହିଁକି କରିବା ? ଇଂରାଜୀରେ କୁହାଯାଏ "Work is worship", କର୍ମ ହିଁ ଧର୍ମ । କୁହାଯାଏ, ''କର୍ମ ତୋହର ନିଜ ଗୁରୁ'' । କର୍ମ ଗୁରୁ ରୂପେ ଶିକ୍ଷା ଦିଏ । ଆମର ସମସ୍ତ ଶିକ୍ଷା ମିଳେ କର୍ମରୁ । ଆହୁରି ମଧ୍ୟ କୁହାଯାଏ, ''ଯସ୍ତୁ କ୍ରିୟାବାନ୍ ପୁରୁଷଃ ସ ବିଦ୍ୱାନ'' । ବିଦ୍ୟାର ପରିଚୟ କର୍ମରୁ ମିଳିଥାଏ । ବିଦ୍‌ବତ୍ତା ଫମ୍ପା ଓ ଫାଙ୍ଗୁଳା ହେବ ଯଦି ବିଦ୍ୟାନାମଧାରୀ ପୁରୁଷ ଅନୁରୂପ କର୍ମ ନ କରନ୍ତି । ଆଚରଣନିଷ୍ଠ ଜୀବନରେ କର୍ମ ଓ ଧର୍ମର ସମନ୍ୱୟ ଘଟିଥାଏ । ବିଦ୍ୟାବନ୍ତ ପ୍ରାଣୀର ସକଳ କାର୍ଯ୍ୟ ବିଦ୍ୟାଦ୍ୱାରା ପରିଚାଳିତ ହୋଇ କର୍ମ ଓ ଧର୍ମକୁ ଏକୀଭୂତ କରିଥାଏ ।

କାର୍ଯ୍ୟତଃ ଧର୍ମରେ କର୍ମର ଅନୁରୂପ ପ୍ରୟୋଗ ଦେଖାଯାଏ ନାହିଁ ବରଂ ଅନେକ ସ୍ଥଳରେ ଅପପ୍ରୟୋଗ କରାଯାଏ । ଏହା ଫଳରେ ଧର୍ମ ଏକ ପ୍ରହସନରେ ପରିଣତ ହୁଏ । ଧର୍ମ ଏକ ବାହ୍ୟ ଆଡ଼ମ୍ବର ଭାବରେ ପ୍ରତୀତ ହୁଏ । କର୍ମର କଷଟିପଥରରେ ଧର୍ମାଚରଣ ପରୀକ୍ଷିତ ହେବା ଉଚିତ । ନୋହିଲେ ଏହା ବିରାଡ଼ି ବୈଷ୍ଣବ ହୁଏ । ଅନ୍ତରର ଉତ୍ସରୁ ଧର୍ମଧାରା ପ୍ରବାହିତ ହୋଇ ପରିଶେଷରେ ସମସ୍ତ ଶିରାପ୍ରଶିରାରେ ଏହାର ଅବାରିତ ପ୍ରବାହକୁ ଦେଖିବାର କଥା ଓ ଏହାହିଁ ଧର୍ମାନୁରୂପ କର୍ମ ।

ପକ୍ଷାନ୍ତରରେ ଏହା ମଧ୍ୟ ଲକ୍ଷ୍ୟ କରିବାର କଥା ଯେ ସ୍ୱାର୍ଥସିଦ୍ଧିପାଇଁ ଧର୍ମକୁ ଆୟୁଧରୂପେ ଗ୍ରହଣ କରାଯାଏ । ଦଳୀୟ ଓ ବ୍ୟକ୍ତିଗତ ସ୍ୱାର୍ଥସାଧନ ପାଇଁ ଧର୍ମପୀଠ ମଞ୍ଚରୂପେ ବ୍ୟବହୃତ ହୁଏ । ଅନେକ ବ୍ୟକ୍ତି ଓ ଦଳବିଶେଷ ଅର୍ଥ ସଂଗ୍ରହ କରନ୍ତି । ନିଜେ ଅର୍ଥଦାନ କରୁଛନ୍ତି ବୋଲି ପ୍ରଚାର ଓ ପ୍ରାଚୀରପତ୍ର ବଣ୍ଟନ କରନ୍ତି । ଦାନର ପରିମାଣ ଓ ଦାତାଙ୍କ ନାମକୁ କେନ୍ଦ୍ରକରି ଦେବାଳୟ ଗଠନ କରାଯାଏ । ବସ୍ତୁତଃ ଧର୍ମର ଦ୍ୱାର ଅବରୁଦ୍ଧ

ହୁଏ । ପ୍ରଚାରରୂପକ ଅଙ୍ଗ ଧର୍ମର ଅତ୍ମାକୁ ଗିଳି ପକାଏ । ଅତୀତରେ ରାଜାରାଜୁଡ଼ା ଓ ଧନୀମାନଙ୍କ କୀର୍ତ୍ତିସ୍ତମ୍ଭ ତଥା ଗୌରବ ବୈଜୟନ୍ତୀ ନଭଶ୍ଚୁମ୍ବୀ ହୋଇ ପାରିଛି । ଏବେ ମଧ ଜାତିର ଅଭିମାନ, ବଡ଼ିମାର ବଡ଼ ବାଜା, ଅନାୟାସ ତଥା ଅଳ୍ପ ସମୟରେ ବଡ଼ ହେବାର ଦୁର୍ବାର ବାସନା ଆଜି ସମାଜକୁ କଳୁଷିତ କରିପକାଉଛି । ଧର୍ମାନୁଷ୍ଠାନ ଓ ଧାର୍ମିକ ବ୍ୟକ୍ତିଙ୍କୁ ଏହି ସବୁ କବଳିତ କରିଦେଇଛି । ଅର୍ଥର ଲୋଭ ଧର୍ମଧାରାର ବିରୋଧୀ ହେଲେହେଁ ଲୋଭର ହାବୁଡ଼ରେ ପଡ଼ି କିଏ ବା ବଶୀଭୂତ ନ ହେଉଛନ୍ତି ? କାମ, କ୍ରୋଧାଦି ରିପୁଗଣ ଓ ଖଳ ଗର୍ବ ଅହଙ୍କାର ଧର୍ମାଚରଣରେ ପରିତ୍ୟକ୍ତ, ବହିଷ୍କୃତ, ପରାଜିତ ଓ ପ୍ରଶମିତ ହେବାର କଥା, କିନ୍ତୁ ବିଭିନ୍ନ କର୍ମରେ ଧର୍ମର ଅପପ୍ରୟୋଗ ଯୋଗୁଁ ଏସବୁ ଲୁଚିଛପି ମନୁଷ୍ୟ ଶରୀରରେ ଭୀଷଣ ଆକାର ଧାରଣ କରେ । ସମାଜକୁ କଳଙ୍କିତ ଓ କୀଟଦଷ୍ଟ କରିଦିଏ ।

ଅତଏବ ଧର୍ମ ହେଉଛି କର୍ମର ମୂଳାଧାର ଏବଂ ଧର୍ମର ଅନାବିଳ ପରିପ୍ରକାଶ ହେଉଛି କର୍ମ । ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ ସଦୃଶ ଅବିଚ୍ଛେଦ୍ୟ । କେବଳ ଗୋଟିଏ ପାର୍ଶ୍ୱରେ ଚିହ୍ନିତ ମୁଦ୍ରା ଯେପରି ନିରର୍ଥକ ଓ ବିନିମୟ ପାଇଁ ଅଯୋଗ୍ୟ, ସେହିପରି ଧର୍ମ ଓ କର୍ମ ମଧ୍ୟରୁ ଗୋଟିଏ ଅନ୍ୟଠାରୁ ସମ୍ପର୍କଚ୍ୟୁତ ହୋଇ ବ୍ୟକ୍ତି ତଥା ସମାଜକୁ କଦାକାର ଓ କିମ୍ଭୂତକିମାକାର କରିଦିଏ । ଏହାଫଳରେ ବ୍ୟକ୍ତିର ସମାଜ ଭାବନା ଓ ସମାଜ ପ୍ରତି ଦାୟିତ୍ୱ ଯେପରି ରହେ ନାହିଁ, ସମାଜର ସେହିପରି ବ୍ୟକ୍ତି ସଚେତନତା ଓ ପୋଷକତା ରହେ ନାହିଁ । କେବଳ ଏତିକି ନୁହେଁ, ଧର୍ମକୁ ଆୟୁଧ କରି କୁକର୍ମ ବଢ଼ିଚାଲେ । ଏହା ହେଉଛି କର୍ମରେ ଧର୍ମର ଅପପ୍ରୟୋଗ । ଠିକ୍ ସେହିପରି ଧର୍ମରେ କର୍ମର ଅପପ୍ରୟୋଗ ବିଷୟ ପୂର୍ବରୁ ଆଲୋଚନା କରାଯାଇଛି । ଏପରି ଭାବରେ ଧର୍ମ ଓ କର୍ମକୁ ବିଚ୍ଛିନ୍ନ କରିଦିଆଗଲେ ଏଥିରୁ ବ୍ୟକ୍ତି, ସମାଜ, ଦେଶ ଓ ବିଶ୍ୱସ୍ତରରେ ସଙ୍କଟ ଜାତ ହୁଏ । ଯାହା ଅବିଚ୍ଛେଦ୍ୟ, ଆମେ ତାକୁ ବିଚ୍ଛିନ୍ନ କରିଦେଉଛୁ । ଯାହା ମଧ୍ୟରେ ସମ୍ପର୍କ ସ୍ୱାଭାବିକ, ଅନାବିଳ ଓ ସୁସ୍ପଷ୍ଟ ଆମେ ତାକୁ କୃତ୍ରିମ, କଳୁଷିତ ଓ ଅସ୍ପଷ୍ଟ କରିଛୁ ।

ସେବାରେ ହିଁ ଧର୍ମ ଓ କର୍ମର ଅଭେଦତ୍ୱ ପ୍ରତିପାଦିତ ହୁଏ । ବିମଳ ଓ ସ୍ୱଚ୍ଛ ସମ୍ପର୍କ ହିଁ ସ୍ପଷ୍ଟ ହୁଏ ସେବାରେ । ସେବାରେ ହୁଏ ଧର୍ମ ଓ ସେବା ମଧ୍ୟ ହୁଏ କର୍ମ । ଏଥିରେ ସମଗ୍ର ବ୍ୟକ୍ତିର ସର୍ବଶ୍ରେଷ୍ଠ ଧର୍ମ ଓ କର୍ମ । ଏହା କାହାରି ଦାନ, ଦୟା ଓ ଦାକ୍ଷିଣ୍ୟ ନୁହେଁ । ବରଂ ଏହା ହୁଏ ସମସ୍ତଙ୍କର ପରମ ଓ ଚରମ କର୍ତ୍ତବ୍ୟ । ମଣିଷପଣିଆର ସର୍ବୋଚ୍ଚ ଉପାଦାନ ହେଉଛି ସେବା । ନିଃସଙ୍ଗ ଜୀବନ କ୍ରମେ ଦୀପ୍ତିମନ୍ତ ଓ ସାର୍ଥକ ହୋଇ ନିଷ୍କାମ କର୍ମ, ନିଃସ୍ୱାର୍ଥ ସମ୍ପର୍କରେ ପରିଣତ ହୁଏ । ବିଷୟାସକ୍ତ ଓ ସ୍ୱାର୍ଥାନ୍ଧ ଜୀବନରେ ସମ୍ପର୍କ ତିକ୍ତ ଓ ବିଷମୟ ହୋଇପଡ଼େ । ସେଥିରେ ହାହାକାର ଓ ଅଶାନ୍ତି ଗ୍ରାସିଯାଏ । ଫଳରେ ଶାନ୍ତି ଓ ସ୍ଥିରତା

ପାଇବା ଆଶରେ ସେ ନିଃସଙ୍ଗତା ଅନ୍ୱେଷଣ କରି ଆତ୍ମସ୍ଥ ହୁଏ । ମୋହଜାଲର ଆବରଣ ଦୂରୀଭୂତ ହୋଇଯାଏ । ଅପରନ୍ତୁ ଆତ୍ମସ୍ଥତା ଆଣିଦିଏ ନିଜ ହୃଦୟରେ ସମସ୍ତଙ୍କ ପ୍ରତିଛବି ଓ ସମସ୍ତଙ୍କ ପ୍ରାଣରେ ସ୍ୱକୀୟ ଆତ୍ମସତ୍ତାର ପ୍ରତିଫଳନ । ଏଇଠୁ ଏକ ପୁନର୍ଜନ୍ମ ହୁଏ । ଚକ୍ଷୁ, କର୍ଣ୍ଣ, ନାସା, ଜିହ୍ୱାଦି ଇନ୍ଦ୍ରିୟଗଣ ଏକ ସମ୍ପୂର୍ଣ୍ଣ ଭିନ୍ନ ରସାସ୍ୱାଦନ କରନ୍ତି । ସମ୍ପର୍କ ପୁଣି ସମୃଦ୍ଧ ହୁଏ ବହୁସଙ୍ଗିତା ଦ୍ୱାରା । ଏହାର ପରିଣତି ହୁଏ ନିଃସ୍ୱାର୍ଥତା, ପରାର୍ଥପରତା ଓ ଏକ ଅଭିନବ ପରମାର୍ଥପରତା । ଏହି ସମ୍ପର୍କସମୃଦ୍ଧତା ଯୋଗୁଁ ଜାତ ହୁଏ ତ୍ୟାଗ ଓ ସେଥିରୁ ଆସେ ସେବା । ସ୍ୱର୍ଗୀୟ ପ୍ରେମ ପ୍ରତିଧ୍ୱନିତ ହୁଏ ସେବାରେ ।

ସେବକ ଏହା ଫଳରେ ବହୁକୁଟୁମ୍ବୀ ହୁଏ । ଅସହାୟ, ଦୀନହୀନ, ଅନ୍ଧ, ବଧିର, ଖଞ୍ଜ, ନିରକ୍ଷର, ଅଶିକ୍ଷିତ, ଅଜ୍ଞ ଆଦି ଆଉ ହେୟ ନହୋଇ କୁଟୁମ୍ବର ପରିଧି ଭିତରକୁ ସମ୍ମାନର ସହିତ ପଶି ଆସନ୍ତି । ଜାତି, ବର୍ଣ୍ଣ, ଗୋତ୍ରର ବିଭେଦ ସମ୍ପୂର୍ଣ୍ଣ ଉଭେଇଯାଏ । ରୋଗୀ, ପାପୀ, ତାପୀ ଆଦି ଅତି ଆପଣାର ମଣିଷ ହୋଇଯାଆନ୍ତି । ମାମୁଲି ଓ ମରହଟ୍ଟୀ ଧର୍ମଶାସ୍ତ୍ରର ପୃଷ୍ଠାଗୁଡ଼ିକ ଖରାଦିନ ଦ୍ୱିପ୍ରହରର ଖଣ୍ଡିଆଭୂତ ପରି ଧରା ଓ ଆକାଶ ମଝିରେ ଉଡ଼ିବୁଲନ୍ତି ଓ ମନରେ ଭୟ ସୃଷ୍ଟି କରନ୍ତି । ପିଲାଏ କୌତୁକରେ ଅନାଇ ରହନ୍ତି । ମରଣ ସହିତ ସଂଗ୍ରାମରତ ରୋଗୀ, ପେଟବିକଳରେ ନରହତ୍ୟା କରିଥିବା ଡକାୟତ, ସ୍ୱାମୀ ପରିତ୍ୟକ୍ତା ନିର୍ଯାତିତା ନାରୀ, ଶିକ୍ଷା ଅଭାବରୁ ଶୋଷିତ ଓ ନିଷ୍ପେଷିତ ବନବାସୀ ଦେବାଳୟରେ ଅତି ଆତଙ୍କରେ ଦେବଦର୍ଶନ ପାଇଁ ଉତ୍କଣ୍ଠିତ । ସମସ୍ତ ଘଣ୍ଟାଘଣ୍ଟି ନୀରବ ଓ ଭଜନଜଣାଣ ନିଷ୍ଫଳ । ଦେବତା ନିଦ୍ରାଗତ ଓ ଦେବଦ୍ୱାର ଅବରୁଦ୍ଧ । କିନ୍ତୁ ସେବାର ପରିସର ମଧ୍ୟରେ ଏସବୁ ପୂଜାପାଠ ଓ ଭୋଗରାଗର ସ୍ଥାନ ନଥାଏ । ଜାତି, ବର୍ଣ୍ଣ ଓ ଧର୍ମ ନିର୍ବିଶେଷରେ ସମସ୍ତଙ୍କ ପାଇଁ ସମ୍ମାନର ସମାନ ସ୍ଥାନ ରହିଥାଏ । ଯେଉଁଠି ଓ ଯେତେବେଳେ ଆର୍ତ୍ତନାଦ, ଅଶ୍ରୁବିମୋଚନ ଓ ବିକଳ କ୍ରନ୍ଦନ, ସେଠି ଓ ସେତେବେଳେ ସେବାରତ ସେବକ । ସେ ବ୍ୟଥିତ । ସେ ସ୍ପର୍ଶକାତର । ଦୂର ଓ ନିକଟର ଜ୍ଞାନ ନଥାଏ । ଇତିହାସର ଅନନ୍ୟା ନାରୀ ତାର ନିର୍ଯାତନାରେ ଭଗବାନ ଶ୍ରୀକୃଷ୍ଣଙ୍କ ରତ୍ନ ସିଂହାସନ ଟଳିଯାଇଥିଲା । ସେଠି ଦୂରତା, ସମୟ, ଅବସ୍ଥା, ଜାତି-ଗୋତ୍ର-ଧର୍ମ-ବର୍ଣ୍ଣ ଆଦିର ବିଚାର ନଥାଏ । ମହିମା ଧର୍ମର ସିଦ୍ଧସାଧୁ ଗଣେଶ୍ୱର ବାବାଙ୍କ ପଚିଶ ପଇସା ମୂଲ୍ୟର 'ବାବୁରେ' ପୁସ୍ତିକାର ଅନ୍ୟତମ ସଦୁପଦେଶ ହେଉଛି—

*"ଜୀବପରେ ଦୟାରଖି,*
*କୁଟୁମ୍ବ ମଣିବ ଧରଣୀଯାକ,*
*ଜ୍ଞାନ ହେବ ପରାପତ,*
*ବାବୁରେ, ମୁକତି କି ସଳଖ ପଥ ।"*

ଆମେ ସବୁ ବାବୁ । ଛୁଆଠାରୁ ବୁଢ଼ାଯାଏଁ ଟିଭି ନ ଦେଖିଲେ ପାଗଳ । ଆମେ ଟିଭି ଦେଖାରୁ ଜଗତଯାକକୁ କୁଟୁମ୍ବ କରିଛୁ କି ? ଗଞ୍ଜିଆ ଆମ୍ଭିଳୀ ତୋରାଣି ଶୋଷୀକୁ ଦେଉଛୁ କି ? ପନ୍ଦର ଦିନର ବାସି ରୋଟି ଟିଣଚଦର ଭଳି ଟାଣ ହୋଇଥାଏ । ଭୋକୀ ଆଗରେ ଏହା କଅଣ-ଭଗବାନ ହେବ କି ? ଜାତିର ଜନକ ଏହା ଅନୁଭବ କରିଥିଲେ । ସ୍ୱାଧୀନ ଭାରତରେ କାହାରି ଆଖିରୁ ଲୁହ ନ ଗଡ଼ୁ, ଏଥିପାଇଁ ସ୍ୱପ୍ନ ଦେଖିଥିଲେ । ମା' ଟେରେସା ଭିକ୍ଷୁକର ସ୍ୱତଃ ଦାନ ସ୍ୱଳ୍ପ ହେଲେ ସୁଦ୍ଧା ଆନନ୍ଦରେ ଗ୍ରହଣ କରନ୍ତି ଓ ସେବାର ବନ୍ୟା ବିଶ୍ୱରେ ଖେଳାଇ ଦେଇଛନ୍ତି । ଅତଏବ ମୁକ୍ତିକୁ ସଳଖ ପଥ କାହିଁକି, କଅଣ ଓ କିପରି ?

ପଞ୍ଜାବ କେଶରୀ ଲାଲା ଲଜପତ, ଗାନ୍ଧୀ, ଗୋପବନ୍ଧୁ ପ୍ରମୁଖ ମନୀଷୀଗଣ ''ନରସେବାକୁ ନାରାୟଣ ସେବା'' ଭାବରେ ସାବ୍ୟସ୍ତ କରିଥିଲେ । ରାମକୃଷ୍ଣଦେବ ''ଜୀବକୁ ଶିବଜ୍ଞାନ'' କରିଥିଲେ । ଯିଶୁ ପର ପାଇଁ ପ୍ରାଣବଳି ଦେଇଛନ୍ତି । ବୁଦ୍ଧଙ୍କ କରୁଣାର ବାଣୀ ପ୍ରପୀଡ଼ିତଙ୍କ ପାଇଁ ଆଶାର ଉତ୍ସ ହୋଇରହିଛି । ଫ୍ଲରେନ୍‌ସ ନାଇଟିଙ୍ଗେଲଙ୍କ ସେବାର ଦୃଷ୍ଟାନ୍ତ ବିଶ୍ୱବିଦିତ ହୋଇଛି । ହେନରି ଡ୍ୟୁନାଣ୍ଟଙ୍କ ଦ୍ୱାରା ପ୍ରତିଷ୍ଠିତ ରେଡ଼କ୍ରସ୍‌ର ସେବା ଯୁଦ୍ଧ କ୍ଷେତ୍ରରେ ତଥା ମହାମାରୀ, ବନ୍ୟା, ବାତ୍ୟା ସମୟରେ ବିଶ୍ୱଜନପ୍ରିୟ ହୋଇ ପାରିଛି । ରୋଟାରୀ ଆନ୍ଦୋଳନପରି ବହୁ ବିଶ୍ୱପ୍ରସିଦ୍ଧ ସେବା ସଂସ୍ଥା ନିଜ ବିଚାରକୁ ପଛରେ ପକାଇ ଦେଇ ଅନ୍ୟମାନଙ୍କ ହିତ ପାଇଁ (Service before self) ବହୁସଂଖ୍ୟାରେ ଆଗେଇ ଆସୁଛନ୍ତି । ମୁଠାଏ ମୁଠାଏକୁ କୋଠ କରି ପଣ୍ଡିତ ମଦନ ମୋହନ ମାଲବ୍ୟ ଶିକ୍ଷା, ସଂସ୍କୃତି, ସାହିତ୍ୟ, ଦର୍ଶନ ଆଦି ବିଭାଗରେ କାଳଜୟୀ କୋଠଘର ସୃଷ୍ଟି କରିପାରିଛନ୍ତି । ସେବା ସମୁଦ୍ର ମଧ୍ୟରୁ ଏହିସବୁ ମାତ୍ର କେତୋଟି ଉପଲଖଣ୍ଡ । ଭାରତର ସ୍ୱାଧୀନତା ସଂଗ୍ରାମକାଳରେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଗ୍ରାମାଞ୍ଚଳ ପ୍ରପୀଡ଼ିତମାନଙ୍କ ସେବା ଏକ ଧାରାବାହିକ ରୂପ ନିଏ । ''ଦରିଦ୍ର ନାରାୟଣ ସେବା''ର ପ୍ରଚଳନ ବହୁଳ ଭାବରେ କରାଯାଏ ।

ଏହି ସବୁ ଉଦ୍ୟମରୁ ସମାଜସେବା ଏକ ଶୃଙ୍ଖଳା, ସମର୍ପଣ ଓ ଅଧ୍ୟୟନର ବିଷୟ ଭାବରେ ଗୃହୀତ ହୁଏ । ବିଭିନ୍ନ ସ୍ତରରେ ଶିକ୍ଷକ, ଶିକ୍ଷାର୍ଥୀ ଓ ଶିକ୍ଷାୟତନ ସମାଜସେବାକୁ ଅଧ୍ୟୟନ ଓ ଅଭ୍ୟାସ ରୂପେ ଗ୍ରହଣ କରି ମାନବ ଜୀବନର ଅନିବାର୍ଯ୍ୟ କର୍ତ୍ତବ୍ୟ ଭାବରେ ସ୍ୱୀକୃତି ଦିଅନ୍ତି । ସମାଜ ବିଜ୍ଞାନର ଅଧ୍ୟୟନ ଫଳରେ ମାନବ ଜୀବନର ସାମାଜିକ ଓ ଆଧାତ୍ମିକ ଦିଗ ଉପରେ ଗୁରୁତ୍ୱ ଆରୋପ କରାଯାଉଛି । ତେଣୁ ସମାଜସେବା ଓ ସମାଜ ପ୍ରତି ମନୁଷ୍ୟର ଦାୟିତ୍ୱ ଓ ଅଙ୍ଗୀକାର ଶିକ୍ଷାର ଲକ୍ଷ୍ୟ ଭାବରେ ସ୍ୱୀକୃତ ହୁଏ ।

ଆଧାତ୍ମିକ ବିଜ୍ଞାନ ମଧ୍ୟ ଘୋଷଣା କରନ୍ତି ଯେ ଈଶ୍ୱର ହେଉଛନ୍ତି ସର୍ବମୟ କର୍ତ୍ତା ଓ ସ୍ରଷ୍ଟା । ତାଙ୍କ ବିନା ସୃଷ୍ଟି ଅସମ୍ଭବ । ତେଣୁ ସେ ଆମ୍ଭମାନଙ୍କୁ ଜୀବନ ଦେଇଛନ୍ତି । ପ୍ରାଣ ଧାରଣର ସଙ୍କେତ ଭାବରେ ନିଃଶ୍ୱାସ ପ୍ରଶ୍ୱାସ ଦେଇଛନ୍ତି । ଏଥିପାଇଁ ସେ କେଉଁ ପ୍ରତିଦାନ ଆଶା କରନ୍ତି ? ଆମ୍ଭେମାନେ ପରମେଶ୍ୱରଙ୍କ ସନ୍ତାନ । ଏଣୁ ଆମ୍ଭମାନଙ୍କର ସର୍ବଶ୍ରେଷ୍ଠ କର୍ତ୍ତବ୍ୟ ହେଉଛି ଯେ ଆମ୍ଭେମାନେ ନିଃସ୍ୱାର୍ଥଭାବରେ ଜୀବନ ଧାରଣ କରିବା । ସକଳ ପ୍ରାଣୀଙ୍କର ଆମେ ସେବା କରିବା ଓ ସେ ଦିଗରୁ ସମର୍ପିତ ହୋଇ ରହିବା । ଅନ୍ୟମାନଙ୍କ ସେବା କରିବା ଓ ସେମାନଙ୍କୁ ସୁଖୀ କରିବା ହେଉଛି ମନୁଷ୍ୟତା । କେବଳ ନିଜପାଇଁ ଆମେ ଏହି ସଂସାରରେ ଜୀବନଧାରଣ କରିଛୁ—ଏହା ଭାବିବା ଅନୁଚିତ ବରଂ କୃତଘ୍ନତା । କିନ୍ତୁ ଏପରି ଭାବି କାମ କଲେ ଏହା ଦୁଃଖଦାୟକ ହୁଏ । ଲୋକ ସମସ୍ତଙ୍କ ପାଇଁ ଆମ ଶରୀର ଓ ଜୀବନ । ପରୋପକାର ପାଇଁ ବଞ୍ଚିବାଦ୍ୱାରା ନିଜର୍ ହିତ ହୁଏ । ସମସ୍ତଙ୍କ ସେବା କରିପାରିଲେ ସ୍ୱୟଂ ସୁଖ ପାଇପାରିବା । ଏଠାରେ ଗୋସ୍ୱାମୀ ତୁଳସୀଙ୍କ ଉକ୍ତି ସ୍ମରଣ କରିବା :

*''ପରହିତ ବସ୍ ଜୀନକେ ମନ ମାଁ ହି*
*ତିନ୍ କହାଁ ଜଗୁ କୁଛ ଦୁର୍ଲଭ ନାହିଁ''*

ଅର୍ଥାତ୍ କେବଳ ପରହିତ ଯାହାଙ୍କ ମନରେ ଅଛି ତାଙ୍କୁ ସଂସାରରେ କିଛି ଅପ୍ରାପ୍ତ ହୁଏ ନାହିଁ । ମହାପୁରୁଷ କହିଛନ୍ତି, ସମସ୍ତଙ୍କ ମଙ୍ଗଳ କର, ନିଜର ମଙ୍ଗଳ ନିଶ୍ଚିତ ହେବ । କେବଳ ନିଜ ପାଇଁ ସଂସାରରେ ରହିବା ଉଚିତ ନୁହେଁ । ପରନ୍ତୁ ସଂସାର ପାଇଁ ଆମେ ଏଠାରେ ରହିବା । ଏହାଦ୍ୱାରା ଇହଲୋକ ଓ ପରଲୋକ ଆମପାଇଁ ଅମାପ ମଙ୍ଗଳମୟ ହେବ । ଏହି ଚେତନା ହିଁ ସାର୍ଥକ ଜୀବନର ଉତ୍ସ ଓ ଉତ୍ସର୍ଗ, ଯାହା ଫଳରେ ସେବା ମନୁଷ୍ୟର ସକଳ ପ୍ରାଣୀ ଓ ସୃଷ୍ଟିପ୍ରତି ସ୍ୱାଭାବିକ ଧର୍ମ ଓ କର୍ମ ହୋଇ ପଡ଼େ । ମାନବବାଦୀ ମହିମାଧର୍ମ ବିଶ୍ୱାତ୍ମାର ମୁକ୍ତି ମାଧ୍ୟମରେ ନିଜ ଜୀବାତ୍ମାର ମୁକ୍ତି ସାଧନ ପାଇଁ ଉଦ୍ଦିଷ୍ଟ । ଉଦାହରଣ ହେଉଛି ଭୀମଭୋଇଙ୍କ ନିମ୍ନୋକ୍ତ ଐକାନ୍ତିକ ଉତ୍ସର୍ଗପଣିଆ :

*''ମୋ ଜୀବନ ପଛେ ନର୍କେ ପଡ଼ିଥାଉ,*
*ଜଗତ ଉଦ୍ଧାର ହେଉ ।''*

ବହୁକାଳ ପୂର୍ବରୁ ଦ୍ୱାପର ଯୁଗରେ ରନ୍ତିଦେବ ସେହି ବିଶ୍ୱକଲ୍ୟାଣକାରୀ ଚେତନା ପ୍ରକାଶ କରିଛନ୍ତି । ଶ୍ରୀମଦ୍ ଭାଗବତର ନବମ ଅଧ୍ୟାୟର, ପରଦୁଃଖକାତର ରନ୍ତୀଦେବଙ୍କ କଥା । ଦରିଦ୍ର ବୃଦ୍ଧ ସେ, ସମ୍ପୂର୍ଣ୍ଣ ନିଃସ୍ୱ, ଯାହା ଆକସ୍ମିକ ମିଳିଯାଏ, ସେତକ ବୁଭୁକ୍ଷୁଙ୍କ

ପାଟିରେ ଦେଇ ସପରିବାର ଉପବାସ ରହନ୍ତି । ଥରେ କୌଣସି ଖାଦ୍ୟ ଓ ପାଣି ବିନା ଅଠଚାଳିଶ ଦିନ ଅତିବାହିତ କରିଥିଲେ । ପରିବାରର ସମସ୍ତେ କଣ୍ଠା ହୋଇଥାନ୍ତି ଓ ନିଢେ ଥରୁଥାନ୍ତି । ରନ୍ଧା ଗହମ, ପାଣି ଓ ଘିଅ ମିଶା ପାୟସ ତାଙ୍କୁ ମିଳିଗଲା । ଖାଇବାକୁ ବସିଥାନ୍ତି, ଜଣେ ବ୍ରାହ୍ମଣ ଅତିଥି ହାଜର ହେଲେ । ପାୟସରୁ କିଛି ତାଙ୍କୁ ଭକ୍ତିରେ ଅର୍ପଣ କଲେ । ସର୍ବତ୍ର ହରି ଅଛନ୍ତି, ତେଣୁ ସେ ଆନନ୍ଦିତ ହେଲେ । ବ୍ରାହ୍ମଣ ମଧ ସନ୍ତୁଷ୍ଟ ହୋଇ ଚାଲିଗଲେ । ଭୋକିଲା ସେମାନେ, ବଢ଼ାବଢ଼ି କରୁଥିବା ବେଳେ ଜଣେ ଶ୍ରମିକ ତାଙ୍କ ଅତିଥି ହେଲେ । ତାଙ୍କୁ ଶ୍ରୀହରି ବିବେଚନା କରି ବଳକା ଖାଦ୍ୟର ଅଧିକାଂଶ ତାଙ୍କୁ ପରଶି ଦେଲେ । ସେ ଖୁସିରେ ବାହୁଡ଼ି ଯିବାପରେ ଜଣେ ଶିକାରୀ ଆସିଗଲେ । ତାଙ୍କ ସଙ୍ଗରେ ପଲେ କୁକୁର ଥାନ୍ତି । ଶିକାରୀ କହିଲେ, ଆମେ ଭୋକିଲା, ଆମକୁ କିଛି ଖାଦ୍ୟ ଦିଅ । ଯାହା ଖାଦ୍ୟ ବଳିଥିଲା ରନ୍ତୀଦେବ ଦେଇଦେଲେ । ସେମାନଙ୍କ ମଧ୍ୟରେ ପ୍ରଭୁ ଅଛନ୍ତି, ତେଣୁ ସେ ଲମ୍ବ ହୋଇ ଶରଣାପନ୍ନ ହେଲେ । ବର୍ତ୍ତମାନ କେବଳ ପାଣି ବଳିଥାଏ, ଯାହାକୁ ଜଣେ ପିଇ ନିଜ ଶୋଷ ମେଣ୍ଟାଇ ପାରିବ, ସେତକ ସେ ମୁହଁ ପାଖକୁ ନେଲାବେଳକୁ ଜଣେ ଅଛୁଆଁ ଲୋକ ପହଞ୍ଚିଗଲେ, ଅନ୍ତତଃ ପାଣି ମୁନ୍ଦାକ ପାଇଁ ସେ ଚିତ୍କାର କରି କହିଲେ । ରନ୍ତୀଦେବ ଦୟାପରବଶ ହୋଇ ପିଇବା ପାଣି ବଢ଼ାଇ ଦେଇ କହିଲେ "ଅଷ୍ଟ ଐଶ୍ୱର୍ଯ୍ୟ ପାଇଁ ମୁଁ ପରମପିତାଙ୍କୁ ପ୍ରାର୍ଥନା କରୁନାହିଁ, ଜନ୍ମ-ମୃତ୍ୟୁ ଚକ୍ରରୁ ମୁକ୍ତି ମଧ ଚାହୁଁ ନାହିଁ । ମୋର କେବଳ ଏତକ ବାଞ୍ଛା ଯେ ମୁଁ ସକଳ ପ୍ରାଣୀଙ୍କ ଅନ୍ତରରେ ରହିବି ଓ ସେମାନଙ୍କ ଯନ୍ତ୍ରଣା ଭୋଗକରିବି । ଏହା ଫଳରେ ସେମାନେ ଦୁଃଖମୁକ୍ତ ହେବେ । ଛଟପଟ ହେଉଥିବା ଲୋକଟିକୁ ପାଣି ମୁନ୍ଦାଏ ଦେଇ ମୁଁ କ୍ଷୁଧା, ତୃଷା, ଯନ୍ତ୍ରଣା, କ୍ଳାନ୍ତି ଆଦି ସକଳ କ୍ଳେଶମୁକ୍ତ ହୋଇଛି । ଅନ୍ୟଙ୍କ ପାଇଁ ଯନ୍ତ୍ରଣା ଭୋଗିବା ହିଁ ପ୍ରକୃତ ସୁଖ । "କାମୟେ ଦୁଃଖତପ୍ତାନାମ୍ ପ୍ରାଣିନା ଆର୍ତ୍ତି ନାଶନମ୍" । ନିଜର ବ୍ୟକ୍ତିଗତ ସୁଖ ସମୃଦ୍ଧି, ସ୍ୱର୍ଗଲାଭ ଆଦି ଗୌଣ ବା ନଗଣ୍ୟ ହୋଇଯାଇଛି । ନାସ୍ତି କରାଯାଇଛି । ସମ୍ପୂର୍ଣ୍ଣ ପ୍ରତ୍ୟାଖ୍ୟାନ କରାଯାଇଛି । ମୁଖ୍ୟଭାବରେ ଆତୁରର ଆବାହନ କରାଯାଇଛି, ଦୁଃଖଗ୍ରସ୍ତ ଲୋକମାନଙ୍କ ଦୁଃଖାପନୋଦନ ପାଇଁ । ନିଜ ସୁଖ ପାଇଁ ବ୍ୟାକୁଳ ବ୍ୟକ୍ତିଙ୍କୁ କହି ଦିଆଯାଇପାରେ ଯେ ଅମାପ ପାପ, ତାପ ଓ ପରିତାପରୁ ସଂସାର ବଞ୍ଚିଗଲେ ସେଥିରେ ବ୍ୟକ୍ତିର ସୁଖ, ସମୃଦ୍ଧି ଓ ସୌନ୍ଦର୍ଯ୍ୟ ରହିଛି । ଜନସେବାର ଏହି ନୂତନ ଦୃଷ୍ଟିକୋଣ ଆଣିଦିଏ ଅଭିନବ ଉନ୍ମାଦନା ଓ ବିଶୁଦ୍ଧ ଚେତନା । କର୍ମ ଓ ଧର୍ମ ପ୍ରତି ଶାଶ୍ୱତ ଓ ଚିରପୋଷିତ ଦୃଷ୍ଟିଭଙ୍ଗୀ ଆସେ । କର୍ମ ହୁଏ ନିଷ୍କାମ; ସଦା ନିତ୍ୟ ଓ ନୂତନ ଧର୍ମ । ଏହାଦ୍ୱାରା ଧର୍ମ ଦଳୀୟ, ସାଂପ୍ରଦାୟିକ ଓ ସଂକୀର୍ଣ୍ଣ ରୂପ ନିଏ ନାହିଁ । ଶୁଦ୍ଧ ଚେତନା ଓ ବିମଳାନନ୍ଦ ପ୍ରବାହର ଧାରା ଧରାପୃଷ୍ଠରେ ମଣ୍ଡିତ ହୁଏ । ଭୀମଭୋଇଙ୍କର ଦୁଇଟି ଭଜନର ଘୋଷା ଏଠାରେ ଉଲ୍ଲେଖ କରିବା ।

ଗୋଟିଏ ହେଉଛି, ''ଧର୍ମରେ ଧରିତ୍ରୀ ରହିଲା'' ଓ ଅନ୍ୟଟି ''ଧର୍ମ ଧାରଣେ ଧରିତ୍ରୀ ରହିଛି ଚାରିଯୁଗରେ'' । ଏବେ ଦେଖନ୍ତୁ ଧରିତ୍ରୀକୁ ଧରିଛି ଧର୍ମ ଓ ସମୟର ଗତିରେ ଆବହମାନକାଳରୁ ଧର୍ମ ଧରିରଖିଥିବାରୁ ଧରିତ୍ରୀ ରହିଛି । ଏହି ମର୍ମରେ ମହାଭାରତରେ ଶାନ୍ତି ପର୍ବରେ ଧ୍ୱନିତ କେତୋଟି ଧାଡ଼ି ସାମାନ୍ୟ ଦୀର୍ଘ ହେଲେ ହେଁ ଉଦ୍ଧାର କରିବା :

''ଧାରଣାତ୍ ଧର୍ମଃ ଇତ୍ୟାହୁ ଧର୍ମୋ ଧାରୟତେ ପ୍ରଜାଃ
ୟତ୍ ସ୍ୟାତ୍ ଧରଣ ସଂ ଯୁକ୍ତଃ ଧର୍ମଃ ଇତି ନିଶ୍ଚୟଃ ।
ଅହିଂ ସାର୍ଥାୟ ଭୂତାନାଂ ଧର୍ମପ୍ରବଚନଂ କୃତମ,
ୟଃ ସ୍ୟାଦ୍ ହିଂ ସୟା ଯୁକ୍ତଃ ସ ଧର୍ମଃ ଇତି ନିଶ୍ଚୟଃ ।
ପ୍ରଭବାର୍ଥାୟ ଭୂତାନାଂ ଧର୍ମପ୍ରବଚନଂ କୃତମ୍,
ୟଃ ସ୍ୟାତ୍ ପ୍ରଭବସଂ ଯୁକ୍ତଃ ସ ଧର୍ମଃ ଇତି ନିଶ୍ଚୟଃ ।
ସର୍ବେଷାଂ ଇହ ସହୃନ୍ନିତ୍ୟଂ ସର୍ବେଷାଂ ଚ ହିତେରତଃ,
କର୍ମଣା ମନସା ବାଚା ସ ଧର୍ମଃ ବେଦ ଯାଜଳେ ।''

ଅର୍ଥାତ୍ ଧର୍ମ ଶବ୍ଦ ଧାରଣାରୁ ଉତ୍ପନ୍ନ । ଧର୍ମରେ ସବୁ ଲୋକ ସ୍ଥିର ହୋଇ ଅଛନ୍ତି । ଯାହା ସମସ୍ତଙ୍କୁ ସମ୍ଭାଳେ ଏବଂ ମିଶାଏ ତାହାହିଁ ଧର୍ମ । ଏହା ନିଶ୍ଚିତ କଥା । ସବୁ ପ୍ରାଣୀଙ୍କର ଦୁଃଖ ଯେପରି ନହୁଏ ଓ ସମସ୍ତଙ୍କ ମଙ୍ଗଳପାଇଁ ଧର୍ମର ବ୍ୟାଖ୍ୟା କରାଯାଇଛି । ଯେଉଁ କାମରୁ ସମସ୍ତଙ୍କର ମଙ୍ଗଳ ହୁଏ, ଅର୍ଥାତ୍ କାହାର ଦୁଃଖ ହୁଏ ନାହିଁ, ତାକୁ ଧର୍ମ ବୋଲି ଜାଣିବ । ଏହା ନିଶ୍ଚିତ କଥା । ଯେଉଁ ଲୋକ ସବୁବେଳେ ହୃଦୟରେ ସମସ୍ତଙ୍କ ମଙ୍ଗଳ କାମନା କରନ୍ତି ଓ ନିଜ କାମରେ, ମନରେ ତଥା ବାକ୍ୟରେ ସମସ୍ତଙ୍କ ମଙ୍ଗଳ କରନ୍ତି, ହେ ଯାଜଲି, ସେମାନେ ଧର୍ମକୁ ଜାଣନ୍ତି ।

ଏହାହିଁ ମାନବ ପ୍ରେମ, ମାନବସେବା, ଉତ୍କୃଷ୍ଟ କର୍ମ ଓ ଧର୍ମ । ଏହି ଧର୍ମ ହେଉଛି ଜ୍ଞାନ ଓ କର୍ମ । ମୀମାଂସାରେ ମଧ୍ୟ ଉଲ୍ଲିଖିତ ଯେ ''ଯ ଏବ ଶ୍ରେୟସ୍କରଃ ସ ଏବ ଧର୍ମ ଶବ୍ଦେନ ଉଚ୍ୟତେ ।'' ଯାହା ମଙ୍ଗଳକର ତାହାହିଁ ଧର୍ମ ଓ ଧର୍ମହିଁ ତେଣୁ ସର୍ବୋତ୍କୃଷ୍ଟ ସେବା ।

ଭାଗବତକାରଙ୍କ ଉକ୍ତି ଏଠାରେ ସ୍ମରଣୀୟ । ଏହା ହେଉଛି: ''ଜୀବରେ ଦୟା ଥିବ ଚିତ୍ତେ, ମହାଗହନ ଏ ଜଗତେ ।'' ଏହା ସାରା ସଂସାରରେ ମହାଗହନ ହେଲା କିପରି ? 'ଜୀବରେ ଦୟା' ସବୁ ଧର୍ମର ସବୁଯୁଗରେ ସର୍ବତ୍ର ମୂଳମନ୍ତ୍ର ଓ ମୌଳିକ ସାଧନା । ଅତଏବ ଏହି ସାଧନାଟି ଯେ ମହାଗହନ ଏହା କହିବାର ତାତ୍ପର୍ଯ୍ୟ କଅଣ ? ଦୀନ, ଦୁଃଖୀ ଓ ଦଳିତଙ୍କ ଚିତ୍ରରେ ବ୍ୟଥିତ ହୋଇ ଦାନର ଘୋଷଣା କରିବା ସହଜ କଥା ଓ ସମସ୍ତେ କରିପାରୁଛନ୍ତି । କିନ୍ତୁ ସେମାନଙ୍କ ସହିତ ଏକାତ୍ମ ହୋଇ ସ୍ୱୀୟ ଚିତ୍ତରେ ରୋଗର ଯନ୍ତ୍ରଣା,

ଅଭାବର ଜ୍ୱାଳା, ଅନଟନର ବ୍ୟଥା ଆଦିକୁ ଅନୁଭବ କରିବା କେବଳ ଅନୁଭବୀର ହୃଦୟରେ ସମ୍ଭବ । ଏହା ବଚନର ବିଷୟ ନୁହେଁ । କାଗଜ କଲମରେ ହିସାବର ପାଠନୁହେଁ । ଅନାବିଳ ହୃଦୟରେ ଆବିଳତାର ଗଭୀରତାକୁ ନିର୍ଣ୍ଣୟ କରିବା ସଙ୍ଗେ ସମାନ ନୁହେଁ । ଆମ ହୃଦୟ ହେବ ଏକ ତାପମାନଯନ୍ତ୍ର, ଯଦ୍ୱାରା ଦୁଃଖ, ଦୈନ୍ୟ ଓ ଦୁର୍ଦ୍ଦଶାର ମାତ୍ରା ପ୍ରତିଫଳିତ ହୋଇ ପାରିବ ପୂର୍ଣ୍ଣମାତ୍ରାରେ । ମାନବିକ ଚେତନାରେ ପୂର୍ଣ୍ଣ ଜୀବନ ଲାଭ କରିବାକୁ ହେବ । ମନକୁ ସର୍ବଦା ଶୁଭଚିନ୍ତକ କରାଯିବ । ଏଥିରେ ସଂକୀର୍ଣ୍ଣତାର ସ୍ଥାନ ନାହିଁ । ବେଦରେ କୁହାଯାଇଛି, ସଙ୍କୁଚିତ ଓ ସଂକୀର୍ଣ୍ଣ ଦୃଷ୍ଟିର ମନୁଷ୍ୟ ନିକଟରେ ଧନରାଶି ବ୍ୟର୍ଥ ହୁଏ । ସେମାନେ ଯେ ନିଜ ଘରେ ଧନଧାନ୍ୟ ଠୁଳ କରନ୍ତି; ତାହା ନୁହେଁ, ନିଜର ମୃତ୍ୟୁକୁ ଠୁଳ କରନ୍ତି । ଯିଏ ନିଜ ଭାଇଭଉଣୀଙ୍କୁ ଦିଅନ୍ତି ନାହିଁ, ଯୋଗ୍ୟ ବ୍ୟକ୍ତିଙ୍କୁ ଦାନ କରନ୍ତି ନାହିଁ, କେବଳ ନିଜ ଚିନ୍ତା କରୁଥାନ୍ତି, ଧନର ବୃଦ୍ଧି ପାଇଁ ସତତ ଚେଷ୍ଟିତ ଥାନ୍ତି, ସେ କେବଳ ପାପ କରନ୍ତି । ଏହାହିଁ ଭୀମ ଭୋଇଙ୍କର ଉଲ୍ଲିଖିତ ପଦର ମହତ୍ତ୍ୱ ଓ ପୁନଶ୍ଚ ବେଦରେ ପ୍ରତିଧ୍ୱନିତ 'କେବଲାଘୋ ଭବତି କେବଲାଘୀ' । ତ୍ୟାଗପୂତ ଜୀବନର ଏକାନ୍ତ ପ୍ରତିଫଳନ ହେଉଛି ସେବା । ଗାର୍ହସ୍ଥ୍ୟ ଜୀବନରେ 'ଅତିଥି ଦେବୋ ଭବ' କଥା କୁହାଯାଇଛି । ସ୍ୱାମୀ ବିବେକାନନ୍ଦ ମଧ୍ୟ 'ଦରିଦ୍ର ଦେବୋ ଭବ' ଓ 'ମୂର୍ଖ ଦେବୋ ଭବ' କହିଛନ୍ତି । ଜନସେବାର ପବିତ୍ର ପୀଠ ହେଉଛି ପରିବାର । ପର ଓ ଆପଣାର ଭେଦ ନାହିଁ । ଭିତର ଓ ବାହାରକୁ ଆପଣା ମଧ୍ୟରେ ଏବଂ ପରସ୍ପର ସହିତ ଧରିରଖେ ସ୍ନେହ ଓ ସେବା ।

ଆନନ୍ଦର କଥା, ଆମ ଦେଶ ଓ ରାଜ୍ୟ ତଥା ବିଶ୍ୱରେ ସେବାର ପରିସର ବୃଦ୍ଧି ପାଉଛି । ସେବକଙ୍କ ସଂଖ୍ୟା ବଢୁଛି । ସେବାର ସଂସ୍ଥା ଓ ସଂଗଠନ ମଧ୍ୟ ଅଧିକରୁ ଅଧିକ ହେଉଛି । ଏହି ସମସ୍ତଙ୍କ ପ୍ରେରଣା ଓ ପ୍ରାଣର ଉସ୍ଥ କ୍ରମେ କ୍ରମେ ଅଧିକ ମାନବପ୍ରେମୀ ଓ ମାନବଧର୍ମୀ ହେବାରେ ଲାଗିଛି । ଏହା ଏକ ଆନ୍ଦୋଳନର ରୂପ ନେବା ଅଧିକ ଆନନ୍ଦଦାୟକ । ସେ ସ୍ୱପ୍ନ ସତ୍ୟ ହେବ, ଯେଉଁଦିନ ପ୍ରାଣୀ ମାତ୍ରକେ ମନୁଷ୍ୟର ସେବା, ସ୍ନେହ ଓ ସଦିଚ୍ଛାରେ ଯୋଡ଼ି ହୋଇଯିବେ । ସବୁଠାରୁ ଅଧିକ ଆନନ୍ଦର କଥା, ଏହି ଆନ୍ଦୋଳନ ଆମ ଛାତ୍ରସମାଜ ଓ ଯୁବଗୋଷ୍ଠୀର ପ୍ରାଣସ୍ପର୍ଶ କରୁଛି । ବାଲ୍ୟକାଳରୁ ଏହି 'ଧର୍ମ ଧନ' ସଂଚୟ କରିବାରେ ସେମାନେ ଲାଗିପଡ଼ିଛନ୍ତି । ଜାତୀୟ ସେବା ଯୋଜନା ଆଦି ବିଭିନ୍ନ ସେବା କାର୍ଯ୍ୟକ୍ରମରେ ସେମାନେ ସାମିଲ ହେଉଛନ୍ତି । ନିରକ୍ଷରତା ଦୂରୀକରଣ, ବୃକ୍ଷରୋପଣ, ସାମାଜିକ କୁସଂସ୍କାର ଦୂରୀକରଣ, ପରିବେଶ ସୁରକ୍ଷା, ଜନଜାଗୃତି, ରୋଗନିଦାନ ଓ ରୋଗୀ ସେବା, ଅନ୍ଧତ୍ୱ ଦୂରୀକରଣ, ରକ୍ତଦାନ, ଜନସଂଖ୍ୟା ଶିକ୍ଷା, ଦାରିଦ୍ର୍ୟ ଦୂରୀକରଣ, ମାତୃଶକ୍ତିର ସମ୍ମାନ ଓ ସମାନତା, ଜାତୀୟ ଐକ୍ୟ ଆଦି ଦେଶର ବିଭିନ୍ନ ସମସ୍ୟା ସେମାନଙ୍କ ଚିନ୍ତା, ଚେତନା ଓ କର୍ମବିଧିର ଅଙ୍ଗୀଭୂତ ହୋଇଛି । ମାନବିକ ଚେତନାର ଅବତରଣ ହେଉଛି ମାନବପ୍ରାଣରେ । ●

# ନବୋଦୟ

ଏଠାରେ ନବୋଦୟ ବିଦ୍ୟାଳୟ କଥା କୁହାଯାଉ ନାହିଁ, କୁହାଯାଉଛି ବିଦ୍ୟାଳୟର ନବୋଦୟ ସମ୍ବନ୍ଧରେ । ଏସବୁ ଆମ ଆଖି ଆଗର ଅନୁଷ୍ଠାନ, ଏପରି ପୁରୁଣା ଓ ପରିଚିତ ଯେ ଏଠି କିଛି ଆଖିଦୃଶିଆ ନୂଆ କ୍ୱଚିତ୍ ଦେଖାଯାଏ । ଯେପରି ଥିଲା ସେପରି ରହିଥିବାର ଜଣାଯାଏ, ବରଂ ଧୂଳି ମଳି ଭିତରେ ଜୀବନ୍ତ ଅନୁଷ୍ଠାନଗୁଡ଼ିକ ମଲା ବା ଦରମଲା ପରି ଲାଗେ । ପିଣ୍ଡଟେ ପଡ଼ିଥାଏ ସତ କିନ୍ତୁ ନାଡ଼ି ଏପରି ମାନ୍ଦା ଯେ ପ୍ରତିଦିନ ବା ମଝିରେ ମଝିରେ କୌଣସି ଛାତ୍ର ସହାୟକ ନୂତନ କାର୍ଯ୍ୟ କରାଯିବାର ଜଣାଯାଏନାହିଁ । ଛାତ୍ରର ଚରିତ୍ର ନିର୍ମାଣ ପାଇଁ ଅନୁକୂଳ ବାୟୁମଣ୍ଡଳ ସୃଷ୍ଟି କରିବାକୁ ଶିକ୍ଷାୟତନରେ ନିରନ୍ତର ତତ୍ପରତା ପ୍ରକାଶ ପାଏନାହିଁ । ଆଧ୍ୟାତ୍ମିକ ଜୀବନର ଆଦର୍ଶ ତ ନଥାଏ, ଏ ପାଇଁ ପ୍ରେରଣା ମଧ୍ୟ ମିଳେନାହିଁ । ଦେଶ ଓ ସମାଜର ପରିବର୍ତ୍ତନ ଫଳରେ ନୂତନ ସମସ୍ୟା ଆସୁଛି । ପୁରାତନ ପରମ୍ପରା ଅକାମୀ ଅଚଳ ହେଲେହେଁ ସେସବୁକୁ ଫିଙ୍ଗିଦେଇ ଏହା ବଦଳରେ ବିଜ୍ଞାନ ସମ୍ମତ ବିଚାରଧାରା ଆଦରି ନେବାର ସଙ୍କଳ୍ପବଦ୍ଧ ପ୍ରୟାସ ନଥାଏ । ଅନ୍ୟ ପକ୍ଷରେ ଆଈମା ଅମଳର ଅନ୍ଧ ବିଶ୍ୱାସ ଓ କୁସଂସ୍କାରରୁ ଆମେ ମୁକ୍ତ ହୋଇପାରୁନାହିଁ । ଆମ ପାଠପଢ଼ା ଘର, ପୁସ୍ତକାଗାର, ବିଜ୍ଞାନାଗାର ଓ ଉପକରଣ ଯଥେଷ୍ଟ ନୁହେଁ ଓ ଏସବୁକୁ କ୍ରମେ ସମୃଦ୍ଧ କରିବା ପାଇଁ ଆମ ହାତରେ ପଇସା ନାହିଁ କିମ୍ୱା ଯୋଜନା ନାହିଁ । ଦୁର୍ଭାଗ୍ୟର କଥା, ଯାହା ଅଛି, ସେସବୁର ସଦୁପଯୋଗ ପାଇଁ କେହି ଉତ୍ସାହ ନେଉନାହାନ୍ତି ଓ ଆମ ଭିତରୁ ସେ ଉତ୍ସାହ ଆସୁନାହିଁ । ଆମବେଳେ ସ୍କୁଲ ଓ କଲେଜରେ ହସ୍ତାକ୍ଷର ଉପରେ ଜୋର ଦିଆଯାଉଥିଲା । ମୁଁ ଟ୍ରେନିଂ କଲେଜରେ ମଧ୍ୟ ଜୋର ଦେଇଛି । ଏବେ ସେସବୁ ଉଭେଇ ଗଲାଣି । ଅସ୍ପଷ୍ଟ ଓ ଅସୁନ୍ଦର ହସ୍ତାକ୍ଷର ସହିତ ଆମେ ଏତେ ଅଭ୍ୟସ୍ତ ହେଲୁଣି ଯେ କିଏ କାହାକୁ ସଜାଡ଼ିବ ? ବହି ପଢୁଛୁ, ଜ୍ଞାନ ମିଳୁଛି, କିନ୍ତୁ ସେ ଜ୍ଞାନ ଆମ ମସ୍ତିଷ୍କରୁ ବାହାରି କଥା, କାମ ଓ ଚିନ୍ତାରେ ପ୍ରକାଶ ପାଉନାହିଁ । ଜ୍ଞାନାର୍ଜ୍ଜନ ହେଉଛି ବୋଲି ସମସ୍ତେ କହୁଛନ୍ତି, କିନ୍ତୁ ଜ୍ଞାନାର୍ଜ୍ଜନ କିପରି କରାଯିବ, ଏକଥା ଅଜଣା ରହୁଛି । ସଂଯମ, ବ୍ରହ୍ମଚର୍ଯ୍ୟ

ଓ ସତ୍‌ଚିନ୍ତା ଉପରେ ଆମ ପିଲାବେଳେ ଆମ ଗୁରୁ ବାରମ୍ବାର ତାଗିଦ୍ କରୁଥିଲେ । କିନ୍ତୁ ଆଜିକାଲି ବିଶୃଙ୍ଖଳା, ବ୍ୟଭିଚାର ଓ ଦୁଶ୍ଚିନ୍ତାର ଲୀଳା ଚାଲିଛି । ମୁଁ ଦେଖିଛି, ପରୀକ୍ଷାକୁ ଆମର ବଡ଼ ଡର ଥିଲା । ମହାତ୍ମା ଗାନ୍ଧୀ ଆମକୁ ଏତେ ନିର୍ଭୟ କରିଦେଲେ ଯେ ପରୀକ୍ଷାରେ ଜବରଦସ୍ତ କପି କରିବୁ ଏହି ଅଭୟ କବଚ ଆମେ ପାଇଗଲୁଣି । ପରୀକ୍ଷାକୁ ଅପଦସ୍ଥ କରିବା ପାଇଁ ଆମେ ଲାଗିପଡ଼ିଛୁଁ ଓ ନବପ୍ରବର୍ତ୍ତନ କରାଯାଉଛି । ଦେଶପ୍ରେମ, ଗଣତନ୍ତ୍ର, ଜାତୀୟ ସଂହତି, ଧର୍ମନିରପେକ୍ଷତା ଆଦି ବିଷୟରେ ଖୁବ୍ କୁହାଯାଉଛି । କାର୍ଯ୍ୟରେ ଅଧଲା ପାହୁଲାର ନାହିଁ ।

ଆଚ୍ଛା, ଏପରି ଅନେକ କଥା କହିହେବ । କରାଯାଉନାହିଁ କାହିଁକି ? ଉତ୍ତରରେ କୁହାଯାଉଛି, ଶିକ୍ଷାର ବିକାଶ ପାଇଁ ପଇସା ନାହିଁ । ପ୍ରାୟ ସବୁ ଖର୍ଚ୍ଚ ଦରମା ଦିଆରେ ଯାଉଛି । ଏସବୁ ବିକାଶର କଥା ଚିନ୍ତାକରିବା କିପରି ? ହଁ, କେତେକ ଉପକରଣ ଆବଶ୍ୟକ । ସେଥିପାଇଁ ଅର୍ଥ ବ୍ୟବସ୍ଥା କରାଯିବା ଉଚିତ । ପୁନଶ୍ଚ କମିଟି, କମିଶନଙ୍କ ସୁପାରିଶକୁ କାର୍ଯ୍ୟରେ ପରିଣତ କରିବା ପାଇଁ ବିଭାଗୀୟ କର୍ମକର୍ତ୍ତାଙ୍କ ଆଦେଶ ଆବଶ୍ୟକ । ପାଠ୍ୟକ୍ରମରେ ସ୍ଥାନ ପାଇବା ଉଚିତ । ରୁଟିନ୍‌ରେ ସ୍ୱତନ୍ତ୍ର ପିରିଅଡ଼ ଦରକାର । ଏ ବିଷୟ ପରୀକ୍ଷାର ଅନ୍ତର୍ଗତ ହେବା ଉଚିତ । ସତରେ ଏପରି ବିଧିବଦ୍ଧ ବ୍ୟବସ୍ଥା ନହେଲେ କିଏ କାହିଁକି ଏଥିରେ ହାତଦେବ ? ହାତରୁ ଖାଇ ଘୋଡ଼ା ଆଗରେ ଡେଇଁଲେ ଏଣ୍ଟିଟିଟାନାସ୍ ଇଞ୍ଜେକ୍ସନ୍ ନେବାକୁ ପଡ଼ିବ । ଆହୁରି ମଧ୍ୟ ଏହା ଜଣାଯାଇଛି ଯେ ବିଭାଗୀୟ ଆଦେଶ ପ୍ରତି ଜନସମର୍ଥନ ସହଜରେ ମିଳେନାହିଁ । ଆଦେଶ ପାଳିବାକୁ ଆନ୍ତରିକତା ରହେନାହିଁ । କାରଣ ଏହା ଶିକ୍ଷକମାନଙ୍କ ଉପରେ ଲଦିଦିଆଗଲାପରି ଲାଗେ । ବ୍ୟୟବରାଦ ଓ ବୈଧାନିକ ବ୍ୟବସ୍ଥା ବ୍ୟତୀତ ଓ ବଦଳରେ ସମ୍ମିଳିତ ଆଲୋଚନା ଦ୍ୱାରା ଶିକ୍ଷାର ପରିବର୍ତ୍ତନ କରାଯାଇପାରେ । ପାଠ ତ୍ୟାଗ ଓ ବିଫଳତା, ସମୟାନୁବର୍ତ୍ତିତା, ଶିକ୍ଷାର ସାର୍ବଜନୀନୀକରଣ, ସାକ୍ଷରତାର ପ୍ରସାର ଓ ସମୃଦ୍ଧୀକରଣ, ସ୍ୱଦେଶାନୁରାଗ, ସମତା ଓ ମମତା, ଶିକ୍ଷାର୍ଥୀଙ୍କ ଗୁଣାତ୍ମକ ମାନର ଶ୍ରୀବୃଦ୍ଧି, ଆକର୍ଷଣୀୟ ପରିବେଶ, ଅଧ୍ୟୟନ ଓ ଅଧ୍ୟାପନା ପ୍ରଣାଳୀ, ପାଠର ପ୍ରାସଙ୍ଗିକତା, ସମାଜସେବା, ସ୍ୱାଶ୍ରୟିକ, ଶ୍ରମମର୍ଯ୍ୟାଦା, ମୂଲ୍ୟବୋଧଭିତ୍ତିକ ଶିକ୍ଷା, କର୍ତ୍ତବ୍ୟବୋଧ, ସତ୍ୟ, ଅହିଂସା, ଭ୍ରାତୃଭାବ, ଶ୍ରେଣୀଶୃଙ୍ଖଳା ଓ ଜୀବନରେ ଏସବୁର ପ୍ରୟୋଗ ଇତ୍ୟାଦି ସମସ୍ୟା ରହିଛି ଓ ଆମ୍ଭେମାନେ ଉଣାଅଧିକେ ଏସବୁର ତୀବ୍ରତା ଅନୁଭବ କରୁଛୁଁ । ଶିକ୍ଷାସମିତି, ଶିକ୍ଷକ ସଂଗଠନ, ବିଦ୍ୟାଳୟରେ ଶିକ୍ଷକ ବୈଠକ, ପରିଦର୍ଶକଙ୍କ ଦ୍ୱାରା ଆହୂତ ସଭା, ଶିକ୍ଷାବିଭାଗୀୟ ଆଲୋଚନା ଆଦିରେ ଚର୍ଚ୍ଚା

କରାଯାଇପାରନ୍ତା । ଜୀବନ ଜୀବିକାର ଅଙ୍ଗୀଭୂତ ହୁଅନ୍ତା । ଚିନ୍ତନ ପ୍ରକାଶ ପାଆନ୍ତା । ମିଳିତ ମସୁଧାରେ ନିଷ୍ପତ୍ତି ନିଆଯାଇପାରେ । ମୂଳକଥା ହେଉଛି ଚିନ୍ତା, ଚେତନା ଓ ଚିନ୍ତନ । ଅଭିଭାବକ, ଶିକ୍ଷକ, ଶିକ୍ଷାର୍ଥୀ ଓ ଶିକ୍ଷାପରିଦର୍ଶକ ସମସ୍ତେ ଏଥିରେ ଭାଗନେବା ଉଚିତ ।

ମନେ ପଡୁଛି, Lord Rutherfordଙ୍କ କଥା । ସେ ଗ୍ରେଟ୍‌ବ୍ରିଟେନର ପ୍ରଖ୍ୟାତ ବୈଜ୍ଞାନିକ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ବ୍ରିଟେନ୍‌ର ଅର୍ଥନୀତି ଭାଙ୍ଗିପଡ଼ିଲା । କୋଇଲା, ବିଜୁଳି ଓ ଅନ୍ୟାନ୍ୟ ଅତ୍ୟାବଶ୍ୟକ ଜିନିଷର ଘୋର ଅଭାବ । ଜଣେ ସାମ୍ବାଦିକ ରଥରଫୋର୍ଡ଼ଙ୍କୁ ପଚାରିଲେ, ଆମର ପାଣ୍ଠି ନାହିଁ, ଆମ ଦେଶର ଉନ୍ନୟନ ପାଇଁ ଆମେ କଅଣ କରିବା ? ଉତ୍ତରରେ ସେହି ବୈଜ୍ଞାନିକ କହିଲେ, We can think. It is easy to spend money, specially when it is given to us by somebody else. But it is really difficult to think. ଠିକ୍‌କଥା, ଆମେ ଆମ କ୍ଷେତ୍ରରେ ଚିନ୍ତା କରିବା । ଠୁଳକରି ଚିନ୍ତାକୁ କାମରେ ଲଗାଇବା । ଅଣ୍ଟା ଭିଡ଼ିବା । କାନ୍ଧକୁ କାନ୍ଧ ଲଗାଇଦେବା । ଅନେକ ଦୁର୍ଦ୍ଦିନ କଟିଯିବ । ସୁଦିନର ସୂତ୍ରପାତ ହେବ ।

ସୌଭାଗ୍ୟର କଥା; ଶିକ୍ଷାୟତନ, ଶିକ୍ଷକ, ଶିକ୍ଷକଶିକ୍ଷା ଓ ଶିକ୍ଷକ ସଂଗଠନ ସହିତ ତଳିପାରୁ ତାଳୁଯାଏ ଊଣାଅଧିକେ ସମ୍ପର୍କ ରହିଛି । ମୋର ହୃଦବୋଧ ହେଉଛି ଯେ ସ୍ୱ ସ୍ୱ ଶିକ୍ଷାକ୍ଷେତ୍ର ସହିତ ଆମ ସଂପୃକ୍ତି ଓ ସ୍ୱପ୍ନ କମି କମି ଯାଉଛି । ଶିକ୍ଷାର ପ୍ରସାର କିଛି କିଛି ହେଉଛି । ଶିକ୍ଷା ସ୍ୱରୂପର ପରିବର୍ତ୍ତନ ବିଷୟରେ ଶିକ୍ଷାଶାସ୍ତ୍ରୀମାନେ ଆମ ଧ୍ୟାନ ଆକର୍ଷଣ କରୁଛନ୍ତି । କିନ୍ତୁ କାହିଁ, ଆମେ ଶିକ୍ଷକମାନେ ଚେତନଶୀଳ, ଚିନ୍ତାଗ୍ରସ୍ତ ଓ ଧ୍ୟାନରତ ହୋଇ ପାରୁଛୁଁ କି ? ସମ୍ପୃକ୍ତିରୁ ସଫଳ ସମ୍ପାଦନା, ଏହି ଖିଅଟିକୁ ଆମେ ପାସୋରି ପକାଉଛୁଁ ।

ପ୍ରାଥମିକ ଶିକ୍ଷକ ସଂଘର ପ୍ରତିଷ୍ଠା କାଳରୁ ମୁଁ ଜଡ଼ିତ ହେବାର ସୌଭାଗ୍ୟ ପାଇଛି । ରାଜ୍ୟ ଶିକ୍ଷା ପ୍ରତିଷ୍ଠାନ (State Institute of Education)ର ଜଣେ କର୍ମୀ ଭାବରେ ପ୍ରାଥମିକ ଶିକ୍ଷାର ଗୁଣାତ୍ମକ ବିକାଶ ପାଇଁ ପ୍ରାଥମିକ ଶିକ୍ଷକ ସଂଘର ସହଯୋଗକୁ ଅନ୍ୟତମ ଉପାୟ ଭାବରେ ମାନିନେଇଛି ଓ ସେଥିପାଇଁ ଦାବି ହାସଲ କରିବା ସଙ୍ଗେ ସଙ୍ଗେ ଦାୟିତ୍ୱବୋଧ ସୃଷ୍ଟିକୁ ମାନ୍ୟତା ଦେଇଛି । ପ୍ରାଥମିକ ଶିକ୍ଷକ ସଂଘ ସହିତ କାର୍ଯ୍ୟ କରିଛି । ଅପରାହ୍ଣ ଅଧିବେଶନକୁ ଦାବି ଉପସ୍ଥାପନା କରିବା ପାଇଁ ବ୍ୟୟ କରାଯାଇଛି ଓ ପୂର୍ବାହ୍ନ ଅଧିବେଶନରେ ପ୍ରବନ୍ଧ ପାଠ, ଆଲୋଚନା, ଆଦର୍ଶ ପାଠଦାନ, ବିଜ୍ଞାନପାଠ ଦାନ, ବିଜ୍ଞାନ ଶିକ୍ଷା ଆଦି ଶୈକ୍ଷିକ କାର୍ଯ୍ୟକ୍ରମକୁ ସ୍ଥାନ ଦିଆଯାଇଛି । ମୋର ମନେହୁଏ ଏପର୍ଯ୍ୟନ୍ତ ବ୍ଲକ, ଜିଲ୍ଲା ଓ ରାଜ୍ୟସ୍ତରୀୟ ତଥା ଏପରିକି ଜାତୀୟ ସ୍ତରରେ ସମସ୍ତ ସମ୍ମିଳନୀ ଏହି ଢାଞ୍ଚାରେ ହେଉଛି ।

କାଳକ୍ରମେ ଆମ ରାଜ୍ୟରେ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ, ମାଧ୍ୟମିକ ଶିକ୍ଷକ ସଂଘ, ବେସରକାରୀ କଲେଜ ଶିକ୍ଷକ ସଂଘ ଓ ଶିକ୍ଷକ ମହାସଂଘ ଜନ୍ମଲାଭ କରେ । ସଂଖ୍ୟା, ସଂଗଠନ ଓ ନେତୃତ୍ୱ ଦୃଷ୍ଟିରୁ ଏ ସବୁ ସଂଘ ସୁନାମ ଅର୍ଜ୍ଜନ କରିଛି ଆମ ରାଜ୍ୟ, ଦେଶ ତଥା ବିଶ୍ୱରେ । ଜାତୀୟ ଓ ଆନ୍ତର୍ଜାତିକ ଚିନ୍ତାଧାରା ସହିତ ତାଳମେଳ ରକ୍ଷା କରିଛନ୍ତି । ନିୟମ ଓ ନିଷ୍ଠା ସହକାରେ ପ୍ରତିବର୍ଷ ସାମ୍ବିଧାନିକ ସମ୍ମିଳନୀ ସହିତ ଶିକ୍ଷା ସମ୍ମିଳନୀର ଆୟୋଜନ କରାଯାଏ । ମୂଲ୍ୟାୟନ, ପାଠ୍ୟକ୍ରମ, ପାଠ୍ୟପୁସ୍ତକର ବିଶ୍ଳେଷଣ, ଜାତୀୟ ସଂହତି, ଧର୍ମ ନିରପେକ୍ଷତା, ଶିକ୍ଷାନୀତି, ମାଧ୍ୟମିକ ଶିକ୍ଷା ପରିଷଦ ଆଦି ବିଷୟରେ କର୍ମଶାଳା, ସେମିନାର ଓ ଆଲୋଚନାର ବ୍ୟବସ୍ଥା କରାଯାଏ । ଜାତୀୟ ଓ ଆନ୍ତର୍ଜାତିକ ଆଲୋଚନାରେ ସଫଳ ପ୍ରତିନିଧିତ୍ୱ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ଅନୁରୋଧ କ୍ରମେ ସେମାନଙ୍କ ସାମ୍ବତ୍ସରିକ ଓ ସ୍ୱତନ୍ତ୍ର ଅଧିବେଶନର ସଫଳତା ପାଇଁ ଦକ୍ଷ ପରିଚାଳନା ଓ ଆତିଥ୍ୟ ପ୍ରଦାନ କରନ୍ତି । ମୁଁ ଅନୁଭବ କରିଛି ଓ ପ୍ରକାଶ ମଧ କରିଛି, ଏହି ସବୁ ସୁସଂଗଠିତ ସଂଗଠନଗୁଡ଼ିକର ସଦୁପଯୋଗ ଶିକ୍ଷାର ପ୍ରସାର ଓ ବିକାଶ ପାଇଁ କରାଯାଇନାହିଁ । ଆଲୋଚ୍ୟ ବିଷୟଗୁଡ଼ିକର ପ୍ରାସଙ୍ଗିକତା ଦୃଷ୍ଟିରୁ ଶିକ୍ଷା ବିଭାଗ, ମାଧ୍ୟମିକ ଶିକ୍ଷା ପରିଷଦ, ପରିଦର୍ଶକମଣ୍ଡଳିଙ୍କ ସହାୟତା ଓ ସହଯୋଗିତା ଯେପରି ପାଇବାର ଆଶା ରଖାଯାଇଛି ତାହା ସଫଳ ହୋଇନାହିଁ । ଅନ୍ତତଃ ପକ୍ଷେ ଶିକ୍ଷାର ବିଭିନ୍ନ ସ୍ତରରେ ଶିକ୍ଷକମାନଙ୍କ ସମାବେଶ ଏକ ସୁଯୋଗ, ଯାହା କି ବ୍ୟୟସାପେକ୍ଷ ହେଲେହେଁ ଆୟୋଜନ ଅସମ୍ଭବ ନୁହେଁ ।

ଏଥିମଧ୍ୟରେ ସମାନ୍ତରାଳ ଭାବରେ ସରକାରୀ ସ୍କୁଲ, କଲେଜ ଶିକ୍ଷକ ସଂଘ ମଧ ଗଢ଼ି ଉଠିଛି । ସାଧାରଣତଃ ଏସବୁ ସରକାରୀ ହୋଇଥିବାରୁ ବିଭାଗୀୟ କର୍ମକର୍ତ୍ତାଙ୍କ ଯୋଗଦାନ ସ୍ୱଭାବତଃ ସହଜ ହୋଇଥାଏ, କିନ୍ତୁ ବେସରକାରୀ ସଂଗଠନ ପରି, ଏମାନଙ୍କ ସମାବେଶର ସଦୁପଯୋଗ ପାଇଁ ପରିକଳ୍ପନା ନାହିଁ କହିଲେ ଚଳେ ।

ଏହା ଫଳରେ (୧) ଦାବି ସହିତ ଦାୟିତ୍ୱର ସମ୍ପର୍କ ସୁଦୂର ପରାହତ ହେଉଛି । (୨) ଏସବୁ ସଂଗଠନ କ୍ରମେ କ୍ରମେ ଅଧିକରୁ ଅଧିକ ଅଧିକାର ସାବ୍ୟସ୍ତ କରିବାର ସାମ୍ମୁଖ୍ୟ ହୋଇଯାଉଛି, (୩) ଶୈକ୍ଷିକ ଓ ସାମାଜିକ ସମସ୍ୟାର ଯାହା କିଛି ଆଲୋଚନା କରାଯାଉଛି, ତାହା ଆଖିଠାର ବା ଉପରଠାଉରିଆ ହୋଇଯାଉଛି । ବେଳ ଆସିବ, ସେସବୁ ବସ୍ତାଭାବେ ସୂତ୍ରଂ ଦଦ୍ୟାତ୍ ପରି ହେବ । (୪) ସମ୍ମିଳନୀ ମାଧ୍ୟମରେ ଶିକ୍ଷକ-ଶିକ୍ଷା ଅର୍ଥାତ୍ ଶିକ୍ଷକ ସମ୍ବଳ ବିକାଶ ହୋଇଥିବାରୁ ଏଥିପ୍ରତି ଗୁରୁତ୍ୱ ଦିଆଯିବା ଉଚିତ । (୫) ଶିକ୍ଷକ ଅଧିକାର ସର୍ବସ୍ୱ ହୋଇଗଲେ ଶିକ୍ଷକ ସମ୍ବଳ ବିଶେଷକରି ଯୁବଶକ୍ତି ବ୍ୟର୍ଥ

ହେବା ଦେଶ ପକ୍ଷରେ ଘୋର କ୍ଷତିକାରକ । (୬) ଏଥିଯୋଗୁଁ ଶିକ୍ଷକ ନିର୍ବୈୟକ୍ତିକ (dehumanised) ଓ ଯାନ୍ତ୍ରିକ (mechahnical) ହୋଇଗଲେ ଏହାରି ପରିଣତି ଶିକ୍ଷାର୍ଥୀ ବିକାଶ ଦିଗରେ ବିଷମୟ ହୁଏ । ଶେଷରେ (୭) ସରକାରୀ ଓ ବେସରକାରୀ ଦୃଷ୍ଟିରୁ ଗୋଟିଏ ସ୍ତରରେ ଯଥା ସ୍ତରରୁ ସ୍ତର ମଧ୍ୟରେ ଯୋଗାଯୋଗର ଅଭାବ ହେତୁ ଶିକ୍ଷାର ବିକାଶ ବାଧାପ୍ରାପ୍ତ ହୁଏ । ଶିକ୍ଷାର ବିଭିନ୍ନ ସ୍ତର ମଧ୍ୟରେ ପୃଥକବାଦିକା, ମନସ୍ତତ୍ତ୍ୱ ଓ ଦର୍ଶନ ଦୃଷ୍ଟିରୁ ଏକାନ୍ତ ଅବାଞ୍ଛନୀୟ । ଏହା ଫଳରେ Education complex ଓ Intensive area-development ହୋଇପାରେ ନାହିଁ । ନବ ପ୍ରବର୍ତ୍ତନ ଶିକ୍ଷାର ଗୋଟିଏ ସ୍ତରରେ ସୀମିତ ହେବା ଯୋଗୁଁ ସଫଳ ହୋଇପାରେ ନାହିଁ । ତେଣୁ ଶିକ୍ଷା ଯେ ଏକ ବଡ଼ ଧରଣର ସାଧନ ଏଥିରେ ଶିକ୍ଷକଙ୍କ ଆସ୍ଥା ତୁଟିଯାଏ ।

୧୯୮୬ ଜାତୀୟ ଶିକ୍ଷାନୀତିରେ ନବୋଦୟ ବିଦ୍ୟାଳୟ ସମ୍ପର୍କରେ ସୁପାରିଶ କରାଯାଇଛି । କିନ୍ତୁ ଏହାର କୋଡ଼ିଏ ବର୍ଷ ପୂର୍ବରୁ କୋଠାରୀ କମିଶନ୍ Neighbourhood school ବିଷୟରେ ପରାମର୍ଶ ଦେଇଛନ୍ତି । ଏହାକୁ ଶିକ୍ଷାୟତନ ସମୂହର ନବୋଦୟ ବୋଲି ବିଚାର କରାଯାଇପାରେ ।

ସମସ୍ତ ଶିକ୍ଷାକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ, ଯଥା—ସ୍କୁଲ ଶିକ୍ଷା ଓ ଉଚ୍ଚତର ଶିକ୍ଷା । ବାରବର୍ଷବ୍ୟାପୀ ସ୍କୁଲ ଶିକ୍ଷାର ବିକାଶ ଅତ୍ୟାବଶ୍ୟକ ହୋଇପଡ଼ିଛି । ଏଥିପାଇଁ ଏକ ସମୂହ ଆନ୍ଦୋଳନ ଆବଶ୍ୟକ । ସେଥିରେ ସଚେତନ ସମ୍ପୃକ୍ତି ସହିତ ସାମଗ୍ରିକ ଓ ସମନ୍ୱିତ ଦୃଷ୍ଟିକୋଣ ରହିବା ଉଚିତ ।

ବସ୍ତୁତଃ ସକଳ ଶିକ୍ଷାୟତନ ଓ ଯାବତୀୟ ସୁସଂଗଠିତ ଅନୁଷ୍ଠାନରେ ନବୋଦୟର ଚେତନା ଅନୁଭୂତ ହେବା ଉଚିତ । ଏହାକୁ ସୃଷ୍ଟିକରି ସକ୍ରିୟ ରଖିବା ପାଇଁ ପ୍ରଣୋଦିତ ପ୍ରଚେଷ୍ଟା ଆବଶ୍ୟକ । ଏହାର ଅଧୋଗତି ଫଳରେ ନିଷ୍କ୍ରିୟ କରିଦେବା ଆପଣାଛାଏଁ ସାଧିତ ହୁଏନାହିଁ । ତେଣୁ ଆମ ଉଦ୍ୟମର ନିଷ୍ଠା ଓ ସାଧନା ସର୍ବଦା ନବୋଦୟ ଅଭିମୁଖୀ କରିବାକୁ ପଡ଼ିବ ।



# ଜନଶିକ୍ଷା ଓ ଜାତୀୟ ସଂହତି

ଜାତୀୟ ସଂହତିର ଅନ୍ୟତମ ସାଧନ ହେଉଛି ଜନଶିକ୍ଷା । ଏହାର ବିକାଶରେ ଜନଶିକ୍ଷା ସାହାଯ୍ୟ କରେ । ଜନଶିକ୍ଷାର ଅଭାବ ହେତୁ ଜାତୀୟ ସଂହତି ବିପନ୍ନ ହେଉଛି ବୋଲି କୁହାଯାଇପାରେ । ଜାତୀୟ ଜୀବନ ଥୟ ହୋଇ ରହୁନାହିଁ । ଏହା ଆଶାନୁରୂପ ଅଗ୍ରଗତି କରିପାରୁ ନାହିଁ । ଆମ ଭିତରେ ଛୋଟ ଛୋଟ କଥାରେ ଝଗଡ଼ା ଲାଗି ରହୁଛି । ଦେଶକଥାରେ ଧ୍ୟାନ ଦେବାକୁ ମନ କାହିଁ ? ସତରେ, ଜନଶିକ୍ଷା ହେଲେ ଆମ ମନ ଓ ଦେଶ ବିଶ୍ୱମନୋଭାବ ଆଡ଼କୁ ଆଗେଇଯିବ ।

କଥା ହେଉଛି, ଜନଶିକ୍ଷା କଅଣ ? ଜନସାଧାରଣ ଚେତି ନାହାନ୍ତି । ସଙ୍କୋଚ ଓ ଲଜ୍ଜା ହେତୁ ନିଶଉଠା ପାଠ ବୋଲି ଗ୍ରହଣୀୟ ହେଉନାହିଁ । ଦାନା କନା ଏଠୁ ମିଳିବ କି ? ଏହି ପ୍ରଶ୍ନର ସିଧା ଉତ୍ତର କାମରେ ମିଳୁନାହିଁ । ବାବୁଭୟାମାନେ ସହଜେ ତ ବହିପାଠରେ ଅଭ୍ୟସ୍ତ । ସେମାନେ ଜନଶିକ୍ଷା କହିଲେ ସେଇଆ ବୁଝନ୍ତି । ଖାଲି କଲମ ଧରିଲେ ଚଳିବ । ଅକ୍ଷର ଚିହ୍ନିଲେ ସାକ୍ଷର ହେବ । ଏହି କାମଚଳା କଥାଟିର ଭିଆଣ ସେମାନେ କରିଛନ୍ତି । ଏହାଛଡ଼ା ଅନେକ ନୀରବ କର୍ମୀ ଆମ ଦେଶରେ ଅଛନ୍ତି । ସେମାନେ ସରକାରୀ ଓ ଅଣସରକାରୀ ହୋଇପାରନ୍ତି, ସେମାନେ ମଧ୍ୟ ଜନଶିକ୍ଷାର ଏହି ଚାଲୁ ଅର୍ଥରେ ଭାସିଯାଆନ୍ତି । ଅକ୍ଷରଯୁକ୍ତ ମନୁଷ୍ୟ, ସେ ସାକ୍ଷର ମନୁଷ୍ୟ, ଏପରି ସାକ୍ଷର ଲୋକଙ୍କ ସଂଖ୍ୟା ଯେପରି ସେପରି ହେଉ ବଢ଼ିଚାଲୁ ।

କିନ୍ତୁ ଜନଶିକ୍ଷା ଏକ ଧାରାବାହିକ କାର୍ଯ୍ୟକ୍ରମ । ପ୍ରେରକ ଓ ସହାୟକ ବଛା ଯାଆନ୍ତି । ସେମାନଙ୍କୁ ତାଲିମ ଦିଆଯାଏ । ସହାୟକଙ୍କ ତାଲିମ ପାଇଁ ପେଟିକା ତିଆରି କରାଯାଇଛି । ନାନା ପ୍ରକାର ପଠନ ସାମଗ୍ରୀ ଲେଖାଯାଇଛି । ଜନଶିକ୍ଷା କେନ୍ଦ୍ର ପାଇଁ ପ୍ରାଚୀର ପତ୍ର ହୋଇଛି । ପରିବାର କଲ୍ୟାଣ, ପରିବେଶର ସୁରକ୍ଷା, ଦେଶର ଅଖଣ୍ଡତା, ସଂଚୟ, ମାନବିକ ମୂଲ୍ୟବୋଧ ଆଦି ବିଭିନ୍ନ ବିଷୟକୁ ନେଇ ବଡ଼ ବଡ଼ ଚାର୍ଟ ଓ ଚିତ୍ର

ଯୋଗାଇ ଦିଆଯାଉଛି । ଶିକ୍ଷାକ୍ରମ ପରେ ମୂଲ୍ୟାୟନ କରାଯାଏ । ସଫଳ ଶିକ୍ଷାର୍ଥୀମାନଙ୍କୁ ପ୍ରମାଣପତ୍ର ଦିଆଯିବାର ବ୍ୟବସ୍ଥା ରହିଅଛି । ରାଷ୍ଟ୍ରୀୟ ସାକ୍ଷରତା ମିଶନ ଦେଶର ସାକ୍ଷରତା ଆନ୍ଦୋଳନକୁ ସଫଳ କରିବା ପାଇଁ ବାଟ ଦେଖାଉଛନ୍ତି, ବିଚାର କରୁଛନ୍ତି, ପରାମର୍ଶ ମଧ୍ୟ ଦେଉଛନ୍ତି । ରାଜ୍ୟସ୍ତରରେ ଠିକ୍ ସେଇଆ କରାଯାଉଛି । ସାକ୍ଷରତା ମିଶନ ରହିଛି । ସାକ୍ଷରତାକୁ ଚାଲୁ ରଖିବା ପାଇଁ ଜନଶିକ୍ଷା ନିଳୟ ଗଠନ କରାଯାଇଛି । ଏସବୁ କାମରେ ଆହୁରି ଉନ୍ନତି କରାଯାଇପାରେ । ସବୁ ସ୍ତରରେ ମନପ୍ରାଣ ଦେବା ପାଇଁ ଅଧିକ ଆବଶ୍ୟକ ହୋଇପାରେ । ଏଥିରୁ ଏହା ନିଶ୍ଚିତ ହୁଏ ଯେ ଜନଶିକ୍ଷା ଏକ ବିଧିବଦ୍ଧ ଶିକ୍ଷାକାର୍ଯ୍ୟକ୍ରମ । ସରକାରଙ୍କ ସହିତ କାନ୍ଧ ଲଗାଇ ସ୍ୱେଚ୍ଛାସେବୀ ସଂଗଠନ ଲାଗିଛନ୍ତି । ଏହା ଭଲଭାବରେ ସଂଗଠିତ ହୋଇଛି । ଏହା ଏକ ଜାତୀୟ ଆନ୍ଦୋଳନ । ଦେଶର ଉନ୍ନତି ଦେଶବାସୀଙ୍କ ଦ୍ୱାରା କରାଯାଉଛି । ତେଣୁ ଏହା ଜାତୀୟ ସଂହତିକୁ ଅଧିକ ଦୃଢ଼ କରିଦେବ ।

ତେବେ, ଜନଶିକ୍ଷା କାହାପାଇଁ ? ଆମ ଦେଶର ଅଗଣିତ ନିରକ୍ଷର ଲୋକମାନଙ୍କ ପାଇଁ । ଏମାନେ ଆମ ଗାଁଗଣ୍ଡା, ବସ୍ତି ଓ ବଣଜଙ୍ଗଲରେ ରହନ୍ତି । ଏମାନଙ୍କ ମଧ୍ୟରେ ବହୁସଂଖ୍ୟକ ମହିଳା ଅଛନ୍ତି । ଏମାନେ ଖୁବ୍ ଗରିବ, ଦିନମଜୁରିଆ ଓ ଖଟିଖିଆ । ଏମାନେ ପଛରେ ପଡ଼ିଛନ୍ତି । ଆମେ ସବୁ ଧୋବଧାଉଳିଆ, ଏହି ମଳିମୁଣ୍ଡିଆଙ୍କୁ ପଛରେ ପକାଇ ଦେଇଛୁ । ସେମାନେ ଆମକୁ ପଛରୁ ଟାଣୁଛନ୍ତି । ଏହା ଫଳରେ ଜାତୀୟ ସଂହତି ଦୃଢ଼ ହେବ କି ? ବରାବର ବିବାଦ ଲାଗି ରହିଛି । ଆମ ଉନ୍ନୟନ ଯୋଜନାର ସୁଫଳ ସେମାନେ ପାଇପାରୁ ନାହାନ୍ତି । ଥିଲାବାଲା ଲୋକ ଏମାନଙ୍କୁ ଠକେଇ ଦେଉଚନ୍ତି । ବାଟମାରଣା କରୁଛନ୍ତି । ଏମାନେ ବଂଚିତ, ଦିନକୁ ଦିନ ଅଧିକ ବଂଚିତ ଓ ଗରିବ ହେଉଛନ୍ତି । ଖଳ ଲୋକମାନେ ଏମାନଙ୍କୁ ଧରି କନ୍ଦଳ କରୁଛନ୍ତି । ଏମାନଙ୍କୁ ଦାନାକନା ମିଳୁନାହିଁ । ଚୁଲିଚାଳ ନାହିଁ । ନିରାଶ ଜୀବନ ଏମାନଙ୍କର । ଏମାନଙ୍କ ଅସନ୍ତୋଷ ଦେଶର ଘୋର କ୍ଷତି କରିବ । ତେଣୁ ଦେଶର ବିକାଶ ହୋଇ ପାରୁନାହିଁ । ଶିକ୍ଷାର ଅଭାବରୁ ବିଜ୍ଞାନ ଓ କାରିଗରି ବିଦ୍ୟାକୁ କାମରେ ଲଗାଯାଇପାରୁନାହିଁ । ବଳଦିଆ ଢଙ୍ଗରେ କାମ ଚାଲିଚି । ଉତ୍ପାଦନ ବଢୁ ନାହିଁ । ପ୍ରାକୃତିକ ବିପଦରେ ଏମାନେ ନିଜକୁ ସୁରକ୍ଷିତ କରିପାରୁ ନାହାନ୍ତି । ମୃତ୍ୟୁରେ ପଡୁଛନ୍ତି । ରୋଗରେ ସଢୁଛନ୍ତି । ଆୟ ତ କମ୍ ବା କିଛି ନାହିଁ । ଏମାନେ ସଞ୍ଚିବେ କଅଣ ? ଏମାନେ ଅସହାୟ । ଦେଶର ମେରୁଦଣ୍ଡ ସିଧା ରହିପାରୁ ନାହିଁ । ଜନଶିକ୍ଷା ଏଇଥିପାଇଁ— ସେମାନଙ୍କର ନିଜ ଉପରେ ବିଶ୍ୱାସ ରହିବ । ଭରସା ହେବ । ନିଜ ଗୋଡ଼ରେ ଠିଆ ହେବେ । ଦେଶ ମଜଭୁତ ହେବ । ଜନଶିକ୍ଷାଦ୍ୱାରା ଦେଶରେ ସାମାଜିକ ବିପ୍ଳବ ହେବ ।

ଅନ୍ୟ ଏକ ଦିଗରୁ ବିଚାରିବା । ଜାତୀୟ ସଂହତିର ସମସ୍ୟା କଅଣ ? ଆମ ଦେଶ ଏକ ବିଶାଳ ଭୂଖଣ୍ଡ । ଅନେକ ଛୋଟ ବଡ଼ ରାଜ୍ୟ ଅଛି । ଜନସଂଖ୍ୟା ଖୁବ୍ ବେଶୀ ଓ ଏହା ବଢ଼ିବାରେ ଲାଗିଛି । ଲୋକମାନେ ବିଭିନ୍ନ ଭାଷା କହନ୍ତି । ଗୋଟିଏ ଭାଷାରେ କହିଲେ ଅନ୍ୟ ଭାଷାକୁ ବୁଝି ହୁଏ ନାହିଁ । ବିଭିନ୍ନ ବିଭିନ୍ନ ଧର୍ମ ଆଚରଣ କରନ୍ତି । ମାଟିର ପ୍ରକୃତି ବିଭିନ୍ନ ପ୍ରକାରର, କେଉଁଠି ପାହାଡ଼ିଆ ତ ଅନ୍ୟ କେଉଁଠି ସମତଳ ଅଞ୍ଚଳ । ଜଳବାୟୁରେ ଫରକ ରହିଛି । କେତେକ ରାଜ୍ୟ ସମୁଦ୍ରକୁ ଲାଗିଛି, ଆଉ କେତେକ ସମୁଦ୍ରଠାରୁ ବହୁ ଦୂରରେ । ଅନେକ ସମସ୍ୟା ଆମର ଅଛି ଓ ସେସବୁ ବଡ଼ ଜଟିଳ । ଏହି ସବୁ ବିଭିନ୍ନତା ହେତୁ ଜାତୀୟ ସଂହତି ବିପନ୍ନ ହେବା ସ୍ୱାଭାବିକ । ସମସ୍ତେ ଶିକ୍ଷା ପାଇଲେ ପରସ୍ପରକୁ ବୁଝିବା ସହଜ ହୁଅନ୍ତା । ଲୋକଙ୍କ ମଧ୍ୟରେ ସ୍ୱଭାବ ଆସନ୍ତା । କିନ୍ତୁ ପ୍ରତି ଦଶଜଣ ମଧ୍ୟରେ ସାତଜଣ ଶିକ୍ଷାର ସୁଯୋଗ ପାଇ ନାହାନ୍ତି । ଏହା ଫଳରେ ବିରୋଧ ଓ ବିଦ୍ୱେଷ ବରଂ ବଢୁଛି । ଆମେ ସବୁ ଅଲଗା ଅଲଗା ହୋଇଯାଉଛୁ ।

ଆମେ ଭାରତୀୟ ହେବା । ଭାରତ ଆମର ଓ ଆମେ ଭାରତର । ଗୋଟିଏ ମା'ର ଭାଇଭଉଣୀ ପରି ଆମେ ଚଳିବା । ଆମେ ସବୁ ଏହି ଗୋଟିଏ ସୂତ୍ରରେ ବନ୍ଧା ହେବା । ଆମ ଦେଶ ମହାନ୍ ଓ ଏହି ମହାନ୍ ଦେଶକୁ ଆମେ ଅଧିକ ମହାନ୍ କରିବା । ଏହି ଚେତନା ଜନଶିକ୍ଷା ଆମ ହୃଦୟରେ ଆଣିଦେବ । ଆମକୁ ଏପରି ସଚେତନ କରିବା, ଜନଶିକ୍ଷାର ଅନ୍ୟତମ ଉଦ୍ଦେଶ୍ୟ । ଆମର ବିଭିନ୍ନ ଭାଷା ଓ ସାହିତ୍ୟ ସମୃଦ୍ଧ । ଧାର୍ମିକ ପରମ୍ପରା ମହାନ୍ । ଏସବୁ ବିଭିନ୍ନତା ମଧ୍ୟରେ ଏକତାର ଚେତନା ଆମକୁ ଏକ କରିଦେବ । ଆମେ ଖଣ୍ଡିତ ହେବା ନାହିଁ । ଆମ ଦେଶ ଓ ଆମେ ଏହି ଦେଶବାସୀ ଭାରତୀୟ, ସବୁ ବୁଝି, ଜାଣି ଅଖଣ୍ଡିତ ହୋଇ ମିଳିମିଶି ରହିବା । ଏହି ବିଶାଳ ଦେଶରେ ଆମେ ବିରାଟପଣିଆ ଅନୁଭବ କରିବା । ନିରକ୍ଷର ଲୋକମାନେ ସମାଜରେ ଗଣା ଯାଉନାହାନ୍ତି । ଶିକ୍ଷା ପାଇଲେ ସେମାନେ ନାଗରିକର ମର୍ଯ୍ୟାଦା ପାଇବେ । ନିଜ ନିଜ ଅଧିକାର ଜାହିର କରିବେ । ଦେଶ ଓ ସମାଜ ପ୍ରତି କର୍ତ୍ତବ୍ୟ କରିବେ । ନିଜ ଚେଷ୍ଟାରେ ନିଜ ଅବସ୍ଥାର ଉନ୍ନତି କରିବେ । ତ୍ୟାଗ, ଅହିଂସା, ସେବା, ସତ୍ୟ, ଭାଇପଣିଆ ସ୍ନେହ ଆଦି ମାନବିକ ଗୁଣ ଆମ ଦେଶର ମହାନ୍ ପୁରୁଷଙ୍କଠାରୁ ସେମାନେ ଶିଖିବେ । ଯଥାର୍ଥରେ ଜନଶିକ୍ଷା ପୁସ୍ତକ ଆମ କଥା (୩ୟ ଭାଗ)ରେ କୁହାଯାଇଛି :

*''ସେଇତ ଜନନୀ ଭାରତବର୍ଷ*
*ଆମରି ଜନମ ଭୂଇଁ ।''*

ଏହାଫଳରେ ଆମ ଜାତୀୟ ସଂହତି ନିଶ୍ଚିତ ଭାବରେ ସୁଦୃଢ଼ ହେବ । ଜନଶିକ୍ଷା ଏହି ଚେତନା ସୃଷ୍ଟି କରିବ । ଏହାଛଡ଼ା ଜାତୀୟ ସଂହତିର ବିକାଶ ପାଇଁ ଜନଶିକ୍ଷାର ପରିସର ଖୁବ୍ ବ୍ୟାପକ । ସଚେତନ ମନୁଷ୍ୟ ନିଜକୁ ଉନ୍ନତ କରିବ । ସେ ଅନ୍ୟମାନଙ୍କ ସୁଖଦୁଃଖରେ ମିଳିମିଶି ଚଳିବ । ଦେଶ ଓ ଦଶ ତା'ର ଚିନ୍ତାରେ ରହିବ । କେବଳ ନିଜ ସୁଖ ନୁହେଁ, ସମଗ୍ର ପରିବେଶ ପାଇଁ ନିଜ ଚିନ୍ତା ଓ ଚେତନା ପ୍ରସାରିତ ହେବ । ସେ ଅନ୍ୟ ଉପରେ ନିର୍ଭର ନ କରି ନିଜେ କର୍ମକ୍ଷମ ହୋଇ ସ୍ୱାଭିମାନୀ ପୁରୁଷ ହେବ । ନିଜ ଦକ୍ଷତା ବଢ଼ାଇବ ଓ ବୈଜ୍ଞାନିକ ପ୍ରଣାଳୀ ଆଦରିବ । ନିଜ ପେଟ ପୋଷିବା ପାଇଁ ମନ ନ ଦେଇ ସେ ଭଲ ଭାବରେ ଚଳିବ ଓ ଅନ୍ୟମାନଙ୍କୁ ନିଜ ଉଦାହରଣ ଦେଖାଇବ, ସାହାଯ୍ୟ ମଧ୍ୟ କରିବ ।

ଆମ କଥା (୨ୟ ଭାଗ)ରେ ଅଛି :

*ବଢ଼ାଇବା ରୋଜଗାର,*
*ଖଟିବା ଖାଇବା ଖୁସିରେ ରହିବା*
*ସୁଖେ ଚଳିବ ସଂସାର*

ଆମେ ଏପରି କଲେ, ଚଳିଲେ, ଆମକୁ ମିଳିବ ଏହି ଅନୁଭୂତି—

*''ଗୋଟିଏ ହାତର ପାଞ୍ଚଟି ଆଙ୍ଗୁଳି କେହି ନୁହେଁ କାହା ଭଳି*
*ପାଞ୍ଚଜଣଯାକ ଏକମନ ହେଲେ ପରବତ ଦେବେ ଟାଳି ।''*

କୋଟି କୋଟି ଲୋକର ଗୋଟିଏ ମନ । ଅନେକ ଭିତରେ ଏକ ଆତ୍ମା । ଏହା ଆମ ଜାତୀୟ ସଂହତି । ଜନଶିକ୍ଷା ଏହି ଲକ୍ଷ୍ୟରେ ଚାଲିଛି ଓ ଚାଲିବ ।

ଗାଁର ଗରିବ ପାଠପଢ଼ି ନାହାନ୍ତି । ପାଠପଢ଼ା ବାବୁମାନେ ସେମାନଙ୍କୁ ଦୂରକୁ ହଟେଇ ଦେଇଛନ୍ତି । ଏମାନେ ଗରିବଙ୍କ କଥା ବୁଝିନାହାନ୍ତି, ଗରିବମାନେ ଏମାନଙ୍କ ପାଖ ପଶୁନାହାନ୍ତି । ପାଠପଢ଼ିବା, ଉନ୍ନତ ଜୀବନ ଯାପନ କରିବା ହେଉଛି ସେମାନଙ୍କ ଅଧିକାର । ଏହି ଅଧିକାର ସାବ୍ୟସ୍ତ କରିବା ବାବୁମାନଙ୍କ କର୍ତ୍ତବ୍ୟ । ଜନଶିକ୍ଷା ଉଭୟଙ୍କୁ ସଚେତନ କରୁଛି । ଏହାହେଲେ ଆମ ଦେଶ ଏକାଠି ରହିବ । ମଜଭୁତ ହେବ । ଆମ ଜାତୀୟ ସଂହତି ଏଥିଯୋଗୁଁ ଦୃଢ଼ ହେବ ।



# ସ୍ୱାର୍ଥ, ପରାର୍ଥ ଓ ପରମାର୍ଥ

କଥାରେ ଅଛି, ଆପେ ବଞ୍ଚିଲେ ବାପର ନାମ । ସତରେ, ସ୍କୁଲରେ ନାମ ଲେଖାଅ; ଜମି କିଣ; ମାଲିମକଦ୍ଦମା କର; ଘର କର ଆଦି କାମରେ 'କାହାର ପୁଅ' କଥାଟି ପଡ଼େ । କିଏ ଏସବୁ କରୁଛି ଜଣାଇ ଦେବାକୁ ଯାଇ କୁହାଯାଏ, ଏଇ ଅମୁକଙ୍କ ପୁଅ । ଇତିହାସ ଲେଖାଯାଉ; ଜୀବନ ଚରିତ ହେଉ; ଜାତକ କରୁ; ବାହାବ୍ରତ ହେଉ ଏ ସବୁଥିରେ ବାପାଙ୍କ ନାମ । ପ୍ରକୃତପକ୍ଷେ ବାପାଙ୍କ ଦ୍ୱାହି, ଆଳ, ମୂଳକଥାଟି ହେଉଛି 'ଆମ କୀର୍ତ୍ତି' । ଆମ କାମର ଢୋଲବାଜା ନାଗରାଦିଅା । ଆମ ସ୍ତୁତି, ଆମ ଜୟଗାନ । ଆମ ନାମ ଓ ଆମ ଧାମ । ଆମ ସ୍ୱାର୍ଥ ଓ ଆମ ସେବା ।

ପୂରାପୂରି ସ୍ୱାର୍ଥପଣିଆ । ସ୍ୱାର୍ଥାନ୍ଧତା । ପଢ଼ିବା, ବଞ୍ଚିବା, ରହିବା, ଚଳିବା, ଖାଇବା, ଖେଳିବା, ହସିବା, କାନ୍ଦିବା—ସବୁଥିରେ ଆମ ସ୍ୱାର୍ଥ । ଅନ୍ୟ କାହାର ବିଚାର ନାହିଁ । ପଡ଼ିଶାଙ୍କୁ ଛାଡ଼, ଆମ ପରିବାରରେ ମଧ୍ୟ କେବଳ ଆମ ଚିନ୍ତା । ସତେ ଯେପରି, ବିଶ୍ୱସ୍ରଷ୍ଟାଙ୍କ ଅଶେଷ ଓ ଅନନ୍ତ ସୃଷ୍ଟିରେ ଆମେ ମାତ୍ର ଜଣେ । ସେତିକି ନୁହେଁ, ସବୁ କିଛି ଉପେକ୍ଷିତ, କିନ୍ତୁ ଆମ ପାଇଁ ସବୁ ଅପେକ୍ଷିତ । ଆମେ ହିଁ ଆମ କେନ୍ଦ୍ର, ଆତ୍ମକୈନ୍ଦ୍ରିକତା, କାହିଁକି ଏପରି ହେଲା ?

ଏହି ପ୍ରଚାରର ଯୁଗ ବର୍ତ୍ତମାନ ପ୍ରଚାରସର୍ବସ୍ୱ ହୋଇଯାଇଛି । ସହରଟା ତ କମ୍ପୁଛି, ଗାଁଗଣ୍ଡା ବାଦ ପଡୁନାହିଁ । ଜନବିସ୍ଫୋରଣ ଫଳରେ ମନୁଷ୍ୟ କଷ୍ଟେମଷ୍ଟେ ଦିପାଦ ପକାଇ ପାରୁଛି । କିନ୍ତୁ ବିଜ୍ଞାପନ ପତ୍ରପାଇଁ ସେତକ ଜାଗା ମିଳୁନାହିଁ । ଘର ଭିତରକୁ ପଶିଯାଉଛି, ହାଣ୍ଡିଶାଳ ବି ବାକି ନାହିଁ । ମନୁଷ୍ୟ ମନୁଷ୍ୟକୁ ଦେଖିପାରୁନାହିଁ, ସେ ନିଜର ନଗ୍ନଚିତ୍ର ଦେଖିବାରେ ଅଭ୍ୟସ୍ତ ହେଉଛି । ସେ ନିଜ ଚେହେରା ସଜାଡ଼ିବାରେ ଲାଗିଛି । ବହିରାବଣର ପ୍ରଦର୍ଶନ ଓ ପ୍ରଚାରରେ ସେ ଅନ୍ୟଙ୍କ ପ୍ରତିଦ୍ୱନ୍ଦ୍ୱୀ ହେଉଛି । ଆଚ୍ଛା ଦୁନିଆ ହେଇଛି, ଆମେ ଆମ ସ୍ୱାଭାବିକ ରୂପ, ବେଗ ଓ ଢଙ୍ଗ ଛାଡ଼ି କୃତ୍ରିମ ଓ କଳୁଷିତ ହୋଇଯାଉଛୁ । ଅନ୍ୟଙ୍କ

ଦୁର୍ବଳତାକୁ ଦେଖିବାରେ ଏତେ ଅଭ୍ୟସ୍ତ ଯେ ନିଜ ଦୁର୍ବଳତା ଲୁଚାଇ ଦେଉଛୁ । ଆଉ ସୁସ୍ଥ ଓ ସଚ୍ଚରିତ୍ର ହେବାର ସମୟ ଏବଂ ସୁଯୋଗ ନାହିଁ । ଦୋଷକୁ କାହା ପାଖରେ ସ୍ୱୀକାର କରିବାର ବେଳନାହିଁ । ପ୍ରଚାର ଓ ଅପପ୍ରଚାର ମଧ୍ୟରେ ଆମେ ଆତ୍ମକୈନ୍ଦ୍ରିକତାର ନିଶାସକ୍ତ ହୋଇ ଉନ୍ନତ ମାର୍ଜିତ ଓ ରୁଚିସମ୍ପନ୍ନ ହେବାର ରାହା ପାଉନାହିଁ । ନିଜେ ନିଜକୁ ନରକ ଭିତରକୁ ପେଲୁଛୁ, ଆମକୁ ସ୍ୱର୍ଗର ଦେବ ଭୂମିକୁ ନେବ କିଏ ? ଏପରି ସ୍ୱାର୍ଥାନ୍ଧ ମନୁଷ୍ୟ କରିବ କଅଣ—ନିଜର, ସାହିପଡ଼ିଶାର, ଦେଶର ଓ ବିଶ୍ୱର ?

'ନିଜର ମୁକୁର ନିଜ ଆଗେ ଥୋଇ, ନିଜ ରୂପ କିହେ ନ ଦେଖୁଛ ଭାଇ ?' କବିଙ୍କର ଏହି ଆହ୍ୱାନମୂଳକ ପ୍ରଶ୍ନର ଉତ୍ତର ସେତେବେଳେ ମିଳୁ ନଥିଲା । ଉତ୍ତରଦାତା ନିର୍ବାକ୍ ରହୁଥିଲେ । ଅନ୍ତର ମଧ୍ୟରେ ଅନୁସନ୍ଧାନ କରୁଥିଲେ । ସେ ଅଟକି ଯାଇ ଭାବୁଥିଲେ, 'ନିଜର ତ ଦୋଷ ଅଛି, ସେ ଅନ୍ୟର ଦୋଷ ଖୋଜିବେ କି ? କିନ୍ତୁ ଆଜିକାଲି ସେ ପ୍ରଶ୍ନକୁ ଆଡ଼େଇ ଦିଆଯାଉଛି । ବଡ଼ିମାର ଫୁଟାଣି ତାଙ୍କି ଦେଉଛି । ପାଠ ଏତେ ହୋଇଛି ଯେ ଦ୍ୱାରମୁହଁରେ ନିଜ ନାମ ପାଖରେ ଡିଗ୍ରୀ ଡିପ୍ଲୋମା ପଦପଦବୀ ଲେଖିବା ପାଇଁ ଜାଗା ଅକୁଳାଣ ହେବାରୁ ଘର ଚାରିପଟେ ଲେଖି ଦେଉଛନ୍ତି । ବିଭବର ବୃଦ୍ଧି ଓ ଯଶଗୌରବର ସଂଗୀତ ମଧ୍ୟରେ ସେ ବୁଡ଼ି ରହୁଛନ୍ତି । ଜମିଜମାର ଅଧିକୃତ ଇଲାକାରେ ସେ ଅସମ୍ଭାଳ ହେଉଛନ୍ତି । ଯଥାର୍ଥରେ ଭାଗବତକାର ଲେଖିଚନ୍ତି—''ବିଷୟା ଯାହାର ଲୋଚନ, ହରଇ ଜ୍ଞାନ ବୁଦ୍ଧି ମନ ।'' ଜ୍ଞାନ, ବୁଦ୍ଧି, ମନ ଯାହାର ଯଦି ହଜିଥାଏ, ତେବେ ସେ ମନୁଷ୍ୟରୁ ହୀନ ହୁଏ । ପଶୁତ୍ୱରୁ ତଳକୁ ଖସିଆସେ । ତେବେ ସେ ଦୁର୍ଲ୍ଲଭ ଜନ୍ମର ଅଧିକାରୀ ହେଲା କି ? ସେ ତ ସ୍ୱାର୍ଥରେ ବନ୍ଧା । ଏହି ବନ୍ଧନ ଥିବାଯାଏ ସେ ପରମାର୍ଥପର ହେବା ତ ଦୂରର କଥା ପରାର୍ଥପର ହୋଇପାରିବ ନାହିଁ । ଉତ୍କଳଗୌରବ ମଧୁସୂଦନ ନିଃସ୍ୱାର୍ଥ ଜୀବନ ଯାପନ କରିବାର ଆହ୍ୱାନ ଦେଇଛନ୍ତି । ସ୍ୱାର୍ଥକୁ ସାରଥିକଲେ ଜାତି ନନ୍ଦିଘୋଷ ଅଚଳ ରହିବ ବୋଲି ସତର୍କ କରି ଦେଇଛନ୍ତି । ଏହାର ବହୁପୂର୍ବରୁ ଶଙ୍କରାଚାର୍ଯ୍ୟ ମୋହାଛନ୍ନ ସ୍ୱାର୍ଥକୁ ମୁଦ୍‌ଗରରେ ପିଟିଛନ୍ତି ଓ ଗାଇଛନ୍ତି :

*''ମା କୁରୁ ଧନଜନଯୌବନ ଗର୍ବଂ*
*ହରତି ନିମେଷାଦ୍ କାଳୋ ସର୍ବଂ*

*ମାହାମୟମିଦଂ ଅଖିଳଂ ହିତ୍ୱା*
*ବ୍ରହ୍ମପଦଂ ପ୍ରବିସାଶୁ ବିଦିତ୍ୱା ।''*

ଧନ, ଜନ ଓ ଯୌବନର ଗର୍ବ ସ୍ୱାର୍ଥାନ୍ଧତାର ଚିହ୍ନ । ଗୋଟି ଗୋଟିକର ଗର୍ବ ଭୟଙ୍କର, ଯଦି ତିନୋଟି ଜଣକ ପାଖରେ ଏକକାଳୀନ ଠୁଳ ହୁଏ, ତେବେ ଅବସ୍ଥା

ସାଙ୍ଘାତିକ । ଏହା ଏଇଥିପାଇଁ ସ୍ୱାର୍ଥାନ୍ଧତାର ଚିହ୍ନ, ଯେହେତୁ ଅନ୍ୟର ଯେ ଧନ, ଜନ ଓ ଯୌବନ ରହିଛି, ଏହାର ସ୍ୱୀକୃତି ଦିଏ ନାହିଁ । କିମ୍ବା ନାସ୍ତି କରିଦିଏ । ପୁଣି ମୁହୂର୍ତ୍ତକ ମଧ୍ୟରେ କାଳ ଏସବୁ ହରଣ କରିନିଏ । ସେଥିପାଇଁ ପୁନଶ୍ଚ ଭାଗବତରେ କୁହାଯାଇଛି, ''ପୁତ୍ର, କଳତ୍ର ଦାସୀଦାସ, ଏସର୍ବ ବିଜୁଳି ପ୍ରକାଶ ।'' ଏହି ଛଳନାପୂର୍ଣ୍ଣ ଅହଙ୍କାର ଓ ଆଡ଼ମ୍ବରରୁ ରକ୍ଷା ପାଇବାକୁ ହେବ । ସେଥିପାଇଁ ପରାମର୍ଶ ଦିଆଯାଇଛି ଯେ ସବୁ କିଛି ମାୟାମୟ ବୋଲି ବିଚାରି ବ୍ରହ୍ମପଦରେ ସ୍ଥିର ନିଶ୍ଚିତ ରହିବାକୁ ହେବ । ଏହି ପରମାର୍ଥରୁ ହିଁ ସମସ୍ତ ସୃଷ୍ଟିର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟର କାରଣ । ପରମାର୍ଥ ହେଉଛନ୍ତି ସର୍ବସାର ଓ ସାରସତ୍ୟ । ଏହା ନିତ୍ୟ ଓ ସତ୍ୟ ।

ଜମିବାଡ଼ି, ଆୟଅଳଙ୍କାର, ଲୁଗାପଟା, ଗଛମାଛ, ବେଶଭୂଷଣ ଏସବୁ ମନୁଷ୍ୟର ଚଳିବା ପାଇଁ ଆବଶ୍ୟକ । ଜଣେ ଲୋକର ଯେପରି ପ୍ରତ୍ୟେକର ସେହିପରି ଏସବୁ ଆବଶ୍ୟକ । କିନ୍ତୁ ଅନ୍ୟକୁ ବଞ୍ଚିତ କରି କିମ୍ବା ଅନ୍ୟର ଅଧିକାର ଉପରେ ବଡ଼ିମାର, ବାଡ଼ିକୁ ମାଡ଼ି ଦେଇ ନିଜର ଅହଙ୍କାରକୁ ଜାହିରକରିବା ହେଉଛି ଚରମ ସ୍ୱାର୍ଥପଣିଆ । ଅହଙ୍କାରର ପଟୁଆର ଆହୁରି ଅଧିକ ବିପଜ୍ଜନକ । ଏସବୁ ଆମର ଯେତେ ଅଛି ତାହା ଆମ ପରିଚୟ ଦିଏ ନାହିଁ  କିମ୍ବା ଆମକୁ ବଡ଼ କରେ ନାହିଁ । ଆମେ ସେଥିରୁ ପରିଚିତ ହେଉ ନାହିଁ । ଯଥାର୍ଥତଃ ସେ ସବୁର ସଦୁପଯୋଗ କରି ଅନ୍ୟମାନଙ୍କ ସହଯୋଗରେ ଯେପରି ଚଳୁଛୁଁ ତାହାହିଁ ଆମ ପରିଚୟ । ଆମର ଗଛଟିଏ ଅଛି । ଛାଇରେ ଅନ୍ୟମାନେ ବସନ୍ତୁ । ଚଢ଼େଇ ବସା କରନ୍ତୁ । ସତରେ ବୁଢ଼ିଆଣୀ ଓ ମାଙ୍କଡ଼ସାର ଜାଲ ଆମ ଛୁଆଙ୍କୁ ନୂଆ ଲାଗିବ । ପତରକୁ ପତର ଯୋଡ଼ିଛି । ମଲାଡାଳଟା ଏପରି ଅଟକି ଯାଇଛି ଯେ ସତେ ଯେପରି ଗଛ ଛାଡ଼ିଦେଉନାହିଁ । ଏଣ୍ଡୁଅ ଓ ବହୁରୂପୀ ଆସି ଜୁଟିଗଲେଣି । ଏସବୁ କାରଣରୁ କୁହାଯାଏ, ବୃକ୍ଷରୋପଣ ଅପର ନିମନ୍ତେ । ସେ ପୁରୁଣାକାଳିଆ ଆମ୍ବ, ପଣସ ଓ ଜାମୁ ତୋଟା ଆଜି ଆଉ ନାହିଁ । ନୋହିଲେ ସେମାନେ ସାନ୍ଧି ଦିଅନ୍ତେ । ମାସ ମାସ ଧରି ଗାଁର ଗରିବ ସେ ତୋଟାରେ ଜୀବିକା କରି ଚଳନ୍ତି । ଏବେ ସବୁ କିଛି ଆମର ଓ ତୁମର ହେଉଛି । ସୁତ, ବିତ୍ତ, ଦାରା, ଧନକୁ ଆବୋରି ବସୁଛୁ । ଅଧିକାର ଆମର ଓ ସବୁକିଛି ଆମ ଅଧିକୃତ । ଆମ ଅହଂକାର ଆମକୁ ଖାଇଯାଉଛି । ଭକ୍ତକବି ମଧୁସୂଦନ ତିନୋଟି କଥା କହିଥିଲେ, 'ଉଜ୍ଜ୍ୱଳ କର ବିଶ୍ୱାସ', 'ସ୍ୱାର୍ଥ, ଅହଙ୍କାର, ନାଶ' ଓ 'ତେବେରେ ଲଭିବୁ ସେହି ପ୍ରାଣାରାମଧନ' । ମୂଳ କଥା ହେଉଛି 'ପ୍ରାଣାରାମ ଧନ' । ସେ ଧନକୁ ଛାଡ଼ି କେଉଁ ଧନରେ ପ୍ରୟୋଜନ ? ଏହାକୁ ଛାଡ଼ି ଆମେ ପ୍ରାଣପୀଡ଼ା ଓ ପ୍ରାଣନାଶନ ପାନ ଖୋଜୁଛୁ । ଯେଉଁଥିପାଇଁ ଆମେ ସ୍ୱାର୍ଥାନ୍ଧ ହେଉଛୁ ଓ ବିଜ୍ଞାପନରେ ମାତୁଛୁ । ସେ ସବୁ ଆମର ହୋଇ

ରହୁନାହିଁ । ଅର୍ଜନ କରୁଛୁ କେବଳ ପରିଶେଷରେ ବର୍ଜନପାଇଁ । ଆହୁରି ମଧ ସ୍ୱାର୍ଥରେ ଅନ୍ଧହୋଇ ପରିବେଶ ଓ ପ୍ରତିବେଶୀଙ୍କ ପ୍ରତି ସମ୍ବେଦନଶୀଳ ହୋଇପାରୁନାହିଁ । ଅନ୍ୟର ଦୁଃଖ ସୁଖ ପ୍ରତି ବିମୁଖ ହେଉଛୁ ।

ପରମାର୍ଥପରତା ମାନବର ମୌଳିକ ଉପାଦାନ । ବାହାରର ଚକଚକ ବିଜ୍ଞାପନ-ଯୋଗୁଁ ଏହି ଉପାଦାନ ଉପରେ ଧୂଳିପଡ଼ି ଯାଉଛି । ସ୍ୱଚ୍ଛକାଚରେ ଆମ ରୂପ ପ୍ରତିଫଳିତ ହୁଏ । ଅବିକଳ ଆମେ ଆପଣାକୁ ଦେଖୁ । କାଚ ଥାଏ, କିନ୍ତୁ ଧୂଳିମଳି ଢାଙ୍କି ହୋଇ ଏହା ସ୍ୱଧର୍ମଟିକୁ ହରାଇବସେ । କାଚର ମୂଲ୍ୟ ରହେନାହିଁ, ମାଟିଗୋଡ଼ି ପରି ହୋଇଯାଏ । ଆମେ ବିଜ୍ଞାନ ପଢୁଛୁ । ବିଜ୍ଞାନ ଶିକ୍ଷା ଏ ଯୁଗରେ ଆଜୀବନ ହୋଇଛି ବାହାରଟାକୁ ଜାଣିବାର ଇଚ୍ଛା ବାଲ୍ୟତବେଳୁ ପ୍ରବଳ ହୋଇଯାଉଛି । ଆମ ଭିତରଟାକୁ ଜାଣିବାକୁ ମନ ହେଉ ନାହିଁ । ଭିତରେ କଅଣ ଗୋଟେ ଅଛି ଆମେ ପଚାରୁ ନାହିଁ । ବାହାରଟାକୁ ତେଲ ଦେଇ ଚକଚକ କରୁଛୁଁ । ସଜାଡ଼ି ରଖୁଛୁଁ । ମାତ୍ର ଟୋପାଏ ଧୂଳି ପଡ଼ିଗଲେ ଆମେ ଫୁଙ୍କି ଦେଉଛୁ, ହାତ ଓ କନାରେ ଝାଡ଼ି ଦେଉଛୁ ବା ପାଣିରେ ଧୋଇଦେଉଛୁ । ସେହିପରି ଭିତରଟାକୁ ଆମେ ଜାଣିବା, ସଫା ରଖିବା ଓ ନିର୍ମଳ ରହିବା । ବାହାରକୁ ଜାଣିବା ଓ ଜୟ କରିବାକୁ ଭୌତିକ ବିଜ୍ଞାନ କୁହାଯାଏ ଏବଂ ଭିତରକୁ ଜାଣିବା ଓ ତଦ୍ୱାରା ପରିଚାଳିତ ହେବାକୁ ଆଧ୍ୟାତ୍ମ ବିଜ୍ଞାନ କୁହାଯାଏ । ଏହି ଉଭୟ ବିଜ୍ଞାନକୁ ପିଲାକାଳରୁ ଆମେ ଅଧ୍ୟୟନ ଓ ଅଭ୍ୟାସ କରିବା, ଶିକ୍ଷା ପାଇଁ ଯେପରି, ଆଧ୍ୟାତ୍ମବିଜ୍ଞାନର ଶିକ୍ଷାପାଇଁ ସେହିପରି, ପରିବାର ଓ ପାଠଶାଳା ମଧ୍ୟରେ ଘନିଷ୍ଠ ସମ୍ପର୍କ ରହିବା ଆବଶ୍ୟକ । ଭକ୍ତକବି ମଧୁସୂଦନ, ସନ୍ଥକବି ଭୀମଭୋଇ, ସ୍ୱାମୀ ବିବେକାନନ୍ଦ ପ୍ରମୁଖ ମନୀଷୀଗଣ ନିଜ ଅନୁଭୂତିକୁ ବିଭିନ୍ନ ରଚନାରେ ପ୍ରକାଶ କରିଛନ୍ତି । ସେସବୁ ପଢ଼ିବା ଉଚିତ । ପ୍ରାର୍ଥନା କରିବାକୁ ହେବ । ବର୍ତ୍ତମାନ ଆମ ଶିକ୍ଷା ଓ ଜୀବନର ଆଧ୍ୟାତ୍ମ ବିଦ୍ୟା ଅବହେଳିତ କହିଲେ ଚଳେ । ଭୌତିକ ବିଜ୍ଞାନ ଦ୍ୱାରା ଆମେ ବହିର୍ମୁଖୀ ହୋଇଯାଉଛୁ । ଅନ୍ତର୍ମୁଖୀତା ଆଦୌ ରହୁନାହିଁ । ତେଣୁ ଆମେ ପ୍ରଚାର ଅଭିମୁଖୀ ତଥା ସ୍ୱାର୍ଥସର୍ବସ୍ୱ ହୋଇଯାଉଛୁ । ଆମେ କିଏ, କେଉଁଆଡ଼େ ଆସିଛୁଁ ଓ କ'ଣ କରୁଛୁ ? —ଏସବୁ ପ୍ରଶ୍ନର ଆଲୋଚନା ଶିକ୍ଷାର୍ଥୀଙ୍କ ମାନସିକ ସ୍ତର ଅନୁସାରେ କରାଯିବ । ଏହାହିଁ ହେବ ଜୀବନର ପରମାର୍ଥ ଦିଗରେ ଗତି । ଏହି ଶ୍ରେଷ୍ଠ ଲକ୍ଷ୍ୟକୁ ସାଧନ କରି ପାରିଲେ ଜୀବନରେ ଅନ୍ୟ କୌଣସି ଲକ୍ଷ୍ୟ ସାଧନର ଆବଶ୍ୟକତା ରହିବ ନାହିଁ । ଅର୍ଥାତ୍ ଏହା ବଳରେ ସମସ୍ତ ଲକ୍ଷ୍ୟ ସାଧିତ ହୋଇପାରିବ । ଧନ, ମାନ, ଯଶ, ଗୌରବ ତଥା ପୌରୁଷ ସାଧନର ବାସନା ରହିବ ନାହିଁ । ଏହାର ସର୍ବୋର୍ଦ୍ଧ୍ୱରେ ପରମାର୍ଥ । ପ୍ରାଚ୍ୟ ଦର୍ଶନରେ ଏହି ଦୃଷ୍ଟିକୋଣ ପ୍ରତିପାଦିତ ହୋଇଛି । ଏହାହିଁ ସେ କାଳର ଜୀବନ ସାଧନା ।

ସାମ୍ପ୍ରତିକ ପରିସ୍ଥିତିରେ ଭୌତିକ ବିଦ୍ୟାର ଉତ୍କର୍ଷ ଆଶାତୀତ ସାଧିତ ହୋଇଥିବାରୁ ଆମେ ଏଥିରେ ସମ୍ପୂର୍ଣ୍ଣ ଭାବରେ ମଜ୍ଜି ଓ ହଜିଯାଇ ଆମ ମୌଳିକତା ହରାଇଛୁ । ଜୀବନର ପରମ ଓ ଚରମ ଲକ୍ଷ୍ୟ ପ୍ରତି ଅବହେଳା ପ୍ରଦର୍ଶନ କରୁଛୁ । ଅତଏବ ବର୍ତ୍ତମାନ ଭୌତିକ ବିଜ୍ଞାନକୁ ଆୟତ୍ତ କରିବା ସଙ୍ଗେ ସଙ୍ଗେ ଆଧ୍ୟାତ୍ମ ବିଜ୍ଞାନର ସାଧନା କରିବାକୁ ହେବ । ଇନ୍ଦ୍ରିୟ ସକଳ ଭୌତିକ ଜ୍ଞାନ ଗ୍ରହଣର ଦ୍ୱାର ସ୍ୱରୂପ ଏବଂ ସେସବୁ ଆଧ୍ୟାତ୍ମଜ୍ଞାନ ଦ୍ୱାରା ମାର୍ଜିତ ଓ ଉନ୍ନତ ହେବାରୁ ଆମ ଅର୍ଜିତ ଧନଦ୍ରବ୍ୟାଦି ପରାର୍ଥପାଇଁ ବିନିଯୋଗ କରାଯାଇପାରିବ । ଜନକଲ୍ୟାଣ ଓ ଜନସେବା ସେହି ପରମାର୍ଥ ସାଧନର ଅଙ୍ଗ ହୋଇଯାଏ । କୁହାଯାଏ, ମାନବର ସେବା ହେଉଛି ମାଧବର ସେବା ।

ଆଜି ସବୁ ଓଲଟି ଯାଇଛି । ପରମାର୍ଥ ହେଉଛି ପ୍ରଥମ । ଏହାକୁ ଓଲଟାଇ ଦେଇ ସ୍ୱାର୍ଥକୁ ପ୍ରଥମ ସ୍ଥାନ ଦେଉଛୁ । ପଚାରିଲେ ଉତ୍ତର ଆସୁଛି, ଏହା ପରେ ପରାର୍ଥ ଓ ପରମାର୍ଥ ଆସିବ । କିନ୍ତୁ ସେ ବେଳକୁ ସମୟ ନାହିଁ ଓ ଲକ୍ଷ୍ୟର ବିଚ୍ୟୁତି ହୋଇଛି । ଯୁଗେ ଯୁଗେ ଏପରି ଘଟିନାହିଁ । ଅତଏବ ଯାହା ପ୍ରଥମ, ଅର୍ଥାତ୍ ପରମାର୍ଥକୁ ସର୍ବପ୍ରଥମ ଅଗ୍ରାଧିକାର ଦିଆଯିବ । ନୀରବ ଅନ୍ତର୍ମୁଖୀ ସାଧନା କରାଯିବ ।

ମାଳା, ତିଳକ, ଚନ୍ଦନ ଓ ଚିତା ପ୍ରଭୃତିକୁ ପରମାର୍ଥର ଚିହ୍ନ ବୋଲି କୁହାଯାଏ । ରଙ୍ଗିନ ବସ୍ତ୍ରର ପରିଧାନକୁ ଏହାର ଅନ୍ତର୍ଭୁକ୍ତ କରାଯାଏ । ଭସ୍ମ ବିଲେପନକୁ ମଧ ମାନ୍ୟତା ଦିଆଯାଏ, ଯେଉଁମାନେ ଏହା କରନ୍ତି, ସେମାନଙ୍କୁ ପରମାର୍ଥୀ ବୋଲି କହନ୍ତି । ବେଳେବେଳେ ଏସବୁ ପରମାର୍ଥପରାୟଣ ହେବାରେ ସହାୟକ ବୋଲି ଯୁକ୍ତି କରନ୍ତି । ଅନେକ ସମୟରେ ବିରାଡ଼ି ବୈଷ୍ଣବ ସାଜିବାରେ ଏହା ଗୁରୁତ୍ୱପୂର୍ଣ୍ଣ ବୋଲି ପରିଗଣିତ ହୁଏ । ଅସଲ ବିଷୟ ହେଉଛି ମନ, ହୃଦୟ ଓ ପ୍ରାଣରେ ଏହା ସନ୍ଦିତ ହେବା ଉଚିତ । ଚିନ୍ତା, କାମ ଓ କଥାରେ ପ୍ରକାଶିତ ହେବା ଆବଶ୍ୟକ । ଅଭ୍ୟାସ ଓ ଆଚରଣ ଅନୁରୂପ ହେବା ଉଚିତ । ସାର୍ବଜନୀନ ମାନବିକ ମୂଲ୍ୟବୋଧ ଆମ ପାଇଁ ପ୍ରେରଣାର ଉତ୍ସ ହେବା ଏକାନ୍ତ ଆବଶ୍ୟକ ।

ଦିନକୁଦିନ ସ୍ୱାର୍ଥପଣିଆ ଆମକୁ ଅଧିକ ମାତ୍ରାରେ ଗ୍ରାସ କରିବାରେ ଲାଗିଛି । ଏହା ଏକ ବସ୍ତୁବାଦୀ ଧାରା । ଅତ୍ୟଧିକ ମାତ୍ରାରେ ଭୋଗବିଳାସର ପ୍ରସାର ଯୋଗୁଁ ଏପରି ଘଟୁଛି । ଏପରି ସାମଗ୍ରୀର ଉତ୍ପାଦନ ଓ ସେଗୁଡ଼ିକର ବହୁଳ ଓ ଚିତ୍ତାକର୍ଷକ ବିଜ୍ଞାନ ଆମକୁ ଜଡ଼ ଓ କ୍ଳୀବ କରି ପକାଉଛି । ଖାଦ୍ୟ, ବସ୍ତ୍ର, ବାସଗୃହ, ଶିକ୍ଷା ଓ ସ୍ୱାସ୍ଥ୍ୟ ସହାୟକ ଅତ୍ୟାବଶ୍ୟକ ଦ୍ରବ୍ୟର ଉତ୍ପାଦନ ପାଇଁ ଅଗ୍ରାଧିକାର ଦିଆଯିବା ଉଚିତ । ଏପରିକି

କୃଷିକ୍ଷେତ୍ରରେ ଅର୍ଥକରୀ ଫସଲ ଅପେକ୍ଷା ଉଲ୍ଲିଖିତ ଜୀବନ ସହାୟକ ଦ୍ରବ୍ୟାଦିର ଉତ୍ପାଦନପାଇଁ ନିୟନ୍ତ୍ରଣକୁ ସୁପାରିଶ କରାଯାଏ । ନିଜ ସୁଖ, ଶାନ୍ତି ଓ ସମୃଦ୍ଧିପାଇଁ ମନୁଷ୍ୟର ଜନ୍ମ ନୁହେଁ ବୋଲି ଯୁଗେ ଯୁଗେ ମାନବସମାଜର ଆଦର୍ଶ ରୂପେ ଗ୍ରହଣ କରାଯାଇଛି । ବିଶ୍ୱର ମହାପୁରୁଷମାନେ ଏହା ନିଜ ଜୀବନରେ ପ୍ରମାଣିତ କରିଛନ୍ତି । କାରାବରଣ, ପ୍ରାଣବିସର୍ଜନ. ସ୍ୱଦେଶରୁ ନିର୍ବାସନ, ପ୍ରାଣପୀଡ଼ା ଆଦିକୁ ଆନନ୍ଦରେ ବରଣ କରାଯାଇଛି ।

ଅତଏବ ପରମାର୍ଥ ଓ ପରାର୍ଥ ଏହି ଦୃଷ୍ଟିରୁ ଏକ । ଏହି ଉଭୟର ବିରୋଧାର୍ଥ ଓ ବିପରୀତାର୍ଥ ହେଉଛି ସ୍ୱାର୍ଥ । ସ୍ୱାର୍ଥରୁ ମୁକ୍ତ ରହି ପରାର୍ଥ ଓ ପରମାର୍ଥରେ ସୁଦୃଢ଼ ରହିବା ମନୁଷ୍ୟର କର୍ତ୍ତବ୍ୟ । ଏଥିପାଇଁ ଭୀମଭୋଇଙ୍କ ଉକ୍ତି ''ସକଳ ଭୂତରେ ଏକ, ଏକ ଆତ୍ମା ପ୍ରାୟ ଦେଖ''ର ଅନୁଭବ ବାଲ୍ୟକାଳରୁ କରାଯିବା ଉଚିତ ।

ଏହା ମଧ ବେଦାନ୍ତର ସମର୍ଥିତ ସତ୍ୟ । ଏକ ପ୍ରଭୁ ପରମାତ୍ମା ଓ ତାଙ୍କ ସୃଷ୍ଟି ଅନେକ ତଥା ବହୁଧା ବିଭକ୍ତ ହେଲେହେଁ ସେଥିରେ ଐକ୍ୟ ରହିଛି—ଏହାହିଁ ବେଦାନ୍ତର ବାଣୀ । ଏହା ସନାତନ; ଅତୀତରେ ଥିଲା, ଏବେ ରହିଛି ଓ ଭବିଷ୍ୟତରେ ରହିବ । ଏହି ପରମ ସତ୍ୟର ଅନୁଭୂତି ଓ ଅଭ୍ୟାସ ଦ୍ୱାରା ଆମେ ପରମର ଅନୁସନ୍ଧାନୀ ହୋଇ ପାରିବା । ପ୍ରାଚୁର୍ଯ୍ୟରେ ଜୁଡୁବୁଡୁ ଜୀବନ ଏ ଦିଗରେ ଅନୁକୂଳ ନୁହେଁ । ଏହା ବରଂ ଅଧିକ ପ୍ରାଚୁର୍ଯ୍ୟରେ ଭରପୂର ହେବା ପାଇଁ ଅଗ୍ରସର ହୁଏ । ପକ୍ଷାନ୍ତରରେ ନିଜ ଆତ୍ମାରେ ପରମାତ୍ମାଙ୍କ ଉପଲବ୍ଧ କରିବା ପାଇଁ ଆମକୁ ସରଳ, ସାଧାରଣ ହେବାକୁ ପଡ଼ିବ । ଦୀନ, ଦୁଃଖୀ, ଦରିଦ୍ର, ଦୁସ୍ଥ, ରୋଗୀ, ଅଜ୍ଞ—ସମସ୍ତଙ୍କ ସହିତ ଏକାତ୍ମ ହେବାକୁ ପଡ଼ିବ । ସ୍ୱେଚ୍ଛାକୃତ ଭାବରେ ସେମାନଙ୍କ ସହିତ ସମରସ ହୋଇ ଦାରିଦ୍ର୍ୟକୁ ଦୈହିକ ସ୍ତରରେ ଆଦରିନେବା । ଆମେ ସରଳ ହେବା ଓ ଏହା ଆମ ହୃଦୟକୁ ନିର୍ମଳ, ନିରହଂକାର ଓ ସ୍ୱଚ୍ଛ କରିନେବ । ସେଥିରେ ପରମ ପୁରୁଷ ପ୍ରଭୁ ପରମାତ୍ମା ପ୍ରତିଭାତ ହେବେ । ଏହାହିଁ ଉଚ୍ଚ ଆଦର୍ଶ ସରଳ ଜୀବନରେ ।



# ଧର୍ମଧନ ମୁଁ ସଞ୍ଚିବି

ପିଲାକାଳ, ଖେଳର ବେଳ । ଅଲିଅଳ ସମୟ । ସାଙ୍ଗସାଥୀଙ୍କ ମେଳରେ ମଜା ଓ ମଉଜ । ବାଳ ଭୋଳରେ ରଙ୍ଗରହସ୍ୟ ହୁଏ । ଭାତ ପଛକେ ଛାଡ଼ି ହେବ, କିନ୍ତୁ ସାଙ୍ଗ ଛାଡ଼ିବ କିଏ ? ସାଙ୍ଗ ପାଗଳ ପିଲାକାଳରେ ଖେଳ ସରେ ନାହିଁ । ମନେହୁଏ ରାତି ହୁଅନ୍ତା ନାହିଁ, ଖରାବର୍ଷା ରହନ୍ତା ନାହିଁ, ଦିନ, ମାସ, ବର୍ଷ ଖେଳରେ କଟିଯାଆନ୍ତା । ନିଦରେ ପିଲାଏ ଖେଳିବାର ଜଣାଯାଏ । ଘର ଭିତର ଯାକରେ ସେପରି ଖେଳଚାଲେ । ତେବେ ବାଲ୍ୟକାଳରୁ ସଂଚୟର ପ୍ରଶ୍ନ ଉଠେ ନାହିଁ । କୁହାଯାଏ, ମହୁମାଛି ପରି ସଂଚୟ କରିବ । ଖଟା, ମିଠା, ଚାଟ, ଚଟଣି ଓ ମିକ୍ସ୍‌ଚର ଦୋକାନ ଅନେକ ଉଠିଯିବ, ଯଦି ପିଲାକାଳରୁ ସଂଚୟର କଥା ଉଠିବ, ବାପା, ମା’ ଓ ଗୁରୁଜନ କ’ଣ ଏହା ଚାହିଁବେ କି ? ଏହା ପଇସା ଉଡ଼ାଇବା ସମୟ । ବିଶେଷକରି ନୋଟ୍ ଗୁଡ଼ିକ ଫୁର୍‌ଫାର୍ ଉଡ଼ିଯାଏ । ବାଣଫୁଟା, ପିଚ୍‌କାରି ମରା, ପୂଜାପୂଜିରେ କେତେ ଯେ ଉଡ଼ିଯାଏ ଏହା କିଏ କଳନା କରିଛି କି ? ବେଳେବେଳେ ଗୁରୁଜନ ମଧ୍ୟ ଆଖିମିଟିକା ମାରି ଦିଅନ୍ତି । ପଇସାଂମୁଣି ସେ ବେଳରେ ହାତରୁ ଖସିପଡ଼େ, ମୁକୁଳା ହୋଇଯାଏ । ନିଅନ୍ତୁ, ମଜା କରନ୍ତୁ । ତେବେ ଧନ ସଂଚୟ ହେବ କି ?

ପିଲାକାଳରେ ଧନ ସଂଚୟ ପାଇଁ ଯୋଜନା କରାଯାଇଛି । କେତେବେଳେ କେମିତି ଦି’ ପଇସା ହାତକୁ ଆସେ, ସେଥିରୁ ଅଧେ ବା ଚଉଠେ ବଞ୍ଚାଇବାକୁ କୁହାଯାଏ । ଏହାହିଁ ମହୁମାଛିପଣିଆ । ଫୁଲରୁ ଫୁଲରୁ ମହୁ ସଂଗ୍ରହ କରି ମହୁଫେଣା ମଧୁପୂର୍ଣ୍ଣ ହୋଇଯାଏ । ଟୋପାଏ ଟୋପାଏ ଜଳରୁ ଜଳଧି ହୁଏ । କିନ୍ତୁ ମହୁମାଛି ଅର୍ଜନ କରେ ମଧୁ । ମାତ୍ର ପିଲାକାଳରେ ଅର୍ଜନକ୍ଷମ ହୁଅନ୍ତି ଆମ ପିଲାଏ । ପଇସା କଉଡ଼ି, ଧାନ ଚାଉଳ, ଜମିବାଡ଼ି, ଗଛମାଛ ଆଦି ସବୁ ଧନ ପିଲାଙ୍କ ବଳବୟସ ଓ ଶକ୍ତି ଦୃଷ୍ଟିରୁ ଓ ସବୁ ଧନ ସେମାନେ ଉପାର୍ଜନ କରିପାରନ୍ତି ନାହିଁ । ତେବେ କେଉଁ ଧନ ସେମାନେ ଅର୍ଜନ କରିପାରିବେ ? ପାଠ ତ ପଢ଼ିବେ । ଶିକ୍ଷା କରିପାରିବେ । କୌଶଳ ଶିଖିବେ । ନୂଆ ନୂଆ କଥା ଜାଣିବେ ଓ ବୁଝିବେ । ସେ ଦିଗରେ ମନ ଲଗାଇବେ । ସେମାନଙ୍କ ମନୋଭାବ ବଦଳିଯିବ ।

ଗୀତଟିଏ ଗାଇବେ । ଭଜନଟିଏ ବୋଲିବେ । ଗାଇବାର ଅଭ୍ୟାସ କରିବେ । ଏଥିରୁ ଆନନ୍ଦ ପାଇବେ । ଘରେ ଓ ବିଦ୍ୟାଳୟରେ ଛୋଟ ଛୋଟ କାମ କରିବେ । ନିଜକୁ ଓ ପରିବେଶକୁ ସଫା ରଖିବେ । ଅଳିଆ ଆବର୍ଜ୍ଜନା ଏଣେ ତେଣେ ପକାଇବେ ନାହିଁ । ବିଭିନ୍ନ ସ୍ଥାନ, ଲୋକ ଓ ବହିପତ୍ରରୁ ଶିଖିବେ । ମିଳିମିଶି ଚଳିବେ । ବାପା ମା'ଙ୍କୁ ଭକ୍ତି କରିବେ । ଗୁରୁଜନମାନଙ୍କୁ ମାନିବେ । ସେମାନଙ୍କ ଉପଦେଶ ବୁଝିବେ । ବୃକ୍ଷଲତା, ଗୋରୁଗାଈ, ଗୃହପାଳିତ ଅନ୍ୟାନ୍ୟ ଜୀବଜନ୍ତୁଙ୍କର ଯତ୍ନ ନେବେ । ନିଜେ ଚଳିବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କୁ ସୁବିଧା ସୁଯୋଗ ଦେବେ । ସମାଜ, ଦେଶ ଓ ବିଶ୍ୱ ପ୍ରତି ନିଜ କର୍ତ୍ତବ୍ୟ ବୁଝିବେ । ଏସବୁ ଭଲ ରହିଲେ ଆମର ଭଲ ହେବ । ତେଣୁ ଏ ଦିଗରେ ଆମକୁ ଅଧିକ ମନ ଦେବାକୁ ପଡ଼ିବ । କଥାଟି ହେଲା, ଅତ୍ୟଧିକ ମାତ୍ରାରେ ଆମେ ସ୍ୱାର୍ଥାନ୍ଧ ନ ହୋଇ ଅନ୍ୟମାନଙ୍କ କଥା ବିଚାରିବା । ଗରିବ, ଦୁଃଖୀ, ନିରକ୍ଷର, ରୋଗୀ ଆଦି ଲୋକଙ୍କ ପାଇଁ ଆମ କର୍ତ୍ତବ୍ୟ କରିବାକୁ ପଡ଼ିବ । ଏହାହିଁ ହେବ ଆମ ପିଲାକାଳର ଅର୍ଜ୍ଜନ । ସେଥିପାଇଁ ଭକ୍ତକବି ମଧୁସୂଦନ ଲେଖିଛନ୍ତି:

*''ବିଦ୍ୟା ଅଟଇ ମହାଧନ*
*ବାଳକେ କର ଉପାର୍ଜ୍ଜନ ।''*

ବିଦ୍ୟା ମାମୁଲି ଧନ ନୁହେଁ । ଏହା ମହାଧନ । ବିଦ୍ୟାବଳରେ ଆମେ ଧନୀ ହୋଇ ପାରିବା । ଅନ୍ୟମାନଙ୍କ ଆଖିରେ ଯାହା ସବୁ ଧନ ବୋଲି ଦେଖାଯାଏ, ଆମେ ସେପରି ଧନ ରୋଜଗାର କରିପାରିବା ବିଦ୍ୟାଯୋଗୁଁ । ଆଉ ଗୋଟେ କଥା, ଖାଲି ଧନ ଅର୍ଜନ ନୁହେଁ, ଧନର ସଦୁପଯୋଗ କିପରି କରିବା ଏହା ବିଦ୍ୟା ଶିକ୍ଷାଦିଏ । ଆମ ଶାସ୍ତ୍ରୀୟ ନିର୍ଦ୍ଦେଶ ହେଉଛି :

*''ଧନ ଅର୍ଜ୍ଜିଲେ ଧର୍ମ କରି*
*ଧର୍ମେ ପ୍ରାପତ ନରହରି ।''*

ବସ୍ତୁତଃ ରାତିଏ ଯାଇ ହାତୀଏ ଆଣିଥିବା ଧନ ଗଧପିଠିରେ ଚିନି ବସ୍ତା ଲଦିବା ପରି ଲାଗେ । ସେ ଧନର ଅର୍ଥ ବୁଝେ ନାହିଁ । କେବଳ ସେତିକି ନୁହେଁ, ଧନରେ ଉନ୍ମତ୍ତ ବ୍ୟକ୍ତିଟି ପାଗଳ ହାତୀ ପରି କାମକରେ । ଗାଁ ଗଣ୍ଡାରେ ଚହଳ ପକାଇ ଦିଏ । ଘର ଦ୍ୱାର ଭାଙ୍ଗି ପକାଏ । ଧନ ଅର୍ଜନର ବାଟ ରହିଛି । ଅବାଟରେ ଧନ ଅର୍ଜ୍ଜିବା ସହଜ । ତେଣୁ ଅନ୍ୟାୟ ଧନ, ଧନପ୍ରାପ୍ତିର ଲୋଭକୁ ବଢ଼ାଇଦିଏ । ପୁଣି ଧନ ଯଦି ପରାର୍ଥ ଓ ପରମାର୍ଥ ନ ହୋଇ କେବଳ ସ୍ୱାର୍ଥପାଇଁ ଲାଗେ ଏହା ସର୍ବନାଶର କାରଣ ହୁଏ । ଅତଏବ ବିଦ୍ୟା ଆମକୁ ତିନୋଟି ଶିକ୍ଷା ଦିଏ—(୧) ଧନ ଅର୍ଜ୍ଜିବାର କୌଶଳ, (୨) ଉଚିତ ବାଟରେ ଝାଳବୁହା ଧନର ଅର୍ଜନ ଓ (୩) ସତ୍ପାତ୍ରରେ ଧନର ସଦୁପଯୋଗ । ସେଥିପାଇ ବିଦ୍ୟା

ଯଥାର୍ଥରେ ମହାଧନ । ସାଧାରଣ ଧନର ଚୋରି ହୋଇପାରେ ଓ ଭାଇ ଭାଗ ନିଅନ୍ତି । କିନ୍ତୁ ବିଦ୍ୟାଧନ ସମ୍ପୂର୍ଣ୍ଣ ନିଜସ୍ୱ । ଠିକ୍ ସେହିପରି 'ଧର୍ମ ଧନ' କଥା କୁହାଯାଇଛି । ବିଦ୍ୟାୟତନରେ ଏହା ଅର୍ଜନ କରାଯାଇ ପାରିବ । ବିଦ୍ୟାର୍ଜ୍ଜନର ମଧ୍ୟ ଏହା ଲକ୍ଷ୍ୟ ହୋଇପାରେ ।

ଭକ୍ତକବି ମଧୁସୂଦନଙ୍କର ସେହି ବାଣୀଟି ହେଉଛି :

''ବାଲ୍ୟକାଳୁ ଧର୍ମ-ଧନ ମୁଁ ସଞ୍ଚିବି,
ଏ ଜୀବନ ଅନିଶ୍ଚିତ,
କେଜାଣି କାହାର ଆଜି ମୃତ୍ୟୁ କାଳ
ହୋଇଯିବ ଉପସ୍ଥିତ ।''

ଜୀବନ ତ ନିଶ୍ଚିତ ଭାବରେ ଅନିଶ୍ଚିତ । ତେଣୁ ଅନିଶ୍ଚିତ ଜୀବନରେ ତରବର ନ ହୋଇ ନିଶ୍ଚିତ ଧନ, ଧର୍ମ-ଧନ ଅର୍ଜ୍ଜନ କରାଯାଇ ପାରିବ । ଚଲାବାଟରୁ କଣ୍ଟା, ଇଟା ଉଠାଇ ଦିଆଗଲେ ବାଟ ଅବାଟ ହେବ ନାହିଁ । ଖେଳ ସାମାନ୍ୟ କଥାଟିଏ, କିନ୍ତୁ ଏହାର ମହତ୍ତ୍ୱ ଖୁବ୍ ବେଶୀ । ଏହା ପିଲାକାଳପାଇଁ ଏକ ବିରାଟ ଧର୍ମଧନ । ଆମ ଖେଳପଡ଼ିଆ । ଅନାବନା ଘାସ ହୋଇଛି । ଖାଲ ଅଛି । ଗାତ ଖୋଳାଯାଇଛି । ଆମେ ମିଳିଗଲେ ପଡ଼ିଆକୁ ସଫା କରିଦେବା । ଏହା ଭଲ ଖେଳପଡ଼ିଆ ହେବ । ଖେଳାଳିଙ୍କ ଗୋଡ଼ ଭାଙ୍ଗିବ ନାହିଁ । ସ୍ଥିର ହୋଇ ପେଣ୍ଡୁ ମାରିଲେ ଆମେ ଜିଣିବା । ଖେଳି ଖେଳି ଖେଳୁଆଡ଼ ହେବା । ଆମେ ଖେଳିବା ଓ ଅନ୍ୟମାନଙ୍କୁ ଖେଳିବାର ସୁଯୋଗ ଦେବା । ହାରିଗଲେ ଭାଙ୍ଗିପଡ଼ିବା ନାହିଁ । ଏ ସବୁ ଧର୍ମଧନ ।

ଧନରତ୍ନର ବିନିମୟମୂଲ୍ୟ ରହିଛି । ଏହାର ବିନିମୟରେ ଆମେ ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟ ସଂଗ୍ରହ କରୁ । ନିଜ ଦେଶରେ ତଥା ଦେଶାନ୍ତରରେ ବିନିମୟ ପଦ୍ଧତି ସ୍ୱୀକୃତି ପାଇଛି । ସେ ଦୃଷ୍ଟିରୁ ଟଙ୍କା ପଇସାକୁ ସହଜ ମାଧ୍ୟମରୂପେ ଗ୍ରହଣ କରାଯାଇଛି । ପୂର୍ବକାଳରେ ଦ୍ରବ୍ୟ ଦ୍ରବ୍ୟ ମଧ୍ୟରେ ବିନିମୟ କରାଯାଉଥିଲା । କିନ୍ତୁ ଏହାର ପରିସର ନିର୍ଦ୍ଦିଷ୍ଟ ଦେଶ ମଧ୍ୟରେ ସୀମିତ ରହିଲା । କିନ୍ତୁ ଆଜି କାରବାର ବିଶ୍ୱବ୍ୟାପୀ ହୋଇଯାଇଛି । ତେଣୁ ମୁଦ୍ରାପଦ୍ଧତିକୁ ଧନରତ୍ନର ପ୍ରତୀକ ଭାବରେ ବିନିମୟ ମାଧ୍ୟମ ରୂପେ ଦେଶ ଓ ଦେଶାନ୍ତର ମଧ୍ୟରେ ଗ୍ରହଣ କରାଯାଇଛି । କିନ୍ତୁ ଧର୍ମଧନର ସେପରି କୌଣସି ଆଇନସମ୍ମତ ବିନିମୟମୂଲ୍ୟ ନାହିଁ । ଅଥଚ ଧାର୍ମିକ ବ୍ୟକ୍ତିମାନଙ୍କର ନିଜ ଦେଶରେ ଓ ସମଗ୍ର ବିଶ୍ୱରେ ସମାଦର ରହିଛି । 'ବିଦ୍ୱାନ୍ ସର୍ବତ୍ର ପୂଜ୍ୟତେ' ପରି ସେମାନେ ବିଶ୍ୱବନ୍ଦିତ ଓ ବିଶ୍ୱବିଦିତ । କୌଣସି ନିର୍ଦ୍ଦିଷ୍ଟସ୍ଥାନରେ ଓ ପରିବାରରେ ଜନ୍ମଗ୍ରହଣ କରିଥିଲେ ହେଁ ସେମାନେ ବିଶ୍ୱବନ୍ଦନୀୟ ହୁଅନ୍ତି । ଦେଶ-କାଳ-ପାତ୍ର ସେମାନଙ୍କୁ ସୀମିତ କରିପାରେ ନାହିଁ ।

ସେମାନେ କାଳଜୟୀ । ସର୍ବତ୍ର ସେମାନେ ସର୍ବଜୀବକୁ ପ୍ରଭାବିତ କରନ୍ତି । ଶିକ୍ଷା ଓ ଜୀବନଗଠନର ଉତ୍ସ ହୋଇ ସେମାନେ ବିଦ୍ୟମାନ । ସେମାନଙ୍କ ଉଦାହରଣ ଓ ଉଚ୍ଚାରଣର ସଂକ୍ରମଣ ପୁସ୍ତକମାଧ୍ୟମରେ ଓ ଆଲୋଚନାଦ୍ୱାରା ଘଟିଥାଏ । ଭାଷା ଆଦି ଯାହା କିଛି ଆମ ପାଇଁ ଅନ୍ତରାୟ ହୁଏ, ସେସବୁକୁ ସେମାନେ ସହଜରେ ଅତିକ୍ରାନ୍ତ କରିଯାଆନ୍ତି । ଗାନ୍ଧୀ, ବୁଦ୍ଧ, ଯିଶୁ, କନଫ୍ୟୁସିଅସ୍ ଆଦି ମନୀଷୀଗଣ ଚିରକାଳ ପାଇଁ ବିଶ୍ୱବାସୀଙ୍କୁ ଜ୍ଞାନ ଦେଉଛନ୍ତି । ନିର୍ଦ୍ଦିଷ୍ଟ ରାଷ୍ଟ୍ରର ସୀମାରେ ସେମାନେ ଆବଦ୍ଧ ନୁହନ୍ତି ।

ପକ୍ଷାନ୍ତରରେ ଆମେ ଆଜି ଅର୍ଥସର୍ବସ୍ୱ ହୋଇଛୁଁ । ଅର୍ଥର ନିଶା ଆମକୁ ସର୍ବତୋଭାବେ ଗ୍ରାସ କରିଛି । ଜୀବନ କ୍ଷୟକାରୀ ସମସ୍ତ ନିଶା ମଧ୍ୟରେ ଅର୍ଥନିଶା ଖୁବ୍ ଗୁରୁତ୍ୱପୂର୍ଣ୍ଣ ଓ ଏହା ସକଳ ନିଶାର ଜନନୀ ସ୍ୱରୂପ । ଆମେ ଏପରି ଅର୍ଥପାଗଳ ହୋଇଯାଉଁ ଯେ ଅର୍ଥନିଶା ଆମକୁ ଗିଳି ପକାଏ । ମାନବିକ ବିଚାର ରହେନାହିଁ । ମଣିଷପଣିଆ ଆମଠାରୁ ଉଭେଇ ଯାଏ । ବସ୍ତୁତଃ ଅର୍ଥ ପାଇଁ ଆମେ ସ୍ୱାର୍ଥାନ୍ଧ ହୋଇଯାଉଁ । ବୁଦ୍ଧି, ବିବେକ ଓ ବିଚାର ଅର୍ଥ ଲୋଭ ସମ୍ମୁଖରେ ଅକାମୀ ହୋଇଯାଏ । ଆମେ ସୁଖଶାନ୍ତିଶୂନ୍ୟ ହୋଇଯାଉଁ । ସତରେ, ପଇସା ଆମକୁ ଖାଏ ନାହିଁ କି ? ପୂର୍ବକାଳରେ ଇଂରାଜୀରେ ଗୋଟିଏ ଜୀବନ-ନିର୍ମାଣକାରୀ ସନ୍ଦେଶ ଦିଆଯାଉଥିଲା । ଓଡ଼ିଆରେ ଏହାକୁ ନିମ୍ନ ପ୍ରକାରେ କହିହେବ :

*ଅର୍ଥ ହଜିଲେ, କିଛି ହଜେ ନାହିଁ,*
*ସ୍ୱାସ୍ଥ୍ୟ ହଜିଲେ, କିଛିଟା ହଜିଲା,*
*କିନ୍ତୁ ଚରିତ୍ର ହଜିଲେ, ସର୍ବସ୍ୱ ଗଲା ଓ ଆମେ ସର୍ବସ୍ୱାନ୍ତ ହେଲୁ ।*

ଚରିତ୍ର ହେଉଛି ଏହି ଧର୍ମଧନ । କସ୍ମିନ୍‌କାଳେ ଆମେ ଏହାକୁ ହସ୍ତାନ୍ତର କରି ବିପଥଗାମୀ ହେବା ନାହିଁ । ଆଜି ଏହି ଧନରତ୍ନ ଓ ପଇସା କଉଡ଼ି ଯୁଗରେ ଏହି ସୁନ୍ଦର ସନ୍ଦେଶଟିକୁ ବିକୃତ ଓ କଳୁଷିତ କରିଦେଇଛି । ଉଲ୍ଲିଖିତ କଥାଟି ଓଲଟିଯାଇ ଅବାନ୍ତର ଓ ଅବାଞ୍ଛନୀୟ ହୋଇଛି ।

ଚରିତ୍ର ହଜିଲେ, କିଛି ହଜେ ନାହିଁ,
ସ୍ୱାସ୍ଥ୍ୟ ହଜିଲେ, କିଛିଟା ହଜିଲା,
କିନ୍ତୁ ଅର୍ଥ ହଜିଲେ, ଆମେ ସର୍ବସ୍ୱାନ୍ତ ହେଲୁଁ ।

ଆମ ଦୁର୍ଗତିର ଚରମ ପରିଣତି । ଧର୍ମଧନ ବାଲ୍ୟକାଳରୁ ସଞ୍ଚି ଜୀବନ ନିର୍ମାଣ କରିବା ଓ ଅନ୍ୟମାନଙ୍କ ନିର୍ମାଣରେ ସହାୟକ ହେବା ।



# ଆମ ଚରିତ୍ର ଆମେ ଗଢ଼ିବା

ପୁରୁଣା କାଳର କଥାଟିଏ ଗାଁ ଲୋକଙ୍କ ତୁଣ୍ଡରେ ଏବେ ବି ଶୁଣାଯାଏ—

*ଥିଲେ ଥାଉ ପଛେ ଗୁଣ ହଜାର*
*ଚରିତ୍ର ନଥିଲେ ସବୁ ଅସାର ।*

ବ୍ୟକ୍ତିତ୍ୱର ସୌରଭ ହେଉଛି ମନୁଷ୍ୟର ଚରିତ୍ର, ଏହା ତା'ର ସାର୍ଥକତା । ଜୀବନବ୍ୟାପୀ ନିରନ୍ତର ସାଧନାର ଫଳଶ୍ରୁତି ।

ଆମ ବେଳରେ ଇଂରାଜୀରେ କଥାଟିଏ କୁହାଯାଇଥିଲା :

*If money is lost, nothing is lost,*
*If health is lost, something is lost,*
*If character is lost, everything is lost.*

ଚରିତ୍ରକୁ ସର୍ବାଧିକ ଗୁରୁତ୍ୱ ଦିଆଯାଇଛି । ଚରିତ୍ରର ସ୍ଖଳନରେ ଆମେ ସର୍ବହରା ହେଉଁ । ସର୍ବନାଶ ଘଟେ । ଆଦର୍ଶ ରହେ ନାହିଁ । ଆମେ ତେଣୁ ସଂକୀର୍ଣ୍ଣ, ସାନ ଓ ହୀନ ହୋଇଯାଉ । ଆଦର୍ଶ ଆମକୁ ଟେକି ଧରେ । ଆମେ ମହାନ୍ ହେଉଁ । ସତ୍ୟର ଆଦର୍ଶକୁ ସରଳ ଜୀବନରେ ପାଳନ କରି ଆମେ ସତ୍ୟନିଷ୍ଠ ହେଉ । ଆମ ଆଚରଣରେ ସତ୍ୟ ପ୍ରକାଶ ପାଏ । ଆମ କଥା, କାମ ଓ ଚିନ୍ତା ସତ୍ୟର ମାପକାଠିରେ ଏକ ହୁଏ । ସତ୍ୟ ଭିନ୍ନ ଅନ୍ୟ କିଛି ନଥାଏ । ସତ୍ୟଂ ଜ୍ଞାନଂ ଅନନ୍ତଂ ବ୍ରହ୍ମ । ମନ୍ଦକୁ ଛାଡ଼ି ଭଲକୁ ଧରୁ । ଯାହା ପ୍ରେୟ ତାକୁ ପରିତ୍ୟାଗ କରି ଶ୍ରେୟ ଅର୍ଥାତ୍ ଯଦ୍ୱାରା ଆମ ଆତ୍ମଜ୍ଞାନ ପରିସ୍ଫୁଟ ହୁଏ ତାକୁ ଧରି ଧରି ଚାଲୁ । ଏହା ହିଁ ବିବେକ । ବିବେକୀ ମନୁଷ୍ୟ ଆତ୍ମଜ୍ଞାନୀ । ପଇସା କଉଡ଼ି ହଜିଗଲେ, କିଛି ଚିନ୍ତା ନାହିଁ । ଝାଳ ବୁହାଇ ଧନ ଅରଜି ପାରିବା । ଅବଶ୍ୟ ସେଥିପାଇଁ ସ୍ୱାସ୍ଥ୍ୟ ଠିକ୍ ଥିବା ଦରକାର । ସ୍ୱାସ୍ଥ୍ୟହାନି ହେଲେ ପୁଣି ସ୍ୱାସ୍ଥ୍ୟ ଫେରିପାଇବା ସମୟ ସାପେକ୍ଷ । ମନ ଦେବାକୁ ପଡ଼ିବ, ଯଦି ଚରିତ୍ର ନଷ୍ଟ ହୁଏ ଓ ଆମେ ଦୁଶ୍ଚରିତ୍ର ହେଉଁ, ଆମର ଗର୍ବ ଓ ଗୌରବ କିଛି ରହିବ କି ?

ଏ ଜୀବ ଅମୃତର ସନ୍ତାନ । ନଶ୍ୱର ଜୀବନରେ ଅବିନଶ୍ୱର ସଚେତନ ହୋଇ ରହିବା ତା ପାଇଁ ଦୁର୍ଲଭ ସ୍ୱୀକୃତି । ତେଣୁ ସେ ସାଧକ । ଉର୍ଦ୍ଧ୍ୱାଭିମୁଖିତା ତା'ର ଗତି ଓ ପ୍ରକୃତି । ଅମୃତାୟନ ପାଇଁ ତା ହୃଦୟରେ ଅମୃତ ସାକ୍ଷୀ ସ୍ୱରୂପରେ ଜାଗ୍ରତ ଅଛନ୍ତି । ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ଜୀବନ କାଳରେ ସେ ଅମୃତ-ସନ୍ଧାନୀ । ମୁହୂର୍ତ୍ତକର ନିମ୍ନଗାମିତା ତା ପାଇଁ କାଳ ହୁଏ । କୁସଙ୍ଗ ମାଡ଼ିବସେ । କୁସଙ୍ଗୀ କବଳିତ କରି ପକାନ୍ତି । ତେଣୁ ସେ ଚିରଜାଗ୍ରତ ହୋଇ ରହିବା କଥା । ନିଦ୍ରା ଯିବାର ସମୟ ନାହିଁ । ସ୍ୱପ୍ନ ଦେଖିବାର ବେଳ କାହିଁ ? ଆଳସ୍ୟ ପାଇଁ ସୁଯୋଗ ନାହିଁ । ଚରିତ୍ର ଗଠନ ଜୀବନବ୍ୟାପୀ ନିରନ୍ତର ସାଧନା ।

ଅନ୍ୟମାନଙ୍କ ବଚନ ଶୁଣିବା, ଉଦାହରଣ ଖୋଜି ଖୋଜି ଅଣ୍ଡାଳିବା, ବ୍ରହ୍ମବିଦ୍ୟା ଅର୍ଜନ କରିବା । ଆମେ ଆଖିବୁଜି ଗୁରୁଙ୍କୁ ଅନୁସରଣ ନକରି ସତ୍ୟସନ୍ଧାନୀ ହେବା । ସତ୍ୟ ହିଁ ଗୁରୁ ଓ ଗୁରୁ ହେଉଛନ୍ତି ସତ୍ୟ । ସେ ଆମ ଅନ୍ତରରେ ରହିଛନ୍ତି । ତେଣୁ ଆମେ ନିଜେ ହିଁ ନିଜର ଗୁରୁ ହେବା । ଚରିତ୍ର ନିର୍ମାଣରେ ଏଣେ ତେଣେ ଧନ୍ଦି ନ ହୋଇ ନିଜ ଉପରେ ନିଜେ ନିର୍ଭର କରିବା । ଏହାକଲେ ଆମେ ଅନ୍ୟଙ୍କୁ ଦୋଷ ଦେବାନାହିଁ । ବୃଥା ଅନୁତାପକରି ସମୟ ଟାଳିବା ନାହିଁ, କୁହାଯାଏ :

*ନିଜେ ସେ ନିଜର ଶତ୍ରୁ, ରିପୁଙ୍କୁ ଯେ ନ କରେ ଦମନ*

ପୁନଶ୍ଚ

*ନିଜେ ସେ ନିଜର ମିତ୍ର, ଜିତେନ୍ଦ୍ରିୟ ଅଟଇ ଯେ ଜନ ।*

ଏଥିରୁ ଆମ ଅଧିକାର ଓ ଦାୟିତ୍ୱ ଏକକାଳୀନ ଆମ ଉପରେ ନିର୍ଭର କରେ ।

ଚରିତ୍ର ନିର୍ମାଣରେ ତିନୋଟି ଦିଗ ରହିଛି । ଆମ ବ୍ୟକ୍ତିତ୍ୱ ଏପରି ଗଠନ କରିବା ଯଦ୍ୱାରା ଆମେ ସାର୍ଥକ ହେବା । ଆମ ସାର୍ଥକତା ଦେଶ ଦୃଷ୍ଟିରୁ ଓ ବିଶ୍ୱ ପରିପ୍ରେକ୍ଷୀରେ ପ୍ରାସଙ୍ଗିକ ହେବ । ଏହି ତିନୋଟି ଦିଗକୁ ପୃଥକ୍ ପୃଥକ୍ ନ ଦେଖି ଏକ ରେଖାରେ ନିରବଚ୍ଛିନ୍ନତାର କ୍ରମ ଅନୁଭବ କରିବା । 'ଜାତୀୟ ଚରିତ୍ର ଓ ବିଶ୍ୱଜନ ପ୍ରୀତି' ଏକଦା ଅନାବଶ୍ୟକ ବିରୋଧାଭାସରେ ଦେଖାଯାଉଥିଲା । ଆଜିକାଲି ଜ୍ଞାନ ବିଜ୍ଞାନ ଓ ପ୍ରଯୋଗ ବିଦ୍ୟାର ବିସ୍ଫୋରଣ ଫଳରେ ଆମ ବ୍ୟକ୍ତିତ୍ୱ, ରାଷ୍ଟ୍ରଭାବନା ଓ ବିଶ୍ୱମୈତ୍ରୀ ବାଲ୍ୟାବସ୍ଥାଠାରୁ ବାର୍ଦ୍ଧକ୍ୟ ତଥା ମୃତ୍ୟୁ ଯାଏ ପରସ୍ପର ପରିପୂରକ ଭାବରେ ବିଚାର ନ କଲେ ଆମେ ଅଯଥା ଭାରାକ୍ରାନ୍ତ ହେବା ଓ ନିଜେ ହିଁ ନିଜର ଅପ୍ରାସଙ୍ଗିକତା ପ୍ରତିପାଦନ କରିବା । ଅବାସ୍ତବତା ମଧ୍ୟରେ କାଳଯାପନ କରିବା ।

ସେ ଦୃଷ୍ଟିରୁ ସେ ସକଳ ନିଶାଭ୍ୟାସରୁ ନିବୃତ୍ତ ରହିବ । ଏହା ଫଳରେ ଦେଶ ଓ ବିଶ୍ୱକୁ ନିଶାମୁକ୍ତ କରି ପାରିବା । ସବୁ ସ୍ତରରେ ନିଶାମୁକ୍ତି ଆନ୍ଦୋଳନ ଚାଲୁ ନରହିବାରୁ ନିଶାରାକ୍ଷସ କବଳରୁ ଆମେ ମୁକ୍ତ ହୋଇପାରୁନାହିଁ । ଅପରପକ୍ଷରେ ପ୍ରତିସ୍ତରରେ ନିଶା ମୁକ୍ତିର ପ୍ରୟାସ ବଳବତ୍ତର ହେବ । ସକଳ ବଦଭ୍ୟାସକୁ ଆମେ ଖୋଜି ଦେଇପାରିବା । ଭୋଗ, ବିଳାସ, ବ୍ୟସନକୁ ପରିତ୍ୟାଗ କରି ତ୍ୟାଗର ଧାରାକୁ ଧରି ଚାଲିପାରିବା । ଭୋଗରୁ ରୋଗ, ବିଳାସରୁ ବିଷାଦ, ଅଧୋମୁଖୀ ହୋଇ ନଯାଇ ତ୍ୟାଗରେ ଆମେ ଭୋଗ କରିବା । ମର୍ତ୍ତ୍ୟମଣ୍ଡଳରେ ସତ୍ୟ ବିରାଜିବ । କାମକ୍ରୋଧାଦି ରିପୁଗଣ ମାନବ ସମାଜର ପରମ ଓ ଚରମ କ୍ଷତିକାରକ ଶକ୍ତି । ଏଥିପାଇଁ ଛୋଟକାଟ କଳହ ଅନେକ ସମୟରେ ଦେଶ ଅନ୍ତର୍ଗତ ଓ ଦେଶ ଦେଶ ମଧ୍ୟରେ ଯୁଦ୍ଧର କାରଣ ହୋଇଛି ଅତୀତରେ । ଅଧୁନା ଓ ଭବିଷ୍ୟତରେ ସେ ଆଶଙ୍କା ଆମକୁ ବ୍ୟତିବ୍ୟସ୍ତ କରୁଛି । ଭଗବଦ୍ ଗୀତା ବର୍ଣ୍ଣିତ 'ନିଷ୍କାମ କର୍ମ' ସର୍ବତ୍ର ପାଳନ କରିପାରିବା ନାହିଁ କି ? 'ସର୍ବଜନ ହିତେ ରତା' ରହିବାର ଅମୂଲ୍ୟ ମୂଲ୍ୟବୋଧ ସମସ୍ତଙ୍କ ଆଦରଣୀୟ ନ ହେବା ଫଳରେ ବିଶ୍ୱସଂଗଠନଗୁଡ଼ିକ ଶାନ୍ତିକାମୀ ନହୋଇ ପ୍ରତ୍ୟେକ ମନରେ ଅଶାନ୍ତିର ବୀଜବପନ କରୁଛି । ସତ୍ୟନିଷ୍ଠ ଓ ଅହିଂସ ଜୀବନ ଆମେ ନିରନ୍ତର ଯାପନ କରିବା । ଆମେ ଆଜୀବନ ବ୍ରହ୍ମଚର୍ଯ୍ୟ ପାଳନ କରିବା ।

ଆମେ ଗାଇବା :

*ସର୍ବେଽତ୍ର ସୁଖିନଃ ସନ୍ତୁ*
*ସର୍ବେ ସନ୍ତୁ ନିରାମୟାଃ ।*
*ସର୍ବେ ଭଦ୍ରାଣି ପଶ୍ୟନ୍ତୁ*
*ମା କସ୍ୟଚିତ୍ ଦୁଃଖଭାକ୍ ଭାବେତ ॥*

ଅର୍ଥାତ୍—

*ସବୁରି କଲ୍ୟାଣ କରେ କାମନା*
*ନିବାର ସବୁରି ରୋଗ ଯାତନା*
*କୁଶଳେ ରହନ୍ତୁ ସକଳେ ଭବେ*
*ଦୁଃଖ ଭାଗୀ କେହି ନ ହେଉ ଲବେ ।*

ଆମେ ଗାଇବା, ଆମେ କହିବା, ଆମେ ପାଳିବା—ଏପରି ଖଣ୍ଡେ ବହି ଲେଖାଯାଇଛି । 'ପିଲାଙ୍କ ବ୍ରହ୍ମଜ୍ଞାନ ଶିକ୍ଷା', ହେଉଛି ବହିଟିର ନାମ । ଏ ବହି ଦୁଇ ଭାଗରେ

ବିଭକ୍ତ, ଦ୍ୱିତୀୟ ଭାଗ ହେଉଛି ପାଠ-ଦୁଇ, ଶିରୋନାମା 'ଆମ ପାଇଁ କର୍ମପନ୍ଥା' । ପିଲାଙ୍କ ପାଇଁ ଉଦ୍ଦିଷ୍ଟ ବହିରେ ଆମ ପାଇଁ କାର୍ଯ୍ୟ କରିବାର ତାତ୍‌ପର୍ଯ୍ୟ କ'ଣ ? ଆଜି ସବୁକିଛି ଅନ୍ୟ ପାଇଁ ଘୋଷିତ । ଛେଳି ପରି ପାନ ଚୋବାଉଥିବା ବ୍ୟକ୍ତି ଜଣକ ଅନ୍ୟମାନଙ୍କୁ ଡାକି ହାକି କହୁଛନ୍ତି, 'ପାନ ଖାଅ ନାହିଁ, ସେଥିରେ ଥିବା କଡ଼ା ଗୁଣ୍ଡିରୁ କର୍କଟ ରୋଗ ହେବ' । ସିଗାରେଟ ଟାଣୁଥିବା ଲୋକ ସେପରି ରାସ୍ତା ପାଖରେ ଠିଆ ହୋଇ ପ୍ରଚାର କରୁଛନ୍ତି 'ସେଇଟା ଭଲ ସିଗାରେଟ୍, ଶୀଘ୍ର କିଣିଆଣି ମୋଭଳି ନିରନ୍ତର ଧୂମପାନ କର' । ମିଛୁଆମାନେ ସଂଘ ଗଢ଼ି ସତ୍ୟ କହିବା ପାଇଁ ସମସ୍ତଙ୍କୁ ଆହ୍ୱାନ ଦେଉଛନ୍ତି । ଏପରି ଭାଣ୍ଡାମି ବେଳରେ ଆବଶ୍ୟକ ପଡୁଛି, ଆମେ କରିବା ଓ ଆମ ଉଦାହରଣରୁ ଅନ୍ୟମାନେ ଶିଖିବେ ଓ କରିବେ । ବ୍ରହ୍ମଚର୍ଯ୍ୟ ଆମେ ପାଳିବା ଆଜୀବନ, ସତ୍ୟ କହିବା ନିରନ୍ତର—ଏପରି କଲେ ଆମ ପରିବାର, ପଡ଼ିଶା, ପାଠଶାଳା ହେବ କାମର ଅନୁଷ୍ଠାନ । କଥା ଧୂଆଁବାଣ ହୋଇଯାଏ; କିନ୍ତୁ କାମ ମନରେ ଲାଖିଯାଏ ।

ମହାପୁରୁଷମାନେ ଉତ୍ତମ ଆଚରଣ କରି ଶିକ୍ଷା ଦିଅନ୍ତି । ସେମାନଙ୍କ ଚରିତ୍ର ଉଚ୍ଚକୋଟୀର । ସମସ୍ତଙ୍କ ଦୁଃଖରେ ଦୁଃଖୀ ଓ ସୁଖରେ ସୁଖୀ । ସର୍ବଜନହିତେ ରତା । କାମ ଆଗ ଓ କଥା କାମ ଅନୁସାରେ ଚାଲେ । ଏହା ହିଁ ଚରିତ୍ର ଗଠନର ମୂଳକଥା ।



# ଦେବନାଗରୀ ଲିପି ଓ ରାଷ୍ଟ୍ରୀୟ ସଂହତି

## (ଉତ୍କଳ ନାଗରୀଲିପି ପରିଷଦ ପ୍ରକାଶନର ଅନୁଲିଖନ)

ଓଡ଼ିଆରେ ପତ୍ରପତ୍ରିକା ଅନେକ ପ୍ରକାଶ ପାଉଛି । ସୁଖର କଥା, ଏସବୁର ସଂଖ୍ୟା ଦିନକୁଦିନ ବଢୁଛି । ଦୈନିକ, ସାପ୍ତାହିକ, ପାକ୍ଷିକ, ମାସିକ, ଦ୍ୱିମାସିକ, ତ୍ରୈମାସିକ, ଷାଣ୍ମାସିକ ଓ ବାର୍ଷିକ ସଂଖ୍ୟା ମିଳୁଛି । ଏସବୁ ସାଧାରଣ ଓ ପ୍ରମୁଖ ବିଷୟ ଆଧାରିତ ହେଉଛି । ଏଥିମଧ୍ୟରେ ଓଡ଼ିଆ ବିଶ୍ୱ ନାଗରୀ ଅନ୍ୟତମ ମାସିକ । ଦେବନାଗରୀ ଲିପିରେ ଓଡ଼ିଆ ଭାଷା ମୁଦ୍ରିତ ହୋଇଛି । **ଯତ୍ର ବିଶ୍ୱଂ ଭବତ୍ୟେକନୀଡ଼ମ୍**—ଏହାର ମୁଖ୍ୟ ଅନ୍ତଃସ୍ବର । ୧୯୭୬ ମସିହାରୁ ଏହା ଲୋକଲୋଚନକୁ ଆସୁଛି । ଏହି ଅନନ୍ୟ ପତ୍ରିକା ବିଷୟରେ ଆମେ ଜିଜ୍ଞାସା କରିଛୁ କି ?

ଓଡ଼ିଆରେ ପୁସ୍ତକ ମଧ୍ୟ ପ୍ରକାଶ କରୁଛି । ଏହାର ସଂଖ୍ୟା ମଧ୍ୟ ବଢ଼ିଚାଲିଛି । କଳେବର ସାନ ବଡ଼ ହୋଇ ଯଥାକ୍ରମେ ପୁସ୍ତିକା ଓ ଗ୍ରନ୍ଥ ମିଳୁଛି । ବିଷୟ ଓ ସମୟ ଅନୁସାରେ ମୌଳିକ ରଚନା ଅତୀତ ସଂକଳନ । ଏଥିମଧ୍ୟରେ ଉତ୍କଳୀୟ କବି ବିଭୂତି ଶୀର୍ଷକ ୧୮୦ ପୃଷ୍ଠାର ପଥିତଯଶା କବିମାନଙ୍କ ଓଡ଼ିଆ କବିତା ସଂକଳନ ୧୯୮୭ ମସିହାରେ ଦେବନାଗରୀ ଲିପିରେ ମୁଦ୍ରିତ ଓ ପ୍ରକାଶିତ ହୋଇଛି । ଆଦିଯୁଗରୁ ଅଧୁନାତନ କବିତା ପ୍ରତିନିଧିମୂଳକ ଭାବରେ ସ୍ଥାନିତ କରାଯାଇଛି । ଓଡ଼ିଆ ଭାଷାର ପଦ୍ୟ ଦେବନାଗରୀ ଲିପିରେ ପ୍ରକାଶ ପାଇଛି । ଏହି ବିରଳ ପୁସ୍ତକ ଆମ ଦୃଷ୍ଟିକୁ ଆସିଛି କି ?

ଏହି ସାଧୁ ସାହସିକ ଓ ସଦ୍‌ଭାବନାର ପ୍ରୟାସ ସ୍ୱଭାବତଃ ପ୍ରଶଂସାଭାଜନ ହୋଇଛି । ତେଣୁ ଏହି କ୍ରମରେ ଅଣଓଡ଼ିଆ ବ୍ୟକ୍ତିଙ୍କ ହୃଦୟରେ ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ଜିଜ୍ଞାସାକୁ ଆଗେଇ ନେବା ପାଇଁ ଉତ୍କଳୀୟ ଗଳ୍ପ ସଂକଳନ ୧୯୯୮ ଡିସେମ୍ବର ମଝାମଝିରେ ପ୍ରକାଶ କରାଯାଇ ଆମ ମନରେ ବିସ୍ମୟ ସୃଷ୍ଟି କରାଯାଇଛି । ତେଇଶ ଜଣ ବଳିଷ୍ଠ କଥାକାରଙ୍କ ରଚନା ଦେବନାଗରୀ ଲିପିରେ ମୁଦ୍ରିତ ହୋଇଛି । ପ୍ରତ୍ୟେକ ଗାଳ୍ପିକଙ୍କ ପରିଚୟ ଓ କୃତି ଗଳ୍ପଗୁଡ଼ିକର ଆରମ୍ଭରେ ରହିଛି । ଏହି ୧୭[illegible] ପୃଷ୍ଠାର ଗ୍ରନ୍ଥଟିକୁ ଆମେ ପଢ଼ି ପାରୁଛୁ କି ?

ପତ୍ରପତ୍ରିକା ଓ ପୁସ୍ତକ ପ୍ରକାଶନ ପାଇଁ ଆମ ରାଜ୍ୟରେ ପ୍ରକାଶକ, ପରିଷଦ, ସଂସ୍ଥା, ସଂଗଠନ ଆଦି ଆଗେଇ ଆସୁଛନ୍ତି । ଆମ ପିଲାକାଳରେ ପ୍ରତିଷ୍ଠିତ ପ୍ରକାଶକଙ୍କ ସଂଖ୍ୟା ଆଙ୍ଗୁଳି ରେଖାରେ ଗଣାଯାଇ ପାରୁଥିଲା । ଆଜି ଏମାନଙ୍କ ସଂଖ୍ୟା କହିବା ସହଜ ନୁହେଁ । ତନ୍ମଧ୍ୟରୁ କେତେକ ରାଷ୍ଟ୍ରୀୟ ସଂଗଠନର ଶାଖା ଭାବରେ ଆମ ରାଜ୍ୟରେ କାମ କରୁଛନ୍ତି । ଅନ୍ୟ କେତେକ ରାଜ୍ୟସ୍ତରୀୟ ହେଲେ ହେଁ ନିର୍ଦ୍ଦିଷ୍ଟ ସ୍ଥାନରେ ବା ରାଜ୍ୟବ୍ୟାପୀ ହୋଇ ରହିଛି । ସମାଜ, ସମସ୍ୟା, କର୍ମୀ ଓ କର୍ମଚାରୀ ତଥା ବିଭିନ୍ନ ବର୍ଗର ଲୋକମାନଙ୍କୁ ଆଧାରିତ କରି ସେସବୁ ଗଢ଼ିଉଠୁଛି । ବାର୍ଷିକ ଓ ସାମୟିକ ସମ୍ମିଳନୀ ଏବଂ ଆଲୋଚନା ଚକ୍ର କରାଯାଇ ପତ୍ରପତ୍ରିକା ଓ ପୁସ୍ତକ ପ୍ରକାଶ କରାଯାଏ । ଏପରି ଗୋଟିଏ ଅନୁଷ୍ଠାନ ହେଉଛି ଉତ୍କଳ ନାଗରୀ ଲିପି ପରିଷଦ; ଯାହା ଅଧୁନା ଗାନ୍ଧୀନଗର କୋରାପୁଟ (୭୬୪୦୨୦) ଠାରେ ଅବସ୍ଥିତ । ଉଲ୍ଲିଖିତ ଓଡ଼ିଆ ବିଶ୍ୱନାଗରୀ, ଉତ୍କଳୀୟ କବି ବିଭୂତି ଓ ଉତ୍କଳୀୟ ଗଳ୍ପ ସଂକଳନ ଏହି ପରିଷଦର ପ୍ରକାଶନ, ପ୍ରଥମୋକ୍ତିଟି ନିୟମିତ ଓ ଦ୍ୱିରୋକ୍ତ ଦୁଇଟି ସାମୟିକ । ଅଖିଳ ଭାରତୀୟ ନାଗରୀ ଲିପି ପରିଷଦର ଶାଖା ଭାବରେ ୧୯୭୬ ମସିହାରେ ଶ୍ରୀ ରାଜକୃଷ୍ଣ ବୋଷଙ୍କ ସଭାପତିତ୍ୱରେ ଉତ୍କଳ ନାଗରୀ ଲିପି ପରିଷଦ ଗଠନ କରାଯାଇ କାର୍ଯ୍ୟ କରିଆସୁଛି । ୧୯୮୩ ମସିହାରେ ଏହାକୁ ପଞ୍ଜୀକୃତ କରାଯାଇଛି । ଆମେ ଏ ବିଷୟରେ ସଂପୂର୍ଣ୍ଣ ଅବହିତ ଅଛୁ କି ?

ଅଖିଳ ଭାରତ ସ୍ତରରେ ନାଗରୀ ଲିପି ପରିଷଦ ୧୯୭୫ ମସିହାରେ ପ୍ରତିଷ୍ଠା କରାଯାଇଥିଲା । ବିଶିଷ୍ଟ ଗାନ୍ଧୀବାଦୀ ନେତା ଶ୍ରୀମନ୍ ନାରାୟଣ ଏହାର ପ୍ରଥମ ସଭାପତି ଥିଲେ । ଅଧୁନା ଏହା ଗାନ୍ଧୀ ସ୍ମାରକୀନିଧି୍ ରାଜଘାଟ, ନୂଆଦିଲ୍ଲୀ-୧୧୦୦୦୨ ଠାରେ କାର୍ଯ୍ୟ କରୁଛି । 'ନାଗରୀ ସଂଗମ' ତ୍ରୈମାସିକ ପତ୍ରିକା ପ୍ରକାଶ କରାଯାଉଛି । ବିଭିନ୍ନ ପ୍ରଦେଶରେ ଅଖିଳ ଭାରତ ନାଗରୀ ଲିପି ପରିଷଦର ଶାଖା ଗଠନ କରାଯାଇଛି । ଭାରତର ବିଭିନ୍ନ ପ୍ରାଦେଶିକ ଭାଷା ଓ ଏସିଆର ଅନ୍ୟଭାଷାଗୁଡ଼ିକ ନାଗରୀ ଲିପି ଜରିଆରେ, ଶିଖିବା ଉଦ୍ଦେଶ୍ୟରେ ଇଣ୍ଡୋନେସିଆ, ସିଂହଳୀ, ଫରାସୀ, ଚୀନ, ରୁଷ ଆଦି ଭାଷା ଶିକ୍ଷା ପାଇଁ ପୁସ୍ତକ ପ୍ରକାଶ କରାଯାଉଛି ।

ଆମ ଦେଶ ଭାରତ ବର୍ଷ ବିଶାଳ ଓ ବହୁଭାଷାଭାଷୀ । ଏହା ଆମ ଅନନ୍ୟତା । ଅନେକ ଭାଷା କେବଳ କଥିତ । ଏହାର ଲିପି ନାହିଁ । ତଥାପି ଜୀବନକୁ ପରାର୍ଥ ଓ ପରମାର୍ଥ-ଭିତ୍ତିକ କରିବା ଓ ମାର୍ଗ ଦର୍ଶନ ଦେବା ପାଇଁ ଚାଲିଚଳନରେ ଅନେକ ଉପାଦାନ ରହିଛି । ଅନ୍ୟ ଯେଉଁ ଭାଷାଗୁଡ଼ିକର ଲିପି ଅଛି ଏହାର ସମୃଦ୍ଧି ସାହିତ୍ୟ ପରମ୍ପରା କ୍ରମେ ଉଚ୍ଚକୋଟୀର ବୈଶିଷ୍ଟ୍ୟ ଅର୍ଜନ କରିଛି । ଏହି ହେତୁ ଦେଶର ରାଷ୍ଟ୍ରୀୟ ସଂହତି ଓ ସାଂସ୍କୃତିକ ଏକାତ୍ମତା ସୃଷ୍ଟି କରିବାର ଆବଶ୍ୟକତା ଅନୁଭୂତ ହୁଏ । ଏପରିକି ବେଳେବେଳେ ଭାଷାଗତ

ବିଭେଦ ଓ ବିଦ୍ୱେଷ ମୁଣ୍ଡଟେକେ ଏବଂ ଆମକୁ ସଂଘର୍ଷର ସମ୍ମୁଖୀନ ହେବାକୁ ପଡ଼େ । ରାଷ୍ଟ୍ରଭାଷା ଯେପରି ଆବଶ୍ୟକ, ଏକ ରାଷ୍ଟ୍ରଲିପି ଆଦରି ନେବା ସେପ୍‌ରି ଅନିବାର୍ଯ୍ୟ । ପ୍ରାଚୀନ ଯୁଗରେ ଅଶୋକ ସମଗ୍ର ଭାରତରେ ବ୍ରାହ୍ମୀଲିପି ପ୍ରଚଳନ କରିଥିଲେ । ସେଦନରୁ ଏଯାଏ ମହର୍ଷି ଦୟାନନ୍ଦ ସରସ୍ୱତୀ, ଜଷ୍ଟିସ୍ ଶାରଦା ଚରଣ ମିତ୍ର, ମହାତ୍ମା ଗାନ୍ଧୀ ପ୍ରମୁଖ ବହୁ ମନୀଷୀ ଭାରତର ସହଲିପି ଭାବରେ ଦେବନାଗରୀ ଲିପି ପ୍ରଚଳନ କରିବାକୁ ଉଦ୍ୟମ କରିଛନ୍ତି । ଓଡ଼ିଶାର ବରପୁତ୍ର ଉତ୍କଳ ଗୌରବ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ ଏକ ରାଷ୍ଟ୍ରଲିପିର ପ୍ରଚଳନକୁ ସମର୍ଥନକରି ସେ କାଳରେ ଭାଷଣ ଦେଇଥିଲେ ଓ ପ୍ରବନ୍ଧ ଲେଖିଥିଲେ, ଗବେଷକ ଗୋପୀନାଥ ଦାଶଙ୍କ ଲିଖିତ 'ସିଦ୍ଧାନ୍ତ ଦର୍ପଣ' ପ୍ରକାଶନର ଇତିବୃତ୍ତ ଶୀର୍ଷକ ପ୍ରବନ୍ଧରୁ । (ଦୈନିକ ସମାଜ ତା ୧୩.୬.୯୯) ଜଣାଯାଏ ରାୟବାହାଦୁର ସୁଦାମ ଚରଣ ନାୟକ ରେଭେନ୍ସା କଲେଜର ବିଜ୍ଞାନ ଅଧ୍ୟାପକ ରାୟବାହାଦୁର ଯୋଗେଶ ଚନ୍ଦ୍ର ରାୟ ବିଦ୍ୟାନିଧିଙ୍କ ପାଖକୁ ଓଡ଼ିଆ ଅକ୍ଷରରେ ଲିଖିତ ସଂସ୍କୃତ ରସପୂର୍ଣ୍ଣ ତାଳପତ୍ର ପୋଥି ପଠାଇଥିଲେ । ଏହା ଜ୍ୟୋତିର୍ବିଜ୍ଞାନୀ ସଂସ୍କୃତଜ୍ଞ ସାମନ୍ତ ଚନ୍ଦ୍ରଶେଖରଙ୍କ ସିଦ୍ଧାନ୍ତ ଦର୍ପଣ (୧୮୬୯-୧୮୯୨) । ଯୋଗେଶ ଚନ୍ଦ୍ର ରାୟ ବିଦ୍ୟାନିଧିଙ୍କ ପରାମର୍ଶ ଅନୁସାରେ ଏହାର ଅନୁଲିଖିତ ବଙ୍ଗଳାରେ କରାଯାଇ ସେଥିରୁ ଦେବନାଗରୀ ଲିପିରେ ପ୍ରକାଶିତ ହେବାରୁ ଏହା ସର୍ବତ୍ର ଆଦୃତ ହେଲା ଓ ସାମନ୍ତଙ୍କ ଅଗାଧ ପାଣ୍ଡିତ୍ୟ ବିଶେଷକରି ଜ୍ୟୋତିର୍ବିଜ୍ଞାନ ଲୋକଲୋଚନକୁ ଆସିଲା । ନାଗରୀ ଅକ୍ଷରରେ ପ୍ରକାଶନର ଆବଶ୍ୟକତା ସମ୍ବନ୍ଧରେ ଅନ୍ୟ ଏକ ଦୃଷ୍ଟାନ୍ତ ମିଳେ । ଅଷ୍ଟାଦଶ ଶତାବ୍ଦୀର କବି ବଂଶୀବଲ୍ଲଭ ଗୋସ୍ୱାମୀଙ୍କ ନାଟକ 'ଚୈତ୍ର ତାମସା' ପାର୍ଶୀ ଓଡ଼ିଆ ବଙ୍ଗଳା ଓ ହିନ୍ଦୁସ୍ତାନୀ (ହିନ୍ଦୀ ଓ ଉର୍ଦ୍ଦୁ) ଭାଷାରେ ମିଶ୍ରିତ ହୋଇ ଲିଖିତ । ଏହାକୁ ସଂଗ୍ରହ ଓ ସଂପାଦନା କରିଛନ୍ତି ଡାକ୍ତର ଦ୍ୱିଜେନ୍ଦ୍ର କୁମାର ବେହେରା ୧୯୯୮ ସାଲରେ । ସଂପାଦକ ନିଜେ ଶେଷ କଥାରେ ଲେଖିଛନ୍ତି ଓଡ଼ିଶା ବାହାରର ପ୍ରଚାର ପାଇଁ ଦେବନାଗରୀ ସଂସ୍କରଣ ଆବଶ୍ୟକ । ଉତ୍କଳ ବିଶ୍ୱବିଦ୍ୟାଳୟ ସଂସ୍କୃତ ବିଭାଗ ମୁଖ୍ୟ ଅଧ୍ୟାପକ ପ୍ରହଲାଦ ପ୍ରଧାନଙ୍କ ମତ ସେ ଉଦ୍ଧାର କରନ୍ତି, ଓଡ଼ିଆ ସାହିତ୍ୟରେ ଏହା ଏକ ଅମୂଲ୍ୟ ଗ୍ରନ୍ଥ । ନାଗରୀ ଅକ୍ଷରରେ ମୁଦ୍ରିତ ହେଲେ ଏହା ଭାରତରେ ପ୍ରସାର ଲାଭ କରନ୍ତା ।

ନାଗରୀ ଲିପି ପ୍ରଚାର ପାଇଁ ଓଡ଼ିଆ ବିଶ୍ୱ ନାଗରୀ ଯଦି ସଫଳ ହେବ ତେବେ ରାଷ୍ଟ୍ରୀୟ ଏକାତ୍ମତାର ନିଅଁ ମଜଭୁତ୍ ହେବ ବୋଲି ଜୟପ୍ରକାଶ ନାରାୟଣ ଶୁଭ କାମନା ବ୍ୟକ୍ତ କରିଛନ୍ତି । ଅଧିକନ୍ତୁ ଭାରତର ରାଷ୍ଟ୍ରୀୟ ସଂହତି ଓ ସାଂସ୍କୃତିକ ଏକାତ୍ମତା ରକ୍ଷା କରିବାରେ ଏକ ସଂଯୋଗ ଲିପି ଭାବରେ ନାଗରୀ ଲିପିର ଭୂମିକା ପ୍ରବନ୍ଧରେ ଡଃ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ନାଗରୀ ଲିପି ବୈଶିଷ୍ଟ୍ୟର ସୁବିସ୍ତୃତ ଆଲୋଚନା କରିଛନ୍ତି । ତାଙ୍କ ମତରେ ଏହା ସ୍ୱୟଂସଂପୂର୍ଣ୍ଣ, ସମୁନ୍ନତ ଓ ବିଜ୍ଞାନସମ୍ମତ ଲିପି ରୂପେ ଯୁଗ ଯୁଗ ଧରି ପ୍ରତିଷ୍ଠା ଅର୍ଜିଛି ।

୧୯୩୭ ମସିହାରେ ଗାନ୍ଧିଜୀ ଭାରତୀୟ ସାହିତ୍ୟ ପରିଷଦର ଅଧକ୍ଷ ଭାବରେ ଏହି ମତ ପୋଷଣ କରିଛନ୍ତି । ବଙ୍ଗଳା ଭାଷାର ପ୍ରଖ୍ୟାତ ଲେଖକ ବଙ୍କିମ ଚନ୍ଦ୍ର ଚାଟାର୍ଜୀ 'ଆନନ୍ଦ ମଠ' ଉପନ୍ୟାସରେ ଅନୁରୂପ ମନ୍ତବ୍ୟ ଦେଇଛନ୍ତି । ସେ ମଧ୍ୟ ଡଃ ଭି. କେ. ଆର୍. ଭି. ରାଓଙ୍କ ମତକୁ ତାଙ୍କ ପ୍ରବନ୍ଧରେ ଉଦ୍ଧାର କରିଛନ୍ତି । ଦେଶରେ ଏକ ଲିପି ରହିବାର ଅର୍ଥ ହେଉଛି ସମସ୍ତ ଦେଶକୁ ରକ୍ଷା କରିବା ପାଇଁ ଏକ ଶସ୍ତ୍ରରେ ସୁସଜ୍ଜିତ କରିବା । ଭାରତର ବହୁଭାଷୀ ଜନତାଙ୍କ ମଧ୍ୟରେ ବିଚାରମତ ପାରସ୍ପରିକ ଆଦାନପ୍ରଦାନର ସୁବିଧା କରିବା ଦ୍ୱାରା ଭାରତର ଭାବାତ୍ମକ ଏକତା ଓ ରାଷ୍ଟ୍ରୀୟ ଚେତନାକୁ ସୁଦୃଢ଼ କରିବାରେ ଏକ ଅନୁପମ ବିଶାଳ ପ୍ରୟାସ ହେବ । ସମସ୍ତ ଜନତା ମଧ୍ୟରେ ଏପରି ରାଷ୍ଟ୍ରୀୟ ଭାବନା ଉତ୍ପନ୍ନ କରିପାରିଲେ ତାହା ଭାରତର ସୁରକ୍ଷା ଦୃଷ୍ଟିରୁ ସମସ୍ତ ସେନା, ଅସଂଖ୍ୟ ଉଡ଼ାଜାହଜ ଓ ବୁଡ଼ାଜାହାଜ ଅପେକ୍ଷା ଅଧିକ ମୂଲ୍ୟବାନ୍ ହେବ । ସେନା ହାରିଯାଇ ପାରେ । କିନ୍ତୁ କୌଣସି ରାଷ୍ଟ୍ରକୁ ପରାଜିତ କରାଯାଇ ପାରେନା । ଉକ୍ତ ପ୍ରବନ୍ଧରେ ଡଃ ଆଚାର୍ଯ୍ୟ ଭାଷାତତ୍ତ୍ୱବିତ୍ ଏସ୍. ଏମ୍. କାତ୍ରେଙ୍କ ମତକୁ ଉଦ୍ଧାର କରି ଦେବନାଗରୀ ଲିପିକୁ ସଂଯୋଗ ଲିପି ଭାବରେ ଗ୍ରହଣ କରିବାର ବଳିଷ୍ଠତାକୁ ପ୍ରତିପାଦନ କରିଛନ୍ତି । ଡଃ. କାତ୍ରେ କହିଛନ୍ତି, ''ଏହି ଦେଶରେ ପ୍ରଚଳିତ ସବୁ ଭାଷା ଭିତରେ ସମନ୍ୱୟ ଆଣି ପାରିବା ଭଳି କୌଣସି ଏକ୍ ଭାରତୀୟ ଲିପି ରୂପେ ବିକଶିତ କରିବାର ଆବଶ୍ୟକତା ଥିଲେ ତାହା ପୂରଣ କରି ପାରିବାର ସାମର୍ଥ୍ୟ ଦେବନାଗରୀ ଲିପିରେ ଅଛି ।''

ଅତୀତରେ ସଂସ୍କୃତ ଭାଷା ସମସ୍ତ ଦେଶକୁ ଯୋଡ଼ି ରଖିଥିଲା । ଶଙ୍କରାଚାର୍ଯ୍ୟ କେରଳରୁ କାଶ୍ମୀର ଯାଏ ଭ୍ରମଣ କରିଥିଲେ ଓ ସଂସ୍କୃତରେ ନିଜ ଦର୍ଶନର ପ୍ରସାର କରିଥିଲେ । ପୂର୍ବେ ବ୍ରାହ୍ମୀଲିପି ସଂସ୍କୃତରେ ଲିପିଥିଲା, ଏହାପରେ ଦେବନାଗରୀ ଲିପି ସୃଷ୍ଟି ହେଲା ।

ଆହୁରି ମଧ୍ୟ ଭିନ୍ନ ଭିନ୍ନ ଭାଷା ପାଇଁ ଭିନ୍ନ ଭିନ୍ନ ଲିପି ହୋଇଥିଲା । ମାତ୍ର ଆମ ଦେଶର ସବୁ ଭାଷାରେ ସଂସ୍କୃତ ସଂପର୍କ ଊଣାଅଧିକେ ଥିବାରୁ ଅନ୍ୟ ଭାଷାଭାଷୀମାନେ ନିଜ ନିଜକୁ ବୁଝିପାରିବେ । ଏହା ସତ୍ତ୍ୱେ ଲିପି ଶିଖିବାର କଠିନତା ଯୋଗୁଁ ବିଭିନ୍ନ ଭାଷାଭାଷୀ ଲୋକମାନେ ପରସ୍ପରଠାରୁ ଦୂରେଇ ରହି ଯାଉଛନ୍ତି ।

ପୂଜ୍ୟ ବିନୋବାଜୀ ଭୂଦାନ ପଦଯାତ୍ରା ଓ ସର୍ବୋଦୟର ବାର୍ତ୍ତା ପ୍ରଚାର ବେଳେ ସାରାଦେଶରେ ଭ୍ରମଣ କରିଛନ୍ତି । ବିଭିନ୍ନ ପ୍ରଦେଶର ଲୋକମାନଙ୍କ ସଂପର୍କରେ ଆସିଛନ୍ତି । ସେ ଯେଉଁ ପ୍ରଦେଶକୁ ଯାଉଥିଲେ ସେଠାର ଭାଷା ଶିଖୁଥିଲେ । ଉକ୍ତ ଭାଷାର ଆଧ୍ୟାତ୍ମିକ ଓ ମାନବବାଦୀ ଚେତନାର ସାହିତ୍ୟ ଅଧ୍ୟୟନ କରୁଥିଲେ । ସେ ଅନୁଭବ କଲେ ଯେ ଭାଷା

ଶିଖିବା ଯେତେ କଠିନ କାମ ନୁହେଁ, ତା'ଠାରୁ ଅଧିକ କଷ୍ଟ ହେଉଛି ସେ ଭାଷାର ଲିପିକୁ ଶିଖିବା । ତେଣୁ ସେ ସ୍ଥିର କଲେ ଯେ ଭାରତର ବିଭିନ୍ନ ଭାଷା ପାଇଁ ଯଦି ଗୋଟିଏ ସଂପର୍କ ଲିପି ପ୍ରଚଳନ କରାଯାଇ ପାରନ୍ତା ତେବେ ବିଭିନ୍ନ ଭାଷାଭାଷୀ ପରସ୍ପରର ଭାଷା, ସାହିତ୍ୟ ଓ ସଂସ୍କୃତି ସହିତ ପରିଚିତ ହେବାର ସୁଯୋଗ ପାଆନ୍ତେ । ଏଥିପାଇଁ ପଦଯାତ୍ରା ବେଳେ 'ଗୀତା ପ୍ରବଚନ' ପୁସ୍ତକରେ ବିଭିନ୍ନ ଭାଷାରେ ଅନୁବାଦ କରାଯାଉଥିଲା ଓ ଏହାକୁ ଦେବନାଗରୀ ଲିପିରେ ପ୍ରକାଶ କରିବା ପାଇଁ ସେ ଜୋର୍ ଦେଲେ । ଏହା ଫଳରେ ସବୁ ଭାଷାର ଗୀତା ପ୍ରବଚନ ଦେବନାଗରୀ ଲିପିରେ ମିଳିଲା । ପତ୍ରପତ୍ରିକା ମଧ୍ୟ ପ୍ରକାଶ ପାଇଲା । ଦେବନାଗରୀ ସଂସ୍କୃତର ଲିପି ହୋଇଥିବାରୁ ସାରା ଭାରତରେ ସଂସ୍କୃତ ପଢୁଥିବା ଲୋକମାନେ ଏହା ସହିତ ପରିଚିତ ହେଲେ ।

ଆହୁରି ମଧ୍ୟ ଜଣାଯାଏ ଯେ, ଏକମାତ୍ର ବ୍ରାହ୍ମୀଲିପିରୁ ହିଁ ସମସ୍ତ ଭାରତ ବର୍ଷରେ ବିଭିନ୍ନ ଆଂଚଳିକ ଲିପିର ଜନନୀ ରୂପେ ଆବିର୍ଭୂତ ହୋଇଥିଲା । ଏଥିରୁ ଜନ୍ମ ନେଇଥିବା ନାଗରୀ ଲିପି ଏହି ସବୁ ଲିପିମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ସ୍ଥାନ ଅଧିକାର କରି ଆସିଅଛି । ବ୍ରାହ୍ମୀଲିପି ଧ୍ୱନି ଶାସ୍ତ୍ରସମ୍ମତ ଓ ଏହା ବିଶ୍ୱରେ ସର୍ବାଧିକ ବୈଜ୍ଞାନିକ ଲିପି ଭାବେ ଜ୍ୱଳନ୍ତ ଉଦାହାରଣ ହୋଇ ରହିଛି । ତେଣୁ ଏଥିରୁ ଉତ୍ପନ୍ନ ନାଗରୀ ଲିପି ବିଜ୍ଞାନସମ୍ମତ । ଭାରତର ବିଭିନ୍ନ ଭାଷା ଓ ସେହି ଭାଷାଗୁଡ଼ିକର ପରଂପରାଗତ ଲିପିଗୁଡ଼ିକ ମଧ୍ୟରେ ଦେବନାଗରୀ ଲିପିକୁ ଏକ ସଂପର୍କ ଲିପି ଭାବରେ ପ୍ରଚଳନ କରାଇଲେ ସମଗ୍ର ଭାରତର ରାଷ୍ଟ୍ରୀୟ ସଂହତି ଓ ସାଂସ୍କୃତିକ ଏକାତ୍ମତା ରକ୍ଷା କରାଯାଇ ପାରିବ । ଏହା ଏକ ସଂଯୋଜକ ଲିପି ହେବ । ଏହାକୁ ସ୍ପଷ୍ଟ କରିଦିଆଗଲେ ଜଣା ପଡ଼ିବ ଯେ, ବିଭିନ୍ନ ଭାଷାଗୁଡ଼ିକର ମୂଳ ଲିପି ସହିତ ଦେବନାଗରୀ ଲିପିକୁ ଅତିରିକ୍ତ ଲିପି ଭାବରେ ଗ୍ରହଣ କରାଯାଇଛି । ଏହା ଫଳରେ ବିଭିନ୍ନ ଭାଷାଭାଷୀ ଲୋକମାନେ ପରସ୍ପର ଅଧିକ ନିକଟବର୍ତ୍ତୀ ହେବେ । ସେମାନଙ୍କ ହୃଦୟ ମିଳିତ ହେବ । ଏ ଦିଗରେ ଉଭୟ ନିଖିଳ ଭାରତ ଓ ରାଜ୍ୟ ସ୍ତରରେ ଗଠିତ ଦେବନାଗରୀ ପରିଷଦ କାର୍ଯ୍ୟ କରୁଛନ୍ତି । ବିନୋବାଭାବେଜୀ ବାରମ୍ବାର ଗୁରୁତ୍ୱ ଦିଅନ୍ତି ଯେ ଦେବନାଗରୀ ଲିପି କେବଳ ଏକମାତ୍ର ଲିପି ହେବ ନାହିଁ, ପରନ୍ତୁ ଏହା ମଧ୍ୟ ଏକ ସହଲିପି ହୋଇ ରହିବ । ଅର୍ଥାତ୍ ସମସ୍ତ ଭାଷା ନିଜ ନିଜ ଲିପି ସହିତ ରାଷ୍ଟ୍ରକୁ ଯୋଡ଼ି ରଖିବାର ଯୋଡ଼ ଲିପି ରୂପେ ଦେବନାଗରୀ ଲିପିକୁ ଗ୍ରହଣ କରିନେବେ ।

ରାଷ୍ଟ୍ରର ମହାନ୍ ସନ୍ଥ ଓ ନାଗରୀ ଲିପିର ପ୍ରେରକ ବିନୋବାଜୀ ଆହୁରି ସୁସ୍ପଷ୍ଟ କରି ଦିଅନ୍ତ, ଦକ୍ଷିଣ ଭାରତର ଚାରିଗୋଟି ଭାଷା ପରସ୍ପର ନିକଟତର ହେବା ତାଙ୍କର

ପ୍ରଥମ ଉଦ୍ଦେଶ୍ୟ । ଦ୍ୱିତୀୟ ଉଦ୍ଦେଶ୍ୟ ହେଉଛି ଭାରତର ସମସ୍ତ ଭାଷା ନିକଟତର ହେବା ଉଚିତ । ଉତ୍ତର ଭାରତ ଓ ଦକ୍ଷିଣ ଭାରତର ସଂହତି ପ୍ରତିଷ୍ଠା ହେଉଛି ତାଙ୍କର ତୃତୀୟ ଲକ୍ଷ୍ୟ ଏବଂ ଚତୁର୍ଥ ହେଉଛି ଭାରତ ଓ ଏସିଆର ଐକ୍ୟ । ପରିଶେଷରେ ଭାରତ ଓ ଭୂମଣ୍ଡଳର ଐକ୍ୟ ପ୍ରତିଷ୍ଠା ତାଙ୍କର ଅନ୍ତିମ ଲକ୍ଷ୍ୟ । ପଞ୍ଚମ କାର୍ଯ୍ୟକ୍ରମର ଆରମ୍ଭ କରାଯିବ କେବଳ ଯେତେବେଳେ ଆମେ ବିଶ୍ୱର ଏକାତ୍ମତା ପାଇଁ ସିଦ୍ଧାନ୍ତ ନେବା । ଏହା କହିବା ବାହୁଲ୍ୟ ନୁହେଁ ଯେ ବିଶ୍ୱୈକାତ୍ମତା ପାଇଁ ବେଳ ଆସିଛି ଓ ବିଶ୍ୱବାସୀ ଏଥିପାଇଁ ବାରମ୍ବାର ଘୋଷଣା କରୁଛନ୍ତି, ବିଭିନ୍ନ ବିଶ୍ୱ ସମ୍ମିଳନୀରେ ଓ ବିଶେଷକରି ମିଳିତ ଜାତିସଂଘରେ । ନାଗରୀ ଲିପି ଚଳିଲେ ଏକ ଅପରର ଭାଷା ଓ ସାହିତ୍ୟ ହୃଦୟଙ୍ଗମ କରିପାରିବେ । ଦେବନାଗରୀ ବିଶ୍ୱନାଗରୀ ହେଉ, ବିନୋବାଜୀଙ୍କ ଏହି ରଚନାରୁ ଏହା ସୁସ୍ପଷ୍ଟ ହୁଏ । ଓଡ଼ିଆ ବିଶ୍ୱନାଗରୀର ଫୋଲ୍ଡ଼ର ସଂକ୍ଷିପ୍ତ ବିବରଣୀ ଆଜି ଯାହାସବୁ ଉତ୍କଳ ନାଗରୀ ଲିପି ପରିଷଦର ମୁଖପତ୍ର ଓ ଅନ୍ୟାନ୍ୟ ପ୍ରକାଶନ ସେଥିରୁ ଉଦ୍ଧାର କରି ଏହି ପ୍ରବନ୍ଧ ପ୍ରସ୍ତୁତ ହୋଇଛି । ପରିଷଦ ପ୍ରତି କୃତଜ୍ଞତା ଜଣାଇବା ସଂଗେ ସଂଗେ (ଏପ୍ରିଲ୍-ଜୁନ୍ ୧୯୯୦ ବର୍ଷ ୧୩, ସଂଖ୍ୟାନ) ଓଡ଼ିଆ ବିଶ୍ୱନାଗରୀର ଅଗ୍ରଲେଖା 'ଦେବନାଗରୀ ବିଶ୍ୱନାଗରୀ' ହେଉ ଉଦ୍ଧାର କରୁଛି ।

ଭାରତର ଏକତା ପାଇଁ ହିନ୍ଦୀ ଭାଷା ଯେତେ୍ କାମ ଦେବ ତାହାଠାରୁ ବହୁଗୁଣରେ ଅଧିକ କାମ ଦେବ ଦେବନାଗରୀ ଲିପି । ସେଥିପାଇଁ ମୁଁ ଚାହୁଁଛି ଭାରତର ସମୁଦାୟ ଭାଷା ଦେବନାଗରୀ ଲିପିରେ ଲେଖା ହେଉ । 'ନାଗରୀ ଲିପି ସବୁଭାଷା ପାଇଁ ବ୍ୟବହୃତ ହେଉ'ର ଅର୍ଥ ନୁହେଁ ଯେ, ଅନ୍ୟ ଲିପି ନିଷିଦ୍ଧ ହେବ । ଉଭୟ ଲିପି ରହିବ । ଭାରତର ରାଷ୍ଟ୍ରୀୟ ଏକତା ଓ ପାରସ୍ପରିକ ବ୍ୟବହାର ପାଇଁ ହିନ୍ଦୀ ଭାଷାକୁ ରାଷ୍ଟ୍ରଭାଷା ରୂପେ ସ୍ୱୀକୃତି ମିଳିଛି । ଦକ୍ଷିଣ ଭାରତର ଲୋକେ ହିନ୍ଦୀ ବିରୋଧୀ ନୁହନ୍ତି । ସେମାନେ ମହଲତ ଚାହୁଁଛନ୍ତି । ଯେଉଁ କାରଣରୁ ହିନ୍ଦୀକୁ ସମସ୍ତଙ୍କର ଭାଷା ଭାବରେ ସ୍ୱୀକୃତି ମିଳିଛି, ସେହି କାରଣରୁ ନାଗରୀ ଲିପିକୁ ସମସ୍ତଙ୍କ ଲିପି ରୂପେ ମାନ୍ୟତା ମିଳିବା ଉଚିତ । ଭାରତର ଅନ୍ୟ ଭାଷା ଗୁଡ଼ିକ ମଧ୍ୟ ନାଗରୀ ଲିପିରେ ଲେଖିବା ପାଇଁ ସ୍ଥିର କରାଗଲେ ସେହି ଭାଷାଗୁଡ଼ିକ ଏବେ ଯେଉଁ ଲିପିରେ ଲେଖା ହେଉଛି ସେ ଲିପି ଉଠି ଯିବ ନାହିଁ । ସେ ଲିପି ମଧ ଚଳିବ ଏବଂ ନାଗରୀ ଲିପି ମଧ ଚଳିବ ।

ଇଉରୋପରେ ଆଜି କମନ୍ ମାର୍କେଟ ସମ୍ଭବ ହୋଇଛି, ତାହାର ଗୋଟାଏ କାରଣ ହେଉଛି ସେଠାରେ ଗୋଟିଏ ଲିପି ଚଳୁଛି । ମୁଁ ଏ ଅଳ୍ପ ଦିନରେ ଇଂରାଜୀ ଓ ଫ୍ରେଞ୍ଚ୍ ଛଡ଼ା ଜର୍ମାନ, ଲାଟିନ୍ ଓ ଏସ୍ପେରେଣ୍ଟୋ ଶିଖିଗଲି । ତାହାର କାରଣ ହେଲା ଲିପି ।

ଭାରତ ପନ୍ଦର ଷୋଳଟି ଭାଷାର ଦେଶ । କିନ୍ତୁ ଇଉରୋପରେ ପ୍ରତ୍ୟେକ ଭାଷାର ଦେଶ ଅଲଗା । ଇଉରୋପ ବିଜ୍ଞାନ କ୍ଷେତ୍ରରେ ଆମଠାରୁ ଅଗ୍ରଣୀ ହୋଇଥାଇ ପାରେ, ମାତ୍ର ସମାଜ ଶାସ୍ତ୍ରରେ ଆମଠାରୁ ପଛୁଆ । ଭାରତକୁ ଆମେ ଷୋଳଟି ଭାଷାର ଦେଶ କରି ଗଢ଼ିଛୁ, ଏଇଟା ଗୋଟାଏ ବଡ଼ କଥା । ପୂର୍ବେ ସଂସ୍କୃତ ଭାଷା ସମସ୍ତଙ୍କୁ ଯୋଡୁଥିଲା । ଶଙ୍କରାଚାର୍ଯ୍ୟ, ରାମନୁଜାଚାର୍ଯ୍ୟ ସଂସ୍କୃତ ଭାଷାକୁ ଆଧାର କରି ସମଗ୍ର ଭାରତରେ ବୁଲିଲେ । ସେ ସମୟରେ ଗୋଟିଏ ଲିପିଥିଲା—ବ୍ରାହ୍ମୀ ଲିପି । ପରେ ନାଗରୀ ଲିପି ସୃଷ୍ଟି ହେଲା । ବିଭିନ୍ନ ଭାଷା ସୃଷ୍ଟି ହେବା ସଂଗେ ସଂଗେ ଲିପି ମଧ୍ୟ ଅଲଗା ଅଲଗା ହେଲା । ଦକ୍ଷିଣ ଭାରତରେ ଚାରୋଟି ଲିପି ଚଳୁଛି । ଗୋଟିଏ ଲିପି ଯଦି ଚଳନ୍ତା ତେବେ ଚାରୋଟି ପ୍ରଦେଶର ଲୋକେ ପରସ୍ପର ଭାଷା ଶିଖି ପାରନ୍ତେ । ସେମାନଙ୍କ ଭାଷାରେ ବହୁତ ତାଳ ମେଳ ଅଛି, କିନ୍ତୁ ଲିପି ଭିନ୍ନ ଭିନ୍ନ ହୋଇଥିବାରୁ ଏକ ଅପରର ଭାଷା ଶିଖିବା କଷ୍ଟ ।

ଡଃ ଉମାଶଙ୍କର ଯୋଶୀ ମୋତେ ଲେଖିଛନ୍ତି ଯେ, ରୋମାନ୍ ଲିପିକୁ ରାଷ୍ଟ୍ରଲିପି କଲେ ଭଲ ହେବ । ଆଉ ଅନେକେ ମଧ୍ୟ ଏହି କଥା କହିଛନ୍ତି । ସେମାନଙ୍କର ଏହି ପ୍ରସ୍ତାବ ପଢ଼ି ମୁଁ ଖୁସି ନୁହେଁ—କାରଣ ସେମାନଙ୍କଠାରେ ଭାରତୀୟ ହୋଇଥିବାର ଅହଂକାର ନାହିଁ । ଏ ନିରହଂକାର ବୃତ୍ତି ପାଇଁ ମୁଁ ସେମାନଙ୍କୁ ଶ୍ରଦ୍ଧା କରୁଛି । ମୁଁ ଯେ ନାଗରୀ ଲିପି ଉପରେ ଗୁରୁତ୍ୱ ଦେଉଛି ତାହା ମୋର ଦେଶାଭିମାନ ନୁହେଁ । ମୋର ଧାରଣା ନାଗରୀ ଲିପି ଗୋଟିଏ ସ୍ୱୟଂ ସଂପନ୍ନ ଲିପି । ଅବଶ୍ୟ ଏଥିରେ ଯେ ସଂଶୋଧନର ଆବଶ୍ୟକତା ନାହିଁ ତାହା ମୁଁ କହୁନାହିଁ । ସଂଶୋଧନ ତ କରିବାକୁ ପଡ଼ିବ, କିନ୍ତୁ ଆଗେ ତାକୁ ସ୍ୱୀକୃତି ଦେଇ ତା'ପରେ ସଂଶୋଧନ କରିବାକୁ ହେବ ।

ବାସ୍ତବରେ ମୁଁ ତ ସବୁ ଲିପିର ବିରୋଧୀ । କାରଣ ଲେଖିପଢ଼ି ଶିଖିବା ଯୋଗୁଁ ଆତ୍ମସାକ୍ଷାତକାରରେ ବହୁତ ବିଘ୍ନ ଘଟିଲା । ହଜରତ୍ ମହମଦ୍ ଓ କବୀର ଦୁହେଁ ନିରକ୍ଷର ଥିଲେ । ଦୁହିଁଙ୍କ ବିଚାରର ପ୍ରଭାବ ବହୁତ ବେଶି ପଡ଼ିଲା । ଦୁର୍ଭାଗ୍ୟର କଥା ହେଉଛି ଲିପିର ସଂପୂର୍ଣ୍ଣ ବିରୋଧୀ ବିନୋବାଙ୍କୁ ଅନ୍ୟୂନ ୧୫ଟି ଲିପି ଶିଖିବାକୁ ପଡ଼ିଲା ।

ଏବେ ରୋମାନ୍ ଲିପି ବିଷୟରେ କହିବି । ଏହି ଲିପି ଇଂରାଜୀ ଭାଷା ପାଇଁ ମଧ୍ୟ ଭଲ ନୁହେଁ । ସେ ଲିପିର ଏପରି ଅରାଜକତା ଚାଲିଛି ଯେ ଜର୍ଜ ବର୍ଣ୍ଣାଡ଼ ଶ' ତାଙ୍କ ଇଚ୍ଛା ପତ୍ରରେ ରୋମାନ୍ ଲିପି ସୁଧାରିବା ପାଇଁ ଅର୍ଥ ବ୍ୟବସ୍ଥା କରିଦେଇଥିଲେ । ଏହା ଫଳରେ ରୋମାନ୍ ଲିପିକୁ ସୁଧାରିବା ପାଇଁ ଅନେକେ ଚେଷ୍ଟା କଲେ । ସେମାନେ ଯେଉଁ ଲିପି ତିଆରି କଲେ ତାହାର ଚିଠା 'ଲଣ୍ଡନ ଟାଇମସ୍' ମୋ ପାଖକୁ ପଠାଇଥିଲେ । ମୋର ବକ୍ତବ୍ୟ ହେଲା ବର୍ଣ୍ଣାଡ଼ ଶ'ଙ୍କ ପରି ବିଦ୍ୱାନ୍ ମଧ୍ୟ ରୋମାନ ଲିପିକୁ ଅଶୁଦ୍ଧ ମଣୁଥିଲେ ।

ତଥାପି ମୁଁ ରୋମାନ୍ ଲିପିକୁ ଗ୍ରହଣ କରିବାକୁ ପ୍ରସ୍ତୁତ ହେବି, ଯଦି ତାହା ବିଶ୍ୱ ରୋମାନ ହେବ । ଅର୍ଥାତ୍ ବିଶ୍ୱ ରୋମାନରେ ଗୋଟିଏ ଉଚ୍ଚାରଣ ପାଇଁ ଗୋଟିଏ ବର୍ଣ୍ଣ ରହିବ ଏବଂ ଗୋଟିଏ ବର୍ଣ୍ଣ ପାଇଁ ଗୋଟିଏ ଉଚ୍ଚାରଣ ହେବ । ରୋମାନ ଲିପିରେ ଗୋଟିଏ ବର୍ଣ୍ଣ ପାଇଁ ଅନେକ ଉଚ୍ଚାରଣ ରହିଛି । ଉଦାହରଣ ସ୍ୱରୂପ 'ଜି'ର ଗୋଟିଏ ଉଚ୍ଚାରଣ ହେଉଛି 'ଗ' ଆଉ ଗୋଟିଏ ଉଚ୍ଚାରଣ 'ଜ' ପୁଣି ଏହି ଲିପିରେ ଗୋଟିଏ ଧ୍ୱନି ପାଇଁ ଅନେକ ବର୍ଣ୍ଣ ରହିଛି । ଯଥା 'ସ' ପାଇଁ 'ସି' ଓ 'ଏସ୍' ଦୁଇଟି ବର୍ଣ୍ଣରେ ଉଚ୍ଚାରଣ ରହିଛି । ପୁଣି 'ପି' ମଧ୍ୟ ମିଳିବ ଯଥା 'ସାଇକଲୋଜି' । ବିଶ୍ୱ ରୋମାନ୍ କରିବାକୁ ହେଲେ ଉଟର ବନାନ ଡିଓଟିଏର ହେବ । ଆଜିର ବନାନ ଚଳିବ ନାହିଁ ।

ଆଉ ଗୋଟିଏ କଥା । ଇଂରେଜୀ ଭାଷାକୁ ମଧ୍ୟ ନାଗରୀ ଲିପିରେ ଲେଖା ହେବ । ଆଗ ନାଗରୀ ଲିପିରେ ଇଂରାଜୀ ଭାଷାଟା ଶିଖିସାରି ପରେ ରୋମାନ୍ ଲିପି ମଧ୍ୟ ଶିଖି ହେବ । ଶିକ୍ଷା ଦୃଷ୍ଟିରୁ ମଧ୍ୟ ଏହା ଠିକ୍ ହେବ । ମୁଁ ଏହିପରି ଭାବରେ ତେଲଗୁ, ଉର୍ଦ୍ଦୁ ଆଦି ଭାଷା ଶିଖି ପରେ ସେ ଲିପି ଶିଖିଲି । ଚୀନ୍ ଦେଶ କଥା ବିଚାରନ୍ତୁ । ସେ ଦେଶର ଲୋକ ସଂଖ୍ୟା ସତୁରି କୋଟି । ସେମାନେ ଭିନ୍ନ ଭିନ୍ନ ଭାଷା ମଧ୍ୟ କହନ୍ତି । ମାତ୍ର ତାଙ୍କର ପ୍ରାୟ ଦୁଇ ହଜାରଟି ଚିତ୍ର ଅଛି । ସେହି ଚିତ୍ରଲିପିରେ ସେମାନେ ନିଜ ନିଜ ଭାଷା ପଢ଼ନ୍ତି ଓ ବୁଝନ୍ତି । ସୂର୍ଯ୍ୟର ଚିତ୍ରକୁ ଦେଖି କିଏ ପଢ଼ିବ ସନ୍, କିଏ ପଢ଼ିବ ସୂର୍ଯ୍ୟ । ସୂର୍ଯ୍ୟକୁ ଯେ ଯାହା କହନ୍ତି ସେ ସେୟା ପଢ଼ିବେ । ଏପରି ସ୍ଥଳେ ଚୀନ ଯଦି ଦେବନାଗରୀ ଲିପିକୁ ଗ୍ରହଣ କରନ୍ତା ସେ ଦେଶର ବହୁତ ସୁବିଧା ହୁଅନ୍ତା ।

ଆମେ ଭାବିଲୁ ଏ କାମ ଆରମ୍ଭ ହେବ କେମିତି ? ଆମର ବିଭିନ୍ନ ଭାଷାରେ ପ୍ରକାଶ ପାଉଥିବା ସର୍ବୋଦୟ ପତ୍ରିକାକୁ ଆମେ ନାଗରିଲିପିରେ ଛାପିବା ଠିକ୍ କଲୁ । ଏହା ଫଳରେ ଗୁଜୁରାଟୀ, ବଙ୍ଗଳା, କନ୍ନଡ଼, ତେଲୁଗୁ, ପଞ୍ଜାବୀ, ଓଡ଼ିଆ ଭାଷାର ସର୍ବୋଦୟ ପତ୍ରିକା ଦେବନାଗରୀ ଲିପିରେ ଛାପା ହେଲା । ଭାରତର ପ୍ରତ୍ୟେକ ଭାଷାର ନିଜସ୍ୱ ବୈଶିଷ୍ଟ୍ୟ ରହିଛି । ସେହିସବୁ ଭାଷାର ସାହିତ୍ୟ ଯଦି ନାଗରୀ ଲିପିରେ ଛାପା ହେବ ତେବେ ଭାରତର ଶିକ୍ଷିତମାନଙ୍କୁ ଯୋଡ଼ିବାରେ ତାହା ସାହାଯ୍ୟ କରିବ । ନାଗରୀ ଲିପି ଯେ ସର୍ବସଂପନ୍ନ ତାହା ନୁହେଁ, ପୃଥିବୀରେ କୌଣସି ଲିପି ସର୍ବସଂପନ୍ନ ନୁହେଁ । ତେଣୁ ସେଥିରେ ତ୍ରୁଟି ଥାଇପାରେ । ମାତ୍ର ଯେତେ ଲିପି ବର୍ତ୍ତମାନ ଚଳୁଛି, ତନ୍ମଧ୍ୟରୁ ନାଗରୀ ଲିପି ଶ୍ରେଷ୍ଠ । ଭାରତର ସବୁ ଭାଷାକୁ ବ୍ୟକ୍ତ କରିବାପାଇଁ ନାଗରୀ ଲିପିରେ ଆହୁରି ଦୁଇ ତିନୋଟି ଅକ୍ଷର ଯୋଗ କରିବା ଆବଶ୍ୟକ ହେବ ଏବଂ ଏହା କରାଯାଇ ପାରିବ । ତାହା ହେଲେ ଭାରତର ସବୁ ଭାଷା ପାଇଁ ନାଗରୀ ଲିପି ଉପଯୋଗୀ ହୋଇ ପାରିବ । ଏହା ଜାପାନ ଓ ଚୀନ ଦେଶର ଭାଷା ପାଇଁ ଉପଯୋଗୀ ହେବ । ସମସ୍ତ ଏସିଆକୁ ସ୍ନେହ ସୂତ୍ରରେ

ବାନ୍ଧିବା ପାଇଁ ମୁଁ ବୌଦ୍ଧମାନଙ୍କୁ ନାଗରୀ ଲିପିରେ ତ୍ରିପିଟକ ଛାପିବାକୁ କହିବି । ପାଲି ଓ ସଂସ୍କୃତ ମଧ୍ୟରେ କି ପାର୍ଥକ୍ୟ ଅଛି ? ବଙ୍ଗଳା ଆଦି ଅନ୍ୟ ଲିପିଗୁଡ଼ିକର ନାଗରୀ ଲିପି ସହିତ ସାଦୃଶ୍ୟ ଅଛି । ନେପାଳରେ ମଧ୍ୟ ନାଗରୀ ଲିପି ଚଳେ ।

ନାଗରୀ ଲିପି ଦକ୍ଷିଣ ଭାରତୀୟଙ୍କୁ ଅରୁଚିକର ବୋଧ ହେବ ବିଚାରିବାଟା ଗୋଟାଏ ଭ୍ରମ ଧାରଣା । ତମିଲନାଡୁ ଓ କେରଳ ରାଜ୍ୟରେ କେତେକ ଲୋକ ସେମାନଙ୍କ ମାତୃଭାଷା ସଂସ୍କୃତ ଲେଖାଇଛନ୍ତି । କର୍ଣ୍ଣାଟକରେ ସଂସ୍କୃତ ଭାଷାରେ 'ସୁଧର୍ମା' ନାମକ ଖବରକାଗଜ ବାହାରୁଛି । ସଂସ୍କୃତ ଭାଷା ନାଗରୀ ଲିପିରେ ଲେଖା ହୁଏ । ତେଣୁ ନାଗରୀ ଦକ୍ଷିଣ ଭାରତ ପାଇଁ ଅରୁଚିକର ହେବ ନାହିଁ । ଗୋଟିଏ କାରଣରୁ ଅରୁଚିକର ହୋଇପାରେ । ହିନ୍ଦୀ ଭାଷା ନାଗରୀ ଲିପିରେ ଲେଖା ହେଉଥିବାରୁ ଅନେକ ଏହାକୁ ହିନ୍ଦୀ ଲିପି କହନ୍ତି । ମାତ୍ର ବାସ୍ତବରେ ହିନ୍ଦୀ ସହିତ ଏ ଲିପିର କୌଣସି ସଂପର୍କ ନାହିଁ । ସଂସ୍କୃତ ଅର୍ଦ୍ଧମାଗଧି ଓ ପାଲି ନାଗରୀରେ ଲେଖା ହୁଏ । ମରାଠୀ ମଧ ନାଗରୀ ଲିପିରେ ଲେଖାହୁଏ । ଉତ୍ତର ଭାରତର ଅନ୍ୟ ଲିପିଗୁଡ଼ିକ ଊଣାଅଧିକେ ନାଗରୀରେ ହିଁ ଲେଖାହୁଏ । ତେଣୁ ହିନ୍ଦୀ ସହିତ ନାଗରୀର ଖାସ ସଂପର୍କ ନାହିଁ । ନାଗରୀକୁ ହିନ୍ଦୀ ଲିପି କହିବା ଠିକ୍ ନୁହେଁ ।

ନାଗରୀ ଲିପି ଯେ ନିଜଭାଷା ଶିଖିବା ପାଇଁ ନୁହେଁ, ଅନ୍ୟ ଭାଷା ଶିଖିବା ପାଇଁ ସହାୟକ ହେବ ଏ କଥା ମୁଁ କହିଛି । ଏବେ ପୁଣି ଥରେ ମୁଁ ମୋ କଥାକୁ ଦୋହରାଉଛି । ମୁଁ 'ହିଁ' ବାଦୀ ନୁହେଁ । ମୁଁ ହେଉଛି 'ବି' ବାଦୀ । ଦେବନାଗରୀ ହିଁ ଚଳୁ ଏହା ମୁଁ କହୁନାହିଁ । ଦେବନାଗରୀ ବି ଚଳୁ ଏହା ହିଁ କହୁଛି ।

ବିନୋବାଜୀଙ୍କ ପଞ୍ଚସୂତ୍ରୀ କାର୍ଯ୍ୟକ୍ରମ ଆଉ ଏଠି ଦୋହରାଇବି ନାହିଁ ଏହି ପ୍ରବନ୍ଧର ଠିକ୍ ପୂର୍ବରୁ ଉଦ୍ଧାର କରିଛି । ବିଶ୍ୱ ନାଗରୀ ମାଧ୍ୟମରେ ବସୁଧୈବକୁଟୁମ୍ବଂ ହାସଲ କରାଯାଇ ପାରିବ ।

ଦାଦା ଧର୍ମାଧିକାରୀଙ୍କ ଆଶୀର୍ବଚନକୁ ଉଦ୍ଧାର କରି ପ୍ରବନ୍ଧର ପରିସମାପ୍ତି କରିବି । 'ବିଶ୍ୱ' ଓ 'ସର୍ବ' ଶବ୍ଦ ପର୍ଯ୍ୟାୟବାଦୀ ଅଟେ । ସେଥିପାଇଁ ବିଶ୍ୱନାଗରୀର ଅର୍ଥ ହେଉଛି ଦେବନାଗରୀ । 'ସର୍ବ' ଶବ୍ଦରେ ଦେବ ସାଙ୍କେତିକ, ଭାରତ ବର୍ଷ ହେଉଛି ବିଶ୍ୱର ପ୍ରତିକୃତି । ଏଠାରେ ବିବିଧତାକୁ ଏକ.ସୂତ୍ରରେ ଗୁନ୍ଥିବାର ପୁଣ୍ୟ କାର୍ଯ୍ୟ ଦେବନାଗରୀ ଲିପି କରିବ ଏବଂ ଏହି ରୂପେ ସମଗ୍ର ମାନବ ଜାତି ନିମନ୍ତେ ଏକ ସୁନ୍ଦର ବୈଜୟନ୍ତୀରେ ପରିଣତ ହେବ । ଏଥିରୁ ସଂବାଦୀ ଭାରତୀୟ ଜୀବନର ସଂଗୀତ ପ୍ରକଟ ହେବ । ରାଷ୍ଟ୍ର ଓ ନିଖିଳ ମାନବୀୟ ସଂବାଦୀ ସହଜୀବନ ଦିଗରେ ଏହା ଏକ ମାଙ୍ଗଲ୍ୟଯୁକ୍ତ ପଦକ୍ଷେପ, ମୁଁ ଏହାର ପ୍ରଗତି ଚାହେଁ ।

# ଆଧୁନିକୀକରଣର ଆଗ ଓ ପଛ

ଦେଶର ସମୃଦ୍ଧୀକରଣ ପାଇଁ ପୁଞ୍ଜିଲଗାଣ ସହିତ ପ୍ରତିଜ୍ଞାବଦ୍ଧ ପ୍ରଚେଷ୍ଟା ଚାଲିଛି । ଉଦ୍ୟମକୁ ଅବାରିତ ଓ କ୍ଷିପ୍ରତର କରାଯାଉଛି । ଏହି ପରିପ୍ରେକ୍ଷୀରେ ଆମରାଜ୍ୟର ଭୂମିକା ମଧ୍ୟ ଉଲ୍ଲେଖନୀୟ । ଶିଳ୍ପାୟନ ଓ ଉଦ୍ୟୋଗୀକରଣ ପାଇଁ ବହୁ ସହସ୍ର କୋଟିରୁ ଅଧିକ ବ୍ୟୟବରାଦ କରାଯାଇ ଜାତୀୟ ମାନଚିତ୍ରରେ ଆମ ରାଜ୍ୟକୁ ଏକ ସୁନିର୍ଦ୍ଦିଷ୍ଟ ସ୍ଥାନ ଦିଆଯାଉଛି । ଏବେ ପ୍ରଳୟଙ୍କରୀ ବାତ୍ୟା ଆମ ଆର୍ଥିକ ମେରୁଦଣ୍ଡକୁ ବିପର୍ଯ୍ୟସ୍ତ କରିଦେଇଛି । ପାରମ୍ପରିକ ସ୍ଥିତିର ପରିବର୍ତ୍ତନ କରାଯାଇ ଏକ ଗତିଶୀଳ ଓ ସମୃଦ୍ଧ ସମାଜ ରଚନା ଦିଗରେ ସୁଦୂରପ୍ରସାରୀ ଓ ସୁକଳ୍ପିତ ଆୟୋଜନ ଚାଲିଛି । ଏହା ଏକ ପ୍ରାଣମୂର୍ଚ୍ଛା ପ୍ରତିଜ୍ଞା ଓ ଉତ୍ସର୍ଗର ନିଦର୍ଶନ । କୌଣସି ଗୋଟିଏ ବର୍ଗ ବା ଯୋଜନାକାଳ ମଧ୍ୟରେ ଏତେ ଅଧିକ ମାତ୍ରାର ପୁଞ୍ଜିଲଗାଣ ଓ ଉତ୍ସର୍ଗୀକୃତ ଚିନ୍ତାର ପରିପ୍ରକାଶ ସମ୍ଭବତଃ ବିରଳ ।

ଏହା କେତେଦୂର ଆମ୍ଭମାନଙ୍କୁ ଆଗେଇ ନେଇଯାଇ ପାରିବ ଏହା ବିଚାର୍ଯ୍ୟ । ଏହା ଫଳରେ ବିଜ୍ଞାନଭିତ୍ତିକ କାରିଗରି ବିଦ୍ୟାର ପ୍ରୟୋଗ ଅଧିକରୁ ଅଧିକ କରାଯିବ । ତେଣୁ ଆମ ଉତ୍ପାଦନ ନିଶ୍ଚିତ ଭାବରେ ବୃଦ୍ଧି ପାଇବ । ଶିଳ୍ପ, କୃଷି, ଛୋଟବଡ଼ କାମଧନ୍ଦା ଆଦି ଉତ୍ପାଦନମୂଳକ ପ୍ରଚେଷ୍ଟା ସଂପ୍ରସାରିତ ହେବ । ସେଗୁଡ଼ିକ ଉଜ୍ଜୀବିତ ହେବ । ଏହା କାହାରି କଳ୍ପନା ବା ଅନୁମାନର କଥା ନୁହେଁ । ପୃଥିବୀପୃଷ୍ଠରେ ବିକାଶଶୀଳ ଦେଶଗୁଡ଼ିକ ଏହାର ଦୃଷ୍ଟାନ୍ତ । ଦାରିଦ୍ର୍ୟ ଦୂରୀକରଣର ଏହା ମୂଳମନ୍ତ୍ର । ଏବେ ବିଜ୍ଞାନଭିତ୍ତିକ କାରିଗରି ବିଦ୍ୟାର ପ୍ରୟୋଗଦ୍ୱାରା ଉତ୍ପାଦନ ବଢ଼ିବ, ଏଥିରେ ସନ୍ଦେହ ନାହିଁ । ବିଜ୍ଞାନଭିତ୍ତିକ ପ୍ରଯୁକ୍ତି ବିଦ୍ୟାଦ୍ୱାରା ଉତ୍ପାଦନ ବଢ଼ିବ, ମାତ୍ର ଏହାର ଉପଯୋଗ କରିବାର କ୍ଷମତା ରହିବ ମୁଷ୍ଟିମେୟ ପୁଞ୍ଜିପତିଙ୍କ ହାତରେ । ଗରିବ ଲୋକ ପ୍ରଯୁକ୍ତିବିଦ୍ୟା ପାଇଁ ପୁଞ୍ଜି ଲଗାଇ ପାରିବନାହିଁ । ଯୁକ୍ତରାଷ୍ଟ୍ର ଆମେରିକାରେ ମାତ୍ର ୨ ଶତାଂଶ ଲୋକ କୃଷିକ୍ଷେତ୍ରରେ ଅଛନ୍ତି । ଜଣେ ଜଣେ ଚାଷୀଙ୍କ ହାତରେ ହଜାରେ ହଜାରେ ଏକର ଜମି । ହେଲିକପ୍ଟରରେ ମଞ୍ଜିବୁଣା, ରାସାୟନିକ ସାର ଓ କୀଟନାଶକର ପ୍ରୟୋଗ, କମ୍ବାଇନ୍ ହାରଭେଷ୍ଟର ଦ୍ୱାରା ଫସଲ କଟା—ସବୁକିଛି

ଯନ୍ତ୍ର ସାହାଯ୍ୟରେ ହୋଇଥାଏ । ଭାରତଭଳି ଦେଶରେ ୨/୩ ଏକର ଚାଷଜମି ଥିବା ଦରିଦ୍ରଲୋକ ପାଖରେ ଏସବୁ ସ୍ୱପ୍ନ । ଦ୍ୱିତୀୟତଃ ଆମେରିକା ଭଳି ଧନୀରାଷ୍ଟ୍ରରେ ୨ କୋଟି ଲୋକ ମଧ ଅତ୍ୟନ୍ତ ଦରିଦ୍ର ଓ ଗୃହଶୂନ୍ୟ । 'ସର୍ବେ ଭବନ୍ତୁ ସୁଖିନଃ...' ଚିନ୍ତାଧାରାର ପରିପ୍ରକାଶ ନ ଘଟିଲେ ବିଶ୍ୱରେ ମାନବ ସମାଜ ତିଷ୍ଠିବା ଅସମ୍ଭବ ହୋଇପଡ଼ିବ । ଆହୁରି ମଧ ସମଗ୍ର ମାନବ ଜୀବନରେ ଉକ୍ତ ପ୍ରକ୍ରିୟାଦ୍ୱାରା ବୈପ୍ଳବିକ ପରିବର୍ତ୍ତନ ହୋଇଯିବ । ଲୋକମାନଙ୍କ ଦୃଷ୍ଟିକୋଣ, ଚିନ୍ତା, ମନୋଭାବ, ରୀତି ନୀତି, ଆଚାର ବିଚାର ଆଦିରେ ପରିବର୍ତ୍ତନ ହେବ । କୃଷି ଶିଳ୍ପ ଆଦି ଉତ୍ପାଦନ କ୍ଷେତ୍ରରେ ବିଜ୍ଞାନର ପ୍ରୟୋଗଦ୍ୱାରା ଉତ୍ପାଦନ ବଢୁଛି ଓ ବଢ଼ିବ । ଏହା ସଙ୍ଗେ ସଙ୍ଗେ ଜନଜୀବନରେ ପରିବର୍ତ୍ତନ ସାଧିତ ହେବ । ରାଜନୈତିକ, ଧାର୍ମିକ ଓ ପାରିପାର୍ଶ୍ୱିକ ଚିନ୍ତାରେ ଗତିଶୀଳତା,ଅଗ୍ରଗାମିତା ଓ ସହଯୋଗିତା ପ୍ରକାଶ ପାଇବ । ବିଜ୍ଞାନର ବ୍ୟବହାର ହେତୁ ଜନଜୀବନର ସାମାଜିକ, ସାଂସ୍କୃତିକ ଓ ରାଜନୈତିକ ବିଭାଗରେ ଯେଉଁ ବୈପ୍ଳବିକ ପରିବର୍ତ୍ତନ ହୁଏ, ଏହି ପ୍ରକ୍ରିୟାକୁ ଆଧୁନିକୀକରଣ କୁହାଯାଏ ।

ଯନ୍ତ୍ରାଦିର ବ୍ୟବହାରରେ ଆଧୁନିକୀକରଣ ସୀମିତ ନୁହେଁ । ଏହା ମଧ ସେତିକିରେ ପର୍ଯ୍ୟାପ୍ତ ନୁହେଁ । ଅବଶ୍ୟ ଯନ୍ତ୍ର ଓ ଆଧୁନିକ ଯନ୍ତ୍ରର ବ୍ୟବହାର ପ୍ରଯୁକ୍ତି ବିଦ୍ୟାସହିତ ଜଡ଼ିତ । ଉପଯୋଗୀ ଯନ୍ତ୍ର ଓ କୌଶଳର ଉଦ୍ଭାବନ ମଧ ଏଥିସହିତ ସଂପୃକ୍ତ । କିନ୍ତୁ ଏସବୁ ଫଳରେ ମାନସିକ, ସାମାଜିକ, ସାଂସ୍କୃତିକ, ରାଜନୈତିକ ଆଦି ଦିଗରେ ଯେଉଁ ସମୂହ ପରିବର୍ତ୍ତନ ଘଟେ ତାହାହିଁ ଆଧୁନିକୀକରଣ । ହାତ ଲଙ୍ଗଳ ପରିବର୍ତ୍ତେ କଳ ଲଙ୍ଗଳ ବ୍ୟବହାର କରିବାଦ୍ୱାରା ଚାଷୀ ପ୍ରାକୃତିକ ଅବସ୍ଥାର ଅନିଶ୍ଚତତାକୁ କିୟଦଂଶ ଆୟତ୍ତକରି ନିଜର ସାମର୍ଥ୍ୟ ବଢ଼ାଏ । ଅଳ୍ପ ସମୟରେ ଅଧିକ କାମ କରିବାର ସୁଯୋଗ ଲାଭକରିବା ଦ୍ୱାରା ତାର ଆତ୍ମବଳ ବଢ଼ିଯାଏ । ଦନ୍ତୁଡ଼ା ଦାଆ ପରିବର୍ତ୍ତେ ଧାରୁଆ ଦାଆ କିମ୍ବା ଏସବୁ ପରିବର୍ତ୍ତେ କଳ ଦାଆ ବ୍ୟବହାର କଲେ ଘାସକଟାଳିର ମାନସିକ ପରିବର୍ତ୍ତନ ଆସେ । ସାମାଜିକ ସମ୍ପର୍କ, ଜୀବନପ୍ରତି ଦୃଷ୍ଟି ଓ ସାଂସ୍କୃତିକ ଚେତନାରେ ନୂତନ ବିଚାର ଆସିଯାଏ । ବ୍ୟକ୍ତିର ତଥା ସାମାଜିକ ସମ୍ପର୍କର ନିୟନ୍ତ୍ରଣ କରିବା ପାଇଁ ଚେତନା ମଧ ଆସେ ।

## ଜ୍ଞାନର ବିସ୍ଫୋରଣ

ମାନବର ଜୀବନ ଓ ଜୀବିକାକୁ ସୁଖମୟ ତଥା ସମୃଦ୍ଧ କରିବା ପାଇଁ ମାନବସେବାରେ ବିଜ୍ଞାନ କେବଳ କେତୋଟି ଯନ୍ତ୍ରପାତି ଓ ହାତହତିଆର ଦେଇନାହିଁ, ଦେଇଛି ଓ ଦେଉଛି ଅସୀମ ଏବଂ କ୍ରମବର୍ଦ୍ଧିଷ୍ଣୁ ଜ୍ଞାନ । ବିଜ୍ଞାନର ଯୁଗରେ ଜ୍ଞାନର ବିସ୍ଫୋରଣ ହେଉଛି ଅଭୂତପୂର୍ବ ବିସ୍ମୟ । ଆଧୁନିକ ସମାଜରେ ଏହା ମାନବପ୍ରତି ଆହ୍ୱାନ । ସମାଜର

ଆଧୁନିକୀକରଣରେ ଏହି ବିସ୍ମୟ ଏକ ଅଭିନବ ଚିନ୍ତା ସୃଷ୍ଟି କରିଛି । କେବଳ ଜ୍ଞାନର ଭଣ୍ଡାର ବଢୁନାହିଁ, ଏହି ଭଣ୍ଡାରର ବୃଦ୍ଧିର ବେଗ ବଢ଼ିବାରେ ଲାଗିଛି । କିଛିଦିନ ପୂର୍ବେ ଦଶବର୍ଷରେ ଜ୍ଞାନ ଦ୍ୱିଗୁଣିତ ହେଉଛି ବୋଲି କହୁଥିଲେ । ପୁଣି ଏହା ପାଞ୍ଚବର୍ଷକୁ କମିଲା । ବର୍ତ୍ତମାନ ଏହା ଆହୁରି କମି ଦୁଇ ତିନି ବର୍ଷରେ ଜ୍ଞାନ ଦ୍ୱିଗୁଣିତ ହେଉଥିବାର ଅନୁମାନ କରାଯାଏ । କେବଳ ପାଠପଢ଼ା ପାଇଁ ନୁହେଁ, ଜୀବନର ପ୍ରତ୍ୟେକ ବିଭାଗ ପାଇଁ ଓ ପ୍ରତ୍ୟେକ ମାନବପାଇଁ ଏହି ଜ୍ଞାନ ବୃଦ୍ଧି ଏକ ବିସ୍ଫୋରଣ ସୃଷ୍ଟି କରିଛି । ଏହି କ୍ରମବର୍ଦ୍ଧିଷ୍ଣୁ ଜ୍ଞାନକୁ ଆପଣାର କରି ଅନୁରୂପ ଆଚାର ସଙ୍ଗେ ସଙ୍ଗେ ଏହାର କ୍ରମବର୍ଦ୍ଧିଷ୍ଣୁତାରେ ସହାୟକ ନ ହେଲେ ମନୁଷ୍ୟ ଓଲଟି ପଡ଼ିବ । ତା'ର ଥୟ ରହିବ ନାହିଁ । ସେଥିପାଇଁ ଶିକ୍ଷାୟତନ ସହିତ ଜୀବନର ପ୍ରତ୍ୟେକ ବିଭାଗକୁ ଏହି ଆହ୍ୱାନର ସମ୍ମୁଖୀନ ହେବାକୁ ପଡ଼ିବ । ପ୍ରତ୍ୟେକଟି ଗଣମାଧ୍ୟମ ଏହି ଦୃଷ୍ଟିରୁ ସଚେତନ ହେବା ଆବଶ୍ୟକ ।

ଆଜିକାଲି ଜ୍ଞାନାର୍ଜନ କହିଲେ, ଏହା କେବଳ ଶିକ୍ଷାୟତନକୁ ନିର୍ଦ୍ଦେଶିତ କରେ ଓ କଣ୍ଠସ୍ଥୀକରଣକୁ ବୁଝାଇଥାଏ । ଆଧୁନିକ ସମାଜରେ ଏହା ସେତିକି ନୁହେଁ । ଜ୍ଞାନାର୍ଜନକୁ ଜୀବନବ୍ୟାପୀ ପ୍ରକ୍ରିୟା କରିବାକୁ ପଡ଼ିବ ଓ ଜୀବନର ସମସ୍ତ ଅନୁଭୂତିକୁ ଆଧାରିତ କରିବାକୁ ହେବ । ଏହାଛଡ଼ା କଣ୍ଠସ୍ଥୀକରଣକୁ ପୂରାପୂରି ପରିହାର କରି ଜ୍ଞାନର ଆବିଷ୍କାର କରି ଏହା ଗ୍ରହଣ କରିବାକୁ ହେବ । ଏ ଯାଏଁ ଜ୍ଞାନ ଗ୍ରହଣ ଏକ ନିଷ୍କ୍ରିୟ ପ୍ରକ୍ରିୟା ହୋଇଛି । ଏହାକୁ ସକ୍ରିୟ ପ୍ରକ୍ରିୟାରେ ପରିଣତ କରାଯିବ । ଏହାକୁ ପ୍ରୟୋଗାତ୍ମକ କରିବାକୁ ହେବ । ଜ୍ଞାନର ଅଗ୍ରଗତି ସହିତ ତାଳ ରଖି ଆଧୁନିକ ସମାଜ ଆଗେଇ ଚାଲିବ । ସେ ଦୃଷ୍ଟିରୁ ରେଡ଼ିଓ, ଟେଲିଭିଜନ, ସମ୍ବାଦପତ୍ର, ପ୍ରାଚୀରପତ୍ର ଆଦି ସର୍ବବିଧ ଗଣମାଧ୍ୟମ ଏହି ନୂତନ ଦୃଷ୍ଟିକୋଣ ଗ୍ରହଣ କରିବେ ।

## ଆଧୁନିକୀକରଣ ଓ ସହରୀକରଣ

ପାଶ୍ଚାତ୍ୟ ଦେଶର ଦୃଷ୍ଟାନ୍ତରୁ ଜଣାଯାଏ ଯେ ଆଧୁନିକୀକରଣକୁ ସହରୀକରଣ ସହିତ ସମାନ କରାଯାଇଛି । ଯେଉଁଠି ଶିଳ୍ପ, ସେଇଠି ସହର ଓ ଏହାକୁ କେନ୍ଦ୍ରକରି ଅପରାଧ, ଅପବ୍ୟୟ, ଅନ୍ୟାୟ, ଅସମତା, ଅସାମାଜିକତା ଆଦି ଏକ ଅଡୁଆ ସୂତା ସଦୃଶ ପର୍ବତ ଦଣ୍ଡାୟମାନ । ଜନାକୀର୍ଣ୍ଣତା ଏହାର ପରିଚୟ ଦିଏ । ଏକ ଅର୍ଥହୀନ କୋଳାହଳ ଓ କଳରବ ଯନ୍ତ୍ର ସାହାଯ୍ୟରେ କାନକୁ ବଧିରା କରି ପକାଏ । ରୋଜଗାରର ସୁବିଧା ଥାଏ ସତ, ଏହାର ପ୍ରଲୋଭନରେ 'ବୁଭୁକ୍ଷିତ କିଂ ନ କରୋତି ପାପଂ' ନ୍ୟାୟରେ ପାପ, ତାପ ଓ ମନସ୍ତାପ ସବୁଆଡୁ ଆସି ଏଠି ଠୁଳୀଭୂତ ହୁଏ । ଗ୍ରାମରୁ ଏହା ହୁଏ ସହରକୁ ଦାରିଦ୍ର୍ୟର ରପ୍ତାନୀ । ବିକାଶ ସହିତ ପ୍ରଦୂଷଣ ଓ ଦାରିଦ୍ର୍ୟ ବୃଦ୍ଧି । ପ୍ରକୃତିଲକ୍ଷ୍ମୀ ଅନ୍ୟତ୍ର ଆପଣାଛାଏଁ ଛାଡ଼ି ଚାଲିଯାଆନ୍ତି । ଉତ୍ପାଦନ କ୍ଷମତାକୁ ବାଦ୍‌ଦେଇ କେବଳ ରୋଜଗାର କ୍ଷମତା ଉପରେ

ଧ୍ୟାନ ରହେ । ଏହାଫଳରେ ଶଠତା, ଆଳସ୍ୟ, ପାପାଚରଣ, ହିଂସା, ମିଥ୍ୟା, ଚୋରି ଆଦି ଅତି ଦ୍ରୁତମାତ୍ରାରେ ବଢ଼ିଯାଏ । ଏହା କ'ଣ ବିଜ୍ଞାନଭିତ୍ତିକ ସମାଜ ରଚନା ? ଏହା କଅଣ ପ୍ରଯୁକ୍ତି ବିଦ୍ୟା ଆଧାରିତ ସମାଜ ? ସବୁପ୍ରକାର ଯାନ୍ତ୍ରିକ ବିକାଶଧାରା ସହିତ ପରିବେଶ ପ୍ରଦୂଷଣ ସମସ୍ୟା ଜଡ଼ିତ । ଯେଉଁଠି କାରଖାନା ରହିବ, ସେଠାରେ ବର୍ଜ୍ୟବସ୍ତୁ ଓ ବିଷାକ୍ତ ବାଷ୍ପ ଉତ୍ପନ୍ନ ହେବ । କୋଟି କୋଟି ବର୍ଷର ପୃଥିବୀକୁ ମାତ୍ର ଦୁଇଶହ ବର୍ଷର ଶିଳ୍ପ ସଭ୍ୟତା ବିପର୍ଯ୍ୟସ୍ତ କରି ପକାଇଲାଣି । ବାୟୁ, ଜଳ, ମାଟି ଭଳି ପ୍ରାକୃତିକ ଏବଂ ଜୀବସୃଷ୍ଟି ପାଇଁ ଅପରିହାର୍ଯ୍ୟ ପଦାର୍ଥ ଏହି ଶିଳ୍ପ ସଭ୍ୟତାପାଇଁ ଭୟଙ୍କରଭାବେ ବେଳକୁ ବେଳ ବିଷାକ୍ତ ହୋଇ ଉଠୁଛି । କାରଖାନାର ଉତ୍ପାଦନ କୃତ୍ରିମ । ସେସବୁ ନ ରହିଲେ ବି ମଣିଷ ବଞ୍ଚିବ । ଲୁହା, ଆଲୁମିନିୟମ୍‌କୁ ମଣିଷ ଖାଇବ ନାହିଁ । ମାତ୍ର ବିଶୁଦ୍ଧ ବାୟୁ, ସ୍ୱଚ୍ଛ ଜଳ ବିନା ମଣିଷ ବଞ୍ଚି ପାରିବ କି ? ଏହି ପ୍ରଶ୍ନ ସମଗ୍ର ବିଶ୍ୱର ବୁଦ୍ଧିଜୀବୀ ଓ ବୈଜ୍ଞାନିକଙ୍କୁ ଆନ୍ଦୋଳିତ କରୁଛି ଏବଂ ବିଶ୍ୱବ୍ୟାପୀ ପରିବେଶଗତ ସଚେତନତା ଉପରେ ଗୁରୁତ୍ୱପୂର୍ଣ୍ଣ ଆଲୋଚନାମାନ ଅନୁଷ୍ଠିତ ହେଉଛି । କେତେକ ପ୍ରକାରର ଅତି ବିଷାକ୍ତ କାରଖାନାମାନଙ୍କୁ ବନ୍ଦକରି ଦେବା ପାଇଁ ବିକଶିତ ରାଷ୍ଟ୍ରମାନେ ମଧ୍ୟ ସିଦ୍ଧାନ୍ତ ନେଲେଣି । ଅତଏବ ଆଧୁନିକୀକରଣ ଅର୍ଥରେ ସହରୀକରଣର ଦୃଷ୍ଟିପାତ ପ୍ରତି ସତର୍କ ରହିବାକୁ ହେବ । ଛୋଟ ଛୋଟ ଶିଳ୍ପ ଗାଁ ଗାଁରେ କରି ଗାଁର ଅସୁବିଧା ଦୂରକରିବା ଉଚିତ । ଗ୍ରାମ୍ୟ ଜୀବନକୁ ସମୃଦ୍ଧ ଓ ସୁଖମୟ କରିବାକୁ ହେବ । ବୃହତ୍ ଶିଳ୍ପର ପରିପୂରକ ଭାବରେ କୁଟୀର ଶିଳ୍ପ ଗଢ଼ି ଉଠିବାକୁ ସୁଯୋଗ ଦିଆଯିବ । ଶ୍ରମ ଓ ଶ୍ରମିକର ସମ୍ମାନ ରହିବ । ବିନା ଶ୍ରମରେ ଅର୍ଜନ ଅନ୍ୟାୟ ହେବ । ସହର ଜୀବନର ପୁନଃନିର୍ମାଣ କରା ନଗଲେ ଆମର ଅଗ୍ରଗତି ବ୍ୟାହତ ହେବ । ଏହା କିମ୍ଭୂତକିମାକାର ହୋଇଯିବ । ଦିଅଁ ଗଢୁ ଗଢୁ ସମ୍ଭବତଃ ମାଙ୍କଡ଼ ଗଢ଼ିବା ଓ ଏହି ମାଙ୍କଡ଼ ଆମ ପ୍ରାଣ ନାଶ କରିବ ।

ସେ ଦୃଷ୍ଟିରୁ ବିଶ୍ୱର ଉନ୍ନତ ଦେଶମାନଙ୍କରେ ଉତ୍ପାଦନ ବୃଦ୍ଧି ସଙ୍ଗେ ସଙ୍ଗେ ମାନବିକ ସମ୍ବଳର ବିକାଶ ଉପରେ ଗୁରୁତ୍ୱ ଦିଆଯାଉଛି । ଦେଶର ସମୃଦ୍ଧି ଏହାର ଲୋକମାନଙ୍କ ଚରିତ୍ର ଉପରେ ନିର୍ଭରକରେ । ପୁଞ୍ଜିଲଗାଣ, କଞ୍ଚାମାଲ ଓ କାରିଗରି କୌଶଳ ସହିତ ଜାତୀୟ ଚରିତ୍ର ଏକତ୍ର ହେଲେ ଦେଶର ପ୍ରଗତି ସହଜ ଓ ସୁନିଶ୍ଚିତ ହେବ । ଆଜି ଶିଳ୍ପୋନ୍ନତ ଦେଶଗୁଡ଼ିକରେ ମାନବ ଜୀବନ ବିଦୀର୍ଣ୍ଣ, ବିଖଣ୍ଡିତ ଓ ବିଭକ୍ତ । ସମ୍ବଳର ପ୍ରାଚୁର୍ଯ୍ୟ ମଧ୍ୟରେ ସୁସମ୍ପର୍କ ଓ ସଦ୍‌ଭାବର ଅଭାବ ମନୁଷ୍ୟମନରେ ଘୋର ଅଶାନ୍ତି ସୃଷ୍ଟି କରିଛି । ଶିଳ୍ପାୟନ ସହିତ ସବୁଦିଗରୁ ମାନବଜୀବନର ମାନ ଓ ଶୈଳୀ ଉନ୍ନତ କରିବା ଆମ ଯୋଜନାରେ ଅଗ୍ରାଧିକାର ପାଇବା ଉଚିତ । ଆମ ଯୋଜନା ଯଦି ଏକତରଫା ହୋଇଯିବ, ତେବେ ଏହାର ପରିଣତି ବିଷମୟ ହେବାର ଆଶଙ୍କା କରାଯାଏ ।

## ତ୍ୱରିତ ସାମାଜିକ ପରିବର୍ତ୍ତନ

ଏହାହିଁ ଆଧୁନିକ ସମାଜର ଲକ୍ଷଣ, ପକ୍ଷାନ୍ତରରେ ପୁରୁଣାକାଳିଆ ସମାଜରେ ପରିବର୍ତ୍ତନ ଧୀର ଓ ମନ୍ଥର । ଯେଉଁ ସମାଜରେ ପରିବର୍ତ୍ତନ ମନ୍ଥର ଗତିରେ ଚାଲିଥାଏ, ସେଠି ସ୍ଥିତିଶୀଳତା କୌଣସି କ୍ଷତି କରିପାରେ ନାହିଁ । ଏହା ମଧ୍ୟ ଆଶାକରାଯାଏ ଯେ ପରିବର୍ତ୍ତନର ଗତିଶୀଳତା କ୍ରମବର୍ଦ୍ଧିଷ୍ଣୁ ହେବା ଉଚିତ । ହଠାତ୍ ଯଦି ଗତିରୋଧ କରାଯାଏ ବା ସ୍ଥିତାବସ୍ଥାକୁ ଫେରିବାକୁ ପଡ଼େ ତେବେ ଗୋଟିଏ ଯାନର ଅବସ୍ଥା ଯାହା ହୁଏ, ସମାଜର ଅବସ୍ଥା ସେହିପରି ହେବାର ଆଶଙ୍କା ଅଛି ।

ତ୍ୱରିତ ସାମାଜିକ ପରିବର୍ତ୍ତନ ସଙ୍ଗେ ଲୋକମାନଙ୍କର ଆଶା ଓ ଆକାଂକ୍ଷା ବେଗର ମାତ୍ରା ଓ କଳେବର ଦୃଷ୍ଟିରୁ ବଢ଼ି ବଢ଼ି ଚାଲିଛି । ଦେଶର ସ୍ୱାଧୀନତା ସମୃଦ୍ଧୀକରଣର ଅରୁଣୋଦୟ ଥିଲା । ସେଦିନରୁ ଆଜିଯାଏଁ ଆକାଂକ୍ଷା ଓ ଅଭିଳାଷ କେତେ ବଢ଼ିଛି ଏହାର କଳ୍ପନା କରିହେବ ନାହିଁ । ଦେହବାଦୀ ସଂସ୍କୃତି ମଣିଷର ଆବେଗମୟ ଜୀବନକୁ ନିର୍ଜୀବ ବସ୍ତୁପ୍ରାୟ କରିଦିଏ । ବସ୍ତୁବାଦୀ ସଭ୍ୟତା ମଣିଷକୁ କେବଳ ଦୃଶ୍ୟମାନ ବସ୍ତୁ ସମ୍ପର୍କରେ କହିଥାଏ । ମାତ୍ର ଆମର ଅଦୃଶ୍ୟ ମନରାଜ୍ୟ ପରି ଆମର ଯେ ପ୍ରାଣସତ୍ତା ଅଛି, ଚୈତସତ୍ତା ବା ଆତ୍ମା ଅଛି, ଏକଥା ପୂର୍ବରୁ ବିଜ୍ଞାନ କହୁ ନଥିଲା । ମାତ୍ର ବିଂଶ ଶତାବ୍ଦୀରେ ଆଇନ୍‌ଷ୍ଟାଇନ୍ ହାଇଜେନବର୍ଗଙ୍କ ଠାରୁ ସାଂପ୍ରତିକ ସମୟର ବିଶିଷ୍ଟ ଚିକିତ୍ସକମାନେ ଦେହ ବାହାରେ ଅଧିକ ମହତ୍ତର ସତ୍ତା ଥିବା କଥା ସ୍ୱୀକାର କଲେଣି । ମଣିଷ ଅସୁସ୍ଥ ହେଲେ, ଡାକ୍ତରମାନେ ଆଉ ଦେହକୁ ନେଇ କେବଳ ଔଷଧ ଦେଉନାହାନ୍ତି, ମନ ଓ ଆତ୍ମାର କଥା ଏବେ ଉଠିଲାଣି । ବିଂଶ ଶତାବ୍ଦୀର ବିଜ୍ଞାନରେ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଦାନ ହେଲା 'ମନସ୍ତତ୍ତ୍ୱ, ବିଜ୍ଞାନ' । ସୁତରାଂ ବସ୍ତୁ ପଛରେ ଧାଉଁଥିବା ମଣିଷଟି ଜଡ଼ ପାଲଟିଯାଏ । ତା ଭିତରୁ ସମ୍ବେଦନା, ଦରଦ, ମଣିଷପଣିଆ ଉଭେଇଯାଏ । ବିଶ୍ୱରେ ଜୀବସତ୍ତା କହିବାକୁ ହେଲେ ମଣିଷ ଭିତରର ଆବେଗିକ ସତ୍ତାର ଅଧିକ ଆବଶ୍ୟକତା ରହିଛି ।

ଶିଳ୍ପାୟନ ଓ ତତ୍‌ସହାୟକ ନଦୀବନ୍ଧ, ବିଦ୍ୟୁତ୍‌କେନ୍ଦ୍ର ଆଦି ସାମାଜିକ ଜୀବନରେ ନୂତନ ଆକାଂକ୍ଷା ସୃଷ୍ଟିକରୁଛି ଓ ସେସବୁର ବୃଦ୍ଧିମାତ୍ରାକୁ କ୍ଷିପ୍ରତର କରୁଛି । ଏସବୁକୁ ଆଧୁନିକ ଯୁଗର ଦେବାଳୟ ରୂପେ ଚିତ୍ରିତ କରାଯାଏ । ବସ୍ତୁତଃ ପୁରାତନ କାଳରେ ଦେବାଳୟ-ଗୁଡ଼ିକ ମନସ୍କାମନା ପୂର୍ଣ୍ଣ କରିବାର ପୁଣ୍ୟପୀଠ ଥିଲା ଓ ଆଜିକାଲି ଏହିସବୁ ଆଧୁନିକ ଦେବାଳୟ କାମନା ଓ ବାସନାର ସୃଷ୍ଟି ମନମଧ୍ୟରେ କରୁଛି । ଭୋଗବିଳାସର କଳ୍ପନା

ଜାଗ୍ରତ କରୁଛି । ଏସବୁ ହେଉଛି ଦେହବାଦୀ ସଂସ୍କୃତି ଓ ପୁଞ୍ଜିପତିଙ୍କର ଚକ୍ରାନ୍ତ । ଆଧୁନିକତା ନାମରେ ପ୍ରଚାରକରି ନିଜର ଉତ୍ପାଦନକୁ ବିକ୍ରୟ କରିବା । ସେପରି ସ୍ଥଳରେ ଦୁଇଟି ବିଚାର ମନକୁ ଆସେ । ପ୍ରଥମଟି ହେଉଛି ଜୀବନ ସମସ୍ୟାର ସମାଧାନ ତୁରନ୍ତ ହେବା ଉଚିତ । ସରକାରୀ ନୀତି ନିର୍ଦ୍ଧାରଣ ବର୍ଷବର୍ଷ ଧରି ଅପେକ୍ଷା ନକରି ସମୟ ଉପଯୋଗୀ ହେବା ଦରକାର । ସାନ ସାନ କଥାର ନିଷ୍ପତ୍ତି ସ୍ଥାନୀୟ ଭିତ୍ତିରେ କରାଯିବା ଉଚିତ । ରାଜନୈତିକ ହସ୍ତକ୍ଷେପ ବା ହିଂସାର ପ୍ରୟୋଗରେ ନିଷ୍ପତ୍ତି ହୋଇପାରିବ—ଏକଥା ଲୋପ ପାଇବା ଦରକାର । ଲୋକଙ୍କ ଆପତ୍ତି ଓ ଅଭିଯୋଗ ଶୁଣି ପ୍ରତିକାର କରିବା ପାଇଁ ପ୍ରଶାସନ ବ୍ୟବସ୍ଥା ତତ୍ପର ରହିବା ଆବଶ୍ୟକ । ୧୯୪୭ ମସିହାଠାରୁ ଏପର୍ଯ୍ୟନ୍ତ ବହୁ ସଂସ୍କାରର ପରୀକ୍ଷା କରାଯାଇଥିଲେ ହେଁ ଲୋକସାଧାରଣଙ୍କ ପାଇଁ 'କାଲ ଆଗରେ ମୂଳା ଚୋବାଇବା' ପରି ପ୍ରଶାସନ ଅବୋଧ୍ୟ ହୋଇ ରହିଛି । ଏଥିପାଇଁ ଇଂରାଜୀ ଭାଷା, ଅଭିଜାତ୍ୟପୂର୍ଣ୍ଣ ମନୋଭାବ ଜଟିଳ ବ୍ୟବସ୍ଥା ଆଦି ଦାୟୀ ହୋଇପାରେ । କିନ୍ତୁ ପ୍ରଶାସନରେ ଶ୍ରମିକ, କୃଷକ୍, ଶିକ୍ଷକ, ଜନସାଧାରଣ ପ୍ରଭୃତିଙ୍କ ଅଂଶ ଗ୍ରହଣ ଯଥାସ୍ଥାନରେ ଏକାନ୍ତ ଆବଶ୍ୟକ । ସରକାରୀ, ଅର୍ଦ୍ଧସରକାରୀ ବା ବେସରକାରୀ ସ୍ତରରେ ନିଷ୍ପତ୍ତିମୂଳକ ବ୍ୟବସ୍ଥା ତୁରନ୍ତ ସାଧିତ ହେବା ଉଚିତ । ଯୋଜନା ରଚନାରେ ଜନଜୀବନର ସ୍ପନ୍ଦନ ପ୍ରତିଫଳିତ ହେବା ଉଚିତ । ଚିନ୍ତାଧାରାରେ ଆଧୁନିକତା ଆସିବା ଦରକାର । ଆଧୁନିକତାର ଅର୍ଥ କୋଠାବାଡ଼ି, କଳକାରଖାନା, ଗାଡ଼ି ମଟର ନୁହେଁ ଚିନ୍ତାଧାରାରେ ମଣିଷ ଆଧୁନିକ ହେବା ଦରକାର । 'ଶୃଣ୍ୱନ୍ତୁ ସର୍ବେ ଅମୃତସ୍ୟ ପୁତ୍ରା...' କହୁଥିବା ଉପନିଷଦୀୟ ଋଷିମାନେ ଅଧିକ ଆଧୁନିକ ଥିଲେ, ନା ମଣିଷଙ୍କୁ ମାରିବା ପାଇଁ ମାରଣାସ୍ତ୍ର ତିଆରି କରୁଥିବା ବୈଜ୍ଞାନିକ ଅଧିକ ଆଧୁନିକ ? ଆଧୁନିକତାର ଅର୍ଥ ନୁହେଁ ଚମତ୍କାରିତା; ମ୍ୟାଜିକ୍ ବି ଚମତ୍କାରିତା ଦେଖାଏ । ମାତ୍ର ଦୀର୍ଘକାଳୀନ ଭିତ୍ତିରେ ଏକ ସୁସ୍ଥ, ସୁଦୃଢ଼, ସୁନ୍ଦର ପୃଥିବୀ ସୃଷ୍ଟି କରିବା ଏବଂ ସମସ୍ତେ ଶାନ୍ତି, ସଂହତିର ସହ ବଞ୍ଚିବାହିଁ ଆଧୁନିକତା ।

ଦ୍ୱିତୀୟ ବିଚାର ହେଉଛି ଗଣତାନ୍ତ୍ରୀକରଣ । ଆଧୁନିକୀକରଣ ଓ ଗଣତାନ୍ତ୍ରୀକରଣ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱପରି । ସ୍ୱାଧ୍ୟାୟ, ସ୍ୱାଭିମାନ ଓ ଆତ୍ମଚିନ୍ତନ ପାଇଁ ସୁଯୋଗ ଦେବା ଉଚିତ । ତଦ୍ୱାରା କୌତୂହଳ ବୃଦ୍ଧିପାଇବ, ପ୍ରତ୍ୟେକ ବିଷୟରେ ବୈଜ୍ଞାନିକ ମନୋଭାବ ପ୍ରକାଶ ପାଇବା ଦରକାର । ସ୍ୱାଧୀନ ଚିନ୍ତା, ବସ୍ତୁନିଷ୍ଠ ବିଚାର ଓ ଉନ୍ମୁକ୍ତମନ ପାଇଁ ପ୍ରସ୍ତୁତ କରିବାକୁ ହେବ । ବ୍ୟକ୍ତିପ୍ରତି ସମ୍ମାନ ରହିବ । ଶାସନ, ଶିକ୍ଷା ସମସ୍ତ ନିଷ୍ପତ୍ତିକାରୀ ସଂସ୍ଥାରେ ଏସବୁ ସଦ୍‌ଗୁଣ ପ୍ରତିଫଳିତ ହେବା ଦରକାର ।

## ଦ୍ରୁତ ଅଗ୍ରଗତିର ଆବଶ୍ୟକତା

ଆଧୁନିକୀକରଣର ସଫଳତା ପାଇଁ ଦ୍ରୁତ ଅଗ୍ରଗତି ଆବଶ୍ୟକ ହୁଏ । ଥରେ ଆଧୁନିକୀକରଣ ଆରମ୍ଭ ହୋଇଗଲେ ବା ସେଥିପାଇଁ ଅନୁକୂଳ ଆୟୋଜନ କରାଗଲେ ଆଉ ପଛେଇବାର ନୁହେଁ । ମଝାମଝି ନାହିଁ କିମ୍ବା ବିଶ୍ରାମ ନାହିଁ । ସବୁବେଳେ ଆଗେଇବାକୁ ପଡ଼ିବ । ଏହା ହୋଇପାରେ ଆମକୁ ସାମାଜିକ, ସାଂସ୍କୃତିକ ଓ ରାଜନୈତିକ କ୍ଷେତ୍ରରେ ଅପ୍ରତ୍ୟାଶିତ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିବ । ଆମକୁ କଠିନ ପରିଶ୍ରମ ସହ ବିଶେଷଭାବରେ ବାସ୍ତବବାଦୀ ଓ ବସ୍ତୁନିଷ୍ଠ ହେବାକୁ ପଡ଼ିବ । ଆମକୁ ଫୁଲମାଳ ମିଳିବ, ଏ ଅପେକ୍ଷା ରଖାଯିବ ନାହିଁ । ଲୋକଙ୍କ ପିଣ୍ଡା, ଗଛମୂଳ ଓ ରାସ୍ତାଘାଟ ଆମ ଅଗ୍ରଗତି ପାଇଁ ଚେତନା, ଚିନ୍ତା ଓ କର୍ମର ପୀଠସ୍ଥଳୀ ହେବ । ସମସ୍ୟାକୁ ଯଦି ଆମେ ଖଣ୍ଡିତ ବିକୃତ ଓ ବିଚ୍ୟୁତ କରି ଦେଖୁଁ ବା ଟଳଟଳ ପାଦ ପକାଉ, ଆମେ ସ୍ଥିର ଲକ୍ଷ୍ୟରେ ପହଞ୍ଚିପାରିବା ନାହିଁ । ଗୋଟିଏ ନୂତନ ସ୍ଥିତାବସ୍ଥା ଲାଭ କରିବାପାଇଁ ଆମେ ଅଗ୍ରଗତି କରି ଚାଲିବା ।

## ଆଧୁନିକୀକରଣ ଓ ଶିକ୍ଷାର ପ୍ରସାର

ବସ୍ତୁତଃ ଆଧୁନିକୀକରଣର ଅର୍ଥ ହେଉଛି ଶିକ୍ଷାର ପ୍ରସାର ଓ ଶିକ୍ଷା ସଙ୍ଗେ ଏହାର ସମ୍ପର୍କ ସ୍ଥାପନ । ଶିକ୍ଷାର ପ୍ରସାର କରାଯାଇ କୌଶଳୀ ଓ ସୁଶିକ୍ଷିତ ନାଗରିକ ସୃଷ୍ଟି କରିବା ଏକାନ୍ତ ଆବଶ୍ୟକ । ଶିକ୍ଷା କାର୍ମାଭିମୁଖୀ ହେବ । ପରିବର୍ତ୍ତନର କୌଶଳ ଓ ପରିବର୍ତ୍ତନ ପାଇଁ ଅନୁକୂଳ ମନୋଭାବ ସୃଷ୍ଟି କରାଯିବ । ଏହା ବର୍ତ୍ତମାନ ଏକମୁହାଁ ହୋଇଛି, ଏହାକୁ ବହୁମୁଖୀ କରାଯିବ । ସମାଜର ସବୁ ଶ୍ରେଣୀର ଲୋକ ସମାନଭାବରେ ଉପକୃତ ହେବେ । ସାମାଜିକ ପୁନର୍ଗଠନର ଆହ୍ୱାନର ସମ୍ମୁଖୀନ ହେବାପାଇଁ ଶିକ୍ଷା ଦିଆଯିବ । କର୍ମାଭିମୁଖୀ ଶିକ୍ଷା ସହିତ ଆବଶ୍ୟକ ସ୍ତରରେ ବୈଷୟିକ ଶିକ୍ଷା ଓ ଶିକ୍ଷାର ବୈଷୟିକୀକରଣ ଉପରେ ଗୁରୁତ୍ୱ ଦିଆଯିବ । କର୍ମଦକ୍ଷତାର ସ୍ତର ଯେପରି କ୍ରମୋନ୍ନତ ହେବ ସେଥିପ୍ରତି ନଜର ରହିବ । ମାନବିକ ଶକ୍ତିର ଯୋଜନା ସହିତ ଶିକ୍ଷାକୁ ଜଡ଼ିତ କରାଯିବ । ଏହାହେବ ସମସ୍ତ ବ୍ୟକ୍ତିତ୍ୱର ସାକ୍ଷରତା ଓ ସେଥିପାଇଁ ଧ୍ୟାନ ରହିବ । ଶିକ୍ଷା ମୂଲ୍ୟବୋଧଭିତ୍ତିକ ହେବା ଦରକାର— ପ୍ରମାଣପତ୍ର ସର୍ବସ୍ୱ ନୁହେଁ ।

## ମାନିବିକ ମୂଲ୍ୟବୋଧ ହେବ ଆଧୁନିକୀକରଣର ଉତ୍ସ

ଆଧୁନିକୀକରଣ ବାନରୀକରଣରେ ପରିଣତ ହେବ୍ ଯଦି ଆମେ ଅନ୍ଧଭାବରେ ଅନ୍ୟାନ୍ୟ ଦେଶର ବିଜ୍ଞାନ ପ୍ରୟୋଗକୁ ଅନୁକରଣ କରିଚାଲିବା । ସେଥିପାଇଁ ସମାଜତତ୍ତ୍ୱବିତ୍‌ମାନେ ସତର୍କ କରିଦେଇଛନ୍ତି ଯେ ପ୍ରତ୍ୟେକ ଦେଶର ଇତିହାସ ଓ ବିଶ୍ୱାସ,

ସମସ୍ୟା ଓ ସାହସ ତଥା ଅଭାବ ଓ ସଦ୍‌ଭାବକୁ ସମ୍ବଳକରି ବିଜ୍ଞାନର ପ୍ରୟୋଗ କରାଯିବ । ଏହା ହେବ ଏପ୍ରୋପ୍ରିଏଟ ଟେକ୍‌ନୋଲଜି । ବିଜ୍ଞାନ ଏକ ହେଲେ ହେଁ ଟେକ୍‌ନୋଲୋଜି ଏକାଧିକ ଭାବରେ ରୂପାୟିତ ହେବ । ବିଜ୍ଞାନରୂପକ ଦର୍ପଣରେ ପ୍ରତ୍ୟେକ ବ୍ୟକ୍ତିର ପ୍ରତିବିମ୍ବ ସ୍ୱଚ୍ଛଭାବରେ ପ୍ରତିଭାତ ହେବ । ତାହାହିଁ ହେବ ବ୍ୟକ୍ତିର ସ୍ୱାଭିମାନ । ଆମ ସମୃଦ୍ଧୀକରଣ ଯୋଜନା ଆମ ଐତିହ୍ୟ ଓ ଚିରନ୍ତନ ମୂଲ୍ୟବୋଧ ଦ୍ୱାରା ରଞ୍ଜିତ ହେବ ।

ଆମର ବିଭିନ୍ନ ଯୋଜନାର ତ୍ରୁଟି ସତ୍ତ୍ୱେ ସଫଳତା ରହିଛି । ଅଭାବ, ଅନଟନ ଓ ଦୈନ୍ୟ ସଙ୍ଗେ ଜାତୀୟ ଆୟ ବଢ଼ୁଛି ଓ ବଢ଼ାଇବା ପାଇଁ ଯୋଜନା ଚାଲିଛି । ଯାହାଙ୍କ ପାଖରେ ସ୍ୱଚ୍ଛଳତା ଅଛି, ସେମାନେ ସେମାନଙ୍କ ବିତ୍ତର ବ୍ୟୟ କିପରି କରୁଛନ୍ତି ? ସେମାନଙ୍କର କେଉଁ ଦୃଷ୍ଟିକୋଣ ରହିଛି ? 'ଧନ ଅର୍ଜିଲେ ଧର୍ମକରି'—ଏହି ବିଚାର ସେମାନଙ୍କର ଅଛି କି ? 'ତେନ ତ୍ୟକ୍ତେନ ଭୁଞ୍ଜିଥା'—ଏହି ପ୍ରେରଣା ସେମାନଙ୍କୁ ପ୍ରେରିତ କରେ କି ? 'ମା ଗୃଧା କସ୍ୟ ଚିଦ୍ ଧନଂ'— ପରିବର୍ତ୍ତେ ଧନବଳରେ ଧନାଢ଼୍ୟ ହୋଇ ଅନ୍ୟର ଧନ ଅପହରଣ କରିବାରେ ଲାଗିଛନ୍ତି । ଅଧିକାଂଶ ସ୍ଥଳରେ ଧନଭୋଗ ଆମକୁ ଦେହସର୍ବସ୍ୱ କରିଦେଇଛି । ଲୋଭରୁ ପାପ ଓ ସେଥିରୁ ମୃତ୍ୟୁ ଆମ ପାଇଁ ଶ୍ରେୟ ଶେଷରେ ହେବ । ଧନୀ ହିଁ ଅଧିକ ବିତ୍ତଶାଳୀ ହେଉଛି ଏବଂ ଦରିଦ୍ର ଅଧିକ ନିଃସ୍ୱ । ପ୍ରତିଦିନ ପୃଥିବୀରେ ହଜାର ହଜାର ଲୋକ ଭୋକ ଓ ବ୍ୟାଧିରେ ମରୁଛନ୍ତି । ଏହା କେଉଁ ପ୍ରକାର ଅଗ୍ରଗତି ଓ ସମୃଦ୍ଧିର ଲକ୍ଷଣ ? ଯେଉଁ ବିଜ୍ଞାନ ମଣିଷକୁ କ୍ଷୁଧାରୁ ମୁକ୍ତ କରିପାରେ ନାହିଁ, ବିଳାସ ଓ ଦେହଭିତ୍ତିକ ସଂସ୍କୃତି ଶିଖାଏ, ସେ ବିଜ୍ଞାନର ସମାଜ ସହିତ ସଂପର୍କ କେତେଦୂର ?

ଏହା ହେଉଛି ଗୋଟିଏ ଦିଗ, ଶିଳ୍ପାୟନ, ଉଦ୍ୟୋଗୀକରଣ ଆଦି ମାଧ୍ୟମରେ ଆଧୁନିକୀକରଣ କରାଗଲେ ପ୍ରଶ୍ନ ହେବ— ଆମେ କାହାକୁ ବାଛିବା ? ଆମ ଆଗରେ ଦ୍ରବ୍ୟର ସମ୍ଭାର । କାହା ସପକ୍ଷରେ ଆମେ ଯିବା ? ଏସବୁ ଦ୍ରବ୍ୟ କ'ଣ ଚଳନ୍ତି ପିଢ଼ିର ଭୋଗ ପାଇଁ ଉଦ୍ଦିଷ୍ଟ ? ଏ ପୃଥିବୀ କୋଟି କୋଟି ବର୍ଷ ତଳୁ ଆରମ୍ଭ ହୋଇଛି । ଏବଂ ମଣିଷ ସହିତ ପଶୁ, ପକ୍ଷୀ, କୀଟପତଙ୍ଗ ସମସ୍ତଙ୍କର ଏ ପୃଥିବୀରେ ସମାନ ଅଧିକାର ରହିଛି । ମହୁମାଛି, ରେଶମ କୀଟଠାରୁ ପଶୁ ଓ ପକ୍ଷୀଜଗତ ମଣିଷର ବହୁବିଧ କଲ୍ୟାଣ ସାଧନ କରିଥାଆନ୍ତି । ମଣିଷ ନିଜର ସ୍ଥିତିସହ ସାମଗ୍ରିକ ଜୀବଜଗତର ସ୍ଥିତି ଅଙ୍ଗାଙ୍ଗୀଭାବେ ଜଡ଼ିତ । ବୃକ୍ଷ ଓ ପ୍ରାଣୀଜଗତ ମଣିଷର ଅଶେଷ ଉପକାର କରିଥାଆନ୍ତି । ମଣିଷ କିନ୍ତୁ ଭାବୁଛି ସେ ନିଜେ ହିଁ ବଞ୍ଚିବ । ଏପରିକି ସେ ନିଜର ପରବର୍ତ୍ତୀ ପିଢ଼ିର ଦାୟାଦମାନଙ୍କ କଥା ଭାବିପାରୁ ନାହିଁ । ପ୍ରାକୃତିକ ସଂପଦ, ଖଣିଜସଂପଦ ଭଳି ପଦାର୍ଥର ସମସ୍ତ ଉପଯୋଗ

ଚଳନ୍ତି ପିଢ଼ିର ମଣିଷମାନେ କରିଯିବେ ଏବଂ ଆଗାମୀ ପିଢ଼ି ପାଇଁ କିଛି ରହିବ ନାହିଁ ? ପୃଥିବୀ କ'ଣ ଏଇ ପିଢ଼ିର ମଣିଷମାନଙ୍କ ଜୀବନ ପାଇଁ ସୃଷ୍ଟି ହୋଇଛି ଏବଂ ଏଇଠାରେ ଶେଷ ହୋଇଯିବ ? ଏଇ ପ୍ରଶ୍ନ ଉପରେ ନିର୍ଭରକରେ ଆମର ଆଧୁନିକତାର ବିକାଶ ଧାରାର, ପ୍ରଯୁକ୍ତି ବିଦ୍ୟାର ପରିପ୍ରୟୋଗର ପ୍ରଶ୍ନ । ମୂଲ୍ୟବୋଧଭିତ୍ତିକ ଏକ ସମାଜ ନା ଦେହସର୍ବସ୍ୱ, ଭୋଗବାଦୀ ଏକ ସମାଜ ଆମେ ଚାହୁଁ—ତାହା ପ୍ରଥମେ ନିର୍ଣ୍ଣିତ ହୋଇଯିବା ଦରକାର । ବିଭିନ୍ନତା ମଧ୍ୟରେ ଏକତା ଅନୁଭବ କରିବାକୁ ପଡ଼ିବ । ଦାରିଦ୍ର୍ୟ ସୀମାରେଖାତଳେ ଥିବା ଓ ସମାଜର ସବାତଳେ ପଡ଼ିଥିବା ଲୋକମାନଙ୍କ ଉନ୍ନତି-ପାଇଁ ଅର୍ଥର ବ୍ୟବସ୍ଥା ହେଉଛି । ଏହାକୁ ମୁଷ୍ଟିମେୟ କ୍ଷମତାଧାରୀ ଲୋକ ତୋଷରପାତ କରିଦେବେ କି ?

କୃଷିକୁ ବିଜ୍ଞାନଭିତ୍ତିକ କରିବା ଦ୍ୱାରା ଆମେ ଗୋଟିଏ କିଆରିରେ ଏକ ସମୟରେ ବିଭିନ୍ନ ଚାଷକରି ପାରିବା । କେଉଁ ଚାଷ ଆମେ ସ୍ଥିର କରିବା ? ଶିଳ୍ପାୟନ ଦ୍ୱାରା କେଉଁ ଦ୍ରବ୍ୟର ଉତ୍ପାଦନ ପାଇଁ ଆମେ ଅଗ୍ରାଧିକାର ଦେବା ? ଔଷଧକୁ ଭେଜାଲ୍‌କରି ଜୀବନକୁ ସାରିଦେବା କି ? ଏସବୁ କ୍ଷେତ୍ରରେ ଆମ ଆଧ୍ୟାତ୍ମିକ ଓ ନୈତିକ ମୂଲ୍ୟବୋଧ ଆମର ଧ୍ରୁବତାରା ହେବ । ଯେଉଁ ଦେଶର କବି ସ୍ୱଦେଶପ୍ରେମୀ, ସଂସ୍କାରକ ଓ ସାଧାରଣ ଲୋକ—

*'ମୋ ଜୀବନ ପଛେ ନର୍କେ ପଡ଼ିଥାଉ*
*ଜଗତ ଉଦ୍ଧାର ହେଉ'—*

ବାଣୀକୁ ଜୀବନରେ ପାଳିଗଲେ, ସେ ଦେଶରେ ଅହଂକାର, ମିଥ୍ୟା, ଶଠତା, ଡକାଏତି, ଅନ୍ୟାୟ , ଅତ୍ୟାଚାର ଓ ଅନାଚାର ଆମ ଜୀବନର ଧ୍ୟେୟ ହେବ କି ? ବିଜ୍ଞାନ ସହିତ ଆମେ ଆତ୍ମଜ୍ଞାନକୁ ଜଡ଼ିତ କରିବା । ଆଜି ନୁହେଁ, କେତେବର୍ଷ ପୂର୍ବରୁ ସ୍ୱାମୀ ବିବେକାନନ୍ଦ, ଗାନ୍ଧୀ, ବିନୋବା, ରବୀନ୍ଦ୍ରନାଥ ପ୍ରଭୃତି ପ୍ରାଚ୍ୟ ଗୁରୁଗଣ ପାଶ୍ଚାତ୍ୟ ଦେଶର ବିଜ୍ଞାନକୁ ଆବାହନ କରି ଦେଶରୁ ଦାରିଦ୍ର୍ୟ ଦୂରକରିବା ପାଇଁ ଯୁକ୍ତି କରିଛନ୍ତି । କିନ୍ତୁ ଏ ଦେଶର ସଂସ୍କୃତି ଓ ମୂଲ୍ୟବୋଧକୁ ପରିହାର କରି ସେମାନଙ୍କୁ ଏହା କରିବାକୁ ଇଚ୍ଛାକରି ନାହାନ୍ତି ।

ଶିଳ୍ପାୟନ ପ୍ରଭୃତି ସମୃଦ୍ଧୀକରଣ କାର୍ଯ୍ୟକ୍ରମର ପଛରେ ସାଂସ୍କୃତିକ ଚେତନା ଉତ୍ସରୂପେ ରହିବା ଉଚିତ । ଭାଗବତଟୁଙ୍ଗୀରେ ଆଗ କାଳରେ ଦୀପଟିଏ ଜଳୁଥିଲା । ଏବେ ଆମେ ବିଜୁଳି ଆଲୁଅ ଜାଳିପାରୁ । ମାଇକ୍ ସାହାଯ୍ୟରେ ଭଜନପାଠ କରାଯାଉ । କିନ୍ତୁ

ଭାଗବତର ବାଣୀ, ଭଜନ ଆଦି ଆମ ଜୀବନର ନିୟାମକ ହେଉ । ଆମ ଯୋଜନା ଏଥିରେ ଶାଣିତ ହେବା ଉଚିତ । ଉଦ୍ୟୋଗୀକରଣର ସବୁ ବିଭାଗ, ବ୍ୟବସ୍ଥା ଓ ସଂସ୍ଥା ଏହି ଆଭିମୁଖ୍ୟ ଦ୍ୱାରା ପରିଚାଳିତ ହେବା ଉଚିତ । ଦ୍ରବ୍ୟର ଉତ୍ପାଦକ ହେଉଛି ମନୁଷ୍ୟ ଓ ସେ ମଧ ଦ୍ରବ୍ୟର ବିନିଯୋଗ କରେ । ତେଣୁ ସେ ସମୃଦ୍ଧ ହେବ । ତାକୁ ବିଜ୍ଞାପନ ଓ ଯନ୍ତ୍ରର ଆୟୁଧକଲେ ଚଳିବ ନାହିଁ ।

*ସର୍ବେ ଭବନ୍ତୁ ସୁଖିନଃ*
*ସର୍ବେ ସନ୍ତୁ ନିରାମୟା*
*ସର୍ବେ ଭଦ୍ରାଣୀ ପଶ୍ୟନ୍ତୁ*
*ମା କଶ୍ଚିଦ୍, ଦୁଃଖ ଭାଗ ଭବେଦ୍ ।*
*ଓଁ ଶାନ୍ତିଃ, ଶାନ୍ତିଃ, ଶାନ୍ତିଃ ।*



# ନାରୀ ନର ସମାନତା–
# ଆଭିମୁଖ୍ୟ ଓ ଆହ୍ୱାନ

ଶିକ୍ଷାନୀତି ୧୯୮୬ ହେଉଛି ଆମ ଜାତୀୟ ଘୋଷଣା, ସର୍ବପ୍ରଥମ ଶିକ୍ଷାନୀତି । ବିଜ୍ଞାନ ସମ୍ମତ ଓ ଆମ ଗୌରବାବହ ପରମ୍ପରା ପ୍ରତିଷ୍ଠିତ ତଥା ସମତା ଭିତ୍ତିରେ ସମାଜ ଗଠନ ପାଇଁ ଶିକ୍ଷାକୁ ଏକ ଆୟୁଧ ରୂପେ ସେଥିରେ ପରିକଳ୍ପନା କରାଯାଇଛି । ତେଣୁ ସମସ୍ତ ଶିକ୍ଷାର ଆଧାରଭୂମି ଭାବରେ ଅନ୍ୟାନ୍ୟ ବ୍ୟବସ୍ଥା ସମେତ ମୂଲ୍ୟବୋଧର ଶିକ୍ଷାକୁ ଗ୍ରହଣ କରାଯାଇଛି । ଦଶଗୋଟି ମୌଳିକ ମୂଲ୍ୟବୋଧ ମଧ୍ୟରୁ 'ନାରୀ-ନର ସମାନତା' ହେଉଛି ଅନ୍ୟତମ । ଏହା ଅତୀତର ଗୌରବାବହ ହେଲେ ହେଁ ସାମ୍ପ୍ରତିକ ସ୍ଥିତିଦୃଷ୍ଟିରୁ ଏକାନ୍ତ ଆବଶ୍ୟକ । ତେଣୁ ଅନ୍ୟସବୁ ମୂଲ୍ୟବୋଧ ପରି ଏହା ଆଧୁନିକ, ବୈଜ୍ଞାନିକ ଏବଂ ବିବେକାନୁମୋଦିତ ଅଟେ । ଅନ୍ୟ ନଅଗୋଟି ମୂଲ୍ୟବୋଧ ହେଉଛି—ଜାତୀୟ ସଂହତି, ପରିବେଶ ସୁରକ୍ଷା, କ୍ଷୁଦ୍ର ପରିବାର ଆଦର୍ଶ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ସାମାଜିକ ମତାନ୍ଧତା ଦୂରୀକରଣ, ଧର୍ମନିରପେକ୍ଷବାଦ ଓ ଧର୍ମ ସମ୍ବନ୍ଧୀୟ ସହନଶୀଳତା, ଗଣତନ୍ତ୍ର ଓ ସମାଜବାଦ, ଭାରତର ସାଂସ୍କୃତିକ ଐତିହ୍ୟ ଓ ରାଷ୍ଟ୍ରୀୟ ଐକ୍ୟ ।

ଅଧିକନ୍ତୁ ଏହା ଲକ୍ଷ୍ୟ କରିବାର କଥା ସାର୍କ (SAARC) ଦେଶଗୁଡ଼ିକ ନିଜ ନିଜ ଦେଶର ନାରୀମାନଙ୍କ ପ୍ରତି ଅନ୍ୟାୟ, ଅତ୍ୟାଚାର ଓ ଅବହେଳାଜନିତ ସମସ୍ୟାଦ୍ୱାରା ଏପରି ଜର୍ଜରିତ ଯେ ସେମାନଙ୍କ ସାମଗ୍ରିକ ବିକାଶ ଆଶାନୁରୂପ ହୋଇପାରୁ ନାହିଁ । ତେଣୁ ସାର୍କ ସମ୍ମିଳନୀର ନିଷ୍ପତ୍ତି ଅନୁସାରେ ୧୯୯୦ ମସିହାକୁ ଶିଶୁକନ୍ୟା ସମ୍ବତ୍ସର ଭାବରେ ପାଳନ କରାଯାଇଛି । ସେତିକି ନୁହେଁ, ବିଂଶ ଶତାବ୍ଦୀର ଏହି ଶେଷ ଦଶନ୍ଧିରେ ନାରୀମାନଙ୍କ ମର୍ଯ୍ୟାଦା ବୃଦ୍ଧିପାଇଁ ବିଭିନ୍ନ କାର୍ଯ୍ୟକ୍ରମ ହାତକୁ ନେବାଲାଗି ସାର୍କ ଗୋଷ୍ଠୀ ସ୍ଥିର କରିଛନ୍ତି । ଆନ୍ତର୍ଜାତିକ ମହିଳା ସମ୍ବତ୍ସର ୧୯୭୫ ସାଲରେ ପାଳନ କରାଯାଇଥିଲା । ପ୍ରତିବର୍ଷ ମାର୍ଚ୍ଚ

ଆଠରେ ଆନ୍ତର୍ଜାତିକ ମହିଳା ଦିବସ ପାଳନ କରାଯାଉଛି । ବିଭିନ୍ନ ଦେଶରେ ବିଶ୍ୱ ଅକ୍ଷମ ଦିବସ ଓ ମାନସିକ ଅନଗ୍ରସର ଶିଶୁଦିବସ ମଧ ଯଥାରୀତି ପାଳିତ ହେଉଅଛି । ଏହି ଦୁଇ ଦିବସର ଅଙ୍ଗୀଭୂତ ବାଳକ ଓ ବାଳିକା ହୋଇଥିଲେ ହେଁ ଅକ୍ଷମତା, ଅନଗ୍ରସରତା ଓ ଦୁର୍ବଳତା ପରମ୍ପରା କ୍ରମେ ସାଧାରଣତଃ ବାଳିକା ଓ ମହିଳାମାନଙ୍କ ସହିତ ସଂଶ୍ଳିଷ୍ଟ ହୋଇଥିବାରୁ ନାରୀମାନେ ଏହାଦ୍ୱାରା ଉପକୃତ ହୁଅନ୍ତି । ଅଧୁନା ମହିଳା ଓ ବାଳକବାଳିକା-ମାନଙ୍କ ଉନ୍ନତିକଳ୍ପେ ବହୁବିଧ ପ୍ରସ୍ତାବ କାର୍ଯ୍ୟକାରୀ କରାଯାଉଛି ।

ଏହି ପରିପ୍ରେକ୍ଷୀରେ କହିବାକୁ ଗଲେ ଏହାଦ୍ୱାରା ବହୁବିଧ ଆଭିମୁଖ୍ୟ ସାଧିତ ହୁଏ । ନିଶ୍ଚିତ ଭାବରେ ସମାଜ ଅଧିକରୁ ଅଧିକ ସଚେତନ ହୁଏ । ଶାସନ ଓ ସମାଜ ସ୍ତରରେ ନାନା କଲ୍ୟାଣମୂଳକ କାର୍ଯ୍ୟକ୍ରମ ହାତକୁ ନିଆଯାଏ ଓ ଅର୍ଥାଦିର ବ୍ୟବସ୍ଥା ରହେ । କନ୍ୟାମାନଙ୍କ ଲାଳନପାଳନ ଓ ମହିଳାମାନଙ୍କ ନ୍ୟାଯ୍ୟ ଅଧିକାର ସାବ୍ୟସ୍ତ କରିବା ଦିଗରେ ଯେଉଁସବୁ ଦୋଷତ୍ରୁଟି ଓ ଅନ୍ତରାୟ ରହିଛି, ସେସବୁର ଅନୁଧ୍ୟାନ ଓ ଆଲୋଚନା କରାଯାଇ ମାର୍ଜିତ ଓ ପରିବର୍ତ୍ତିତ କର୍ମପନ୍ଥା ନିର୍ଦ୍ଦିଷ୍ଟ କରାଯାଇଥାଏ । ସାଧାରଣ ବିଚାର ଓ ବିତର୍କ କରିବା ଦ୍ୱାରା ନାରୀମାନେ ସାବଧାନ ଓ ଅଧିକାର ସଚେତନ ହୁଅନ୍ତି । ଏ ଦିଗରେ ଅନୁକୂଳ ବାତାବରଣ ଓ ଜନମତ ସୃଷ୍ଟି କରାଯାଏ । କାର୍ଯ୍ୟକାରୀ ସଂସ୍ଥା ଓ ସଂଗଠନ ଗଢ଼ିଉଠେ । ନାରୀମାନଙ୍କ ସମସ୍ୟାର ଅଧ୍ୟୟନକୁ ଶିକ୍ଷା ଓ ଗବେଷଣାର ଅଙ୍ଗୀଭୂତ କରାଯାଏ ।

ଏହିସବୁ ରାଷ୍ଟ୍ରୀୟ ଓ ବିଶ୍ୱସ୍ତରୀୟ ପ୍ରତିଶ୍ରୁତିରୁ ନାରୀମାନଙ୍କ ସମସ୍ୟାର ଉତ୍କଟତା ଓ ଜଟିଳତା ଅନୁମେୟ ହୁଏ । ବିଶେଷରେ ରାଷ୍ଟ୍ର ଓ ବିଶ୍ୱସ୍ତରରେ ସମସ୍ତଙ୍କ ପାଇଁ ବିକାଶ ତଥା ଅଭିବୃଦ୍ଧି ସୁନିଶ୍ଚିତ କରିବା ଆଜି ଅନିବାର୍ଯ୍ୟ ହୋଇଥିବା ବେଳେ ନାରୀସମାଜକୁ କିପରି ଉପେକ୍ଷା କରାଯାଇପାରେ ? ଏଠି ଆମ ମହାନ୍ ମାନବିକ ପରମ୍ପରା ବିଚାର୍ଯ୍ୟ । ଋଷିକନ୍ୟାମାନେ ପବିତ୍ର ଓ ମୁକ୍ତ ଆଶ୍ରମଜୀବନ ଯାପନ କରୁଥିବାର ଜଣାଯାଏ । ବୈଦିକ ଦର୍ଶନ ଓ ସଂସ୍କୃତି ଜ୍ଞାନ ଭକ୍ତି ଓ କର୍ମର ସମନ୍ୱିତ ଅଧିକାର ସେମାନଙ୍କ ଜୀବନଧାରାକୁ ଶ୍ରୀମଣ୍ଡିତ କରିଥିଲା । ପୁରୁଷ ଓ ନାରୀ ମଧ୍ୟରେ ପାର୍ଥକ୍ୟ ନଥିଲା । ଅଥର୍ବ ବେଦରୁ ଜଣାଯାଏ—

*'ବ୍ରହ୍ମଚର୍ଯ୍ୟେଣ କନ୍ୟା ଯୁବାନାଂ ବନ୍ଦତେ ପତିଂ'*

ଅର୍ଥାତ୍ ବ୍ରହ୍ମଚର୍ଯ୍ୟାଶ୍ରମରେ କନ୍ୟା ସ୍ୱୀୟ ପତିଙ୍କୁ ନିର୍ବାଚନ କରନ୍ତି । ନିର୍ବାଚନରେ ଅଧିକାର କେବଳ କନ୍ୟାର, ପୁତ୍ରର ନୁହେଁ । ପୁରାଣ ଯୁଗର ସ୍ୱୟମ୍ବର ଓ ଅନୁଷ୍ଠାନ ଏହାର ଜ୍ୱଳନ୍ତ

ଉଦାହରଣ । ଯଜ୍ଞୋପବୀତ ଧାରଣ ଉଭୟ ପତି ଓ ପତ୍ନୀ କରୁଥିଲେ । ଯଜ୍ଞାନୁଷ୍ଠାନ କେବଳ ପୁରୁଷଦ୍ୱାରା ସମ୍ଭବନୁହେଁ, ଦମ୍ପତିଙ୍କ ଉପସ୍ଥିତି ଆବଶ୍ୟକ । ବ୍ରହ୍ମବାଦିନୀ ନାରୀ ସ୍ୱଗୃହରେ ଅଗ୍ନିହୋମ, ବେଦାଧୟନ ଓ ଭିକ୍ଷା ଅର୍ଜନ କରୁଥିଲେ । ଏହା ବେଦାନ୍ତର ବିଷୟ ଯେ ଯାଜ୍ଞବଳ୍କ୍ୟଙ୍କ ସମୀପରେ ମୈତ୍ରୀ ଓ ଗାର୍ଗୀ ବ୍ରହ୍ମବିଦ୍ୟା ସମ୍ବନ୍ଧରେ ଆଲୋଚନା କରୁଥିଲେ—

*'ସର୍ବଂ ଖଳ୍ୱିଦଂ ବ୍ରହ୍ମ'*

ଉପନିଷଦରେ ପ୍ରତିପାଦ୍ୟ ହୋଇଥିବାରୁ ନାରୀ ଓ ନର ମଧ୍ୟରେ କୌଣସି ପାର୍ଥକ୍ୟ ନଥିଲା । ଉଭୟ ପୁତ୍ର ଓ କନ୍ୟାଙ୍କ ବର୍ଗୀକରଣ ପିତାଙ୍କ କୁଳ ଅନୁସାରେ କରାନଯାଇ ଗୁଣ, କର୍ମ ଓ ସ୍ୱଭାବ ଦ୍ୱାରା ନିର୍ଣ୍ଣିତ ହେଉଥିଲା । ଏହି ଉଦାର ଦୃଷ୍ଟିକୋଣ ମନୁସ୍ମୃତିରେ ପରିଲକ୍ଷିତ ହୁଏ । ଯଥା—

*'ଯତ୍ର ନାରୀସ୍ତୁ ପୂଜ୍ୟନ୍ତେ, ରମନ୍ତେ ତତ୍ର ଦେବତାଃ...'*

ଅଥଚ ଯେଉଁଠି ଏସବୁ କରାଯାଏ ନାହିଁ, ସେଠି ସମସ୍ତ କାର୍ଯ୍ୟ ପଣ୍ଡ ହୋଇଯାଏ । ଏପରିକି ବୁଦ୍ଧ ସଂଘରେ ମହିଳାମାନେ ସ୍ଥାନ ପାଇଥିଲେ । ପତିତା ଆମ୍ରପଲୀ ବୁଦ୍ଧଙ୍କ ଶରଣାଗତ ହେବାରୁ ଭିକ୍ଷା ଦେବାର ଅଧିକାର ଲାଭ କରିଥିଲେ ।

ଆମେ ସମସ୍ତେ ବିଶ୍ୱବକ୍ଷରେ ଅମୃତର ସନ୍ତାନ । (ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ) ସେଥିରେ ଧନ, ମାନ, ଯଶ, ଗୌରବ, ଲିଙ୍ଗ, ଜ୍ଞାନର ଭେଦ ନାହିଁ । ଅରଣ୍ୟାନି ପରିବେଷ୍ଟିତ ଗିରୁଗୁହାର ଏହି ଶବ୍ଦାୟିତ ଧ୍ୱନିକୁ ଆଜିର ବିଚାର ଦୃଷ୍ଟିରେ କଳନା କରିହୁଏ ନାହିଁ ଏବଂ ଆଧୁନିକ ଜ୍ଞାନ ବିଜ୍ଞାନ ସତ୍ତ୍ୱେ ଆଜି ଆମେ ଏହାକୁ ଆଚରଣୀୟ କରିପାରୁ ନାହାନ୍ତି । ସେ କର୍ପୂର ଉଡ଼ିଯାଇଛି ଓ ଆମେ ଅଧୋଗତିର ଅନ୍ଧକାର ଭିତରେ ଆଖିଖୋଲି ଦେଖିପାରୁ ନାହାନ୍ତି । ଇତିହାସର ମଧ୍ୟଯୁଗଟି ସମଗ୍ର ବିଶ୍ୱପାଇଁ ତଥା ଆମପାଇଁ ଅନ୍ଧକାର ହୋଇ ପଡ଼ିଛି । ଆତ୍ମବିଦ୍ୟା ସାଧନାର ଗ୍ଲାନି ଘଟିଛି ।'ତେନ ତ୍ୟକ୍ତେନ ଭୁଞ୍ଜୀଥା'ରୁ ତଳକୁ ଖସିଯାଇ ଭୋଗସର୍ବସ୍ୱତା ଓ ଆତ୍ମକୈନ୍ଦ୍ରିକତା ଆମକୁ ଅତିମାତ୍ରାରେ ଗ୍ରାସ କରିପକାଇଛି । ଏହା ଫଳରେ ସମାଜ ପୁରୁଷପ୍ରଧାନ ହୋଇ ନାରୀକୁ ଏକ ଭୌତିକ ବିଭବ ଏବଂ ଭୋଗ୍ୟବସ୍ତୁ ରୂପେ ଗ୍ରହଣ କରିଛି । ସେଥିପାଇଁ ସେ ପରିବାରରେ କାରାରୁଦ୍ଧ । ସେ 'ଅସୂର୍ଯ୍ୟମ୍ପଶ୍ୟା' ବୋଲି ବିବେଚିତ ହୁଅନ୍ତି । ତେଣୁ ନାରୀଶିକ୍ଷା ବ୍ୟବସ୍ଥାର ପରିସମାପ୍ତି ଘଟେ । ପୁନଶ୍ଚ କୁହାଯାଏ—'ସ୍ତ୍ରୀ ଶୂଦ୍ରୌ ନାଧୀୟତାଂ' । ଅଷ୍ଟମ ଶତାବ୍ଦୀବେଳକୁ

ଇସ୍‌ଲାମୀୟ ସଂସ୍କୃତି ସମ୍ପର୍କରେ ଆସିବାଦ୍ୱାରା ପର୍ଦ୍ଦାପଦ୍ଧତି ଓ ନାରୀକୁ ସମ୍ପତ୍ତି ବିବେଚନାରେ ସୁରକ୍ଷିତ କରିବାର ପ୍ରଥା ଅଧିକ ଦୃଢ଼ ଓ ଆଦରଣୀୟ ହୁଏ । ପାରିବାରିକ ନିଷ୍ପତ୍ତି ଓ ନିର୍ଣ୍ଣୟରେ ନାରୀର ଅଂଶ ଗ୍ରହଣ ରହେନାହିଁ । ଏହା ସଙ୍ଗେ ସଙ୍ଗେ ସମାଜ କ୍ରମେ ସାମନ୍ତବାଦୀ ହୋଇ ନାରୀକୁ ଶୋଷଣ, ବୈଷମ୍ୟ ଓ ଅଧୋଗତିର ଶରବ୍ୟ କରି ପକାଇଛି । କନ୍ୟା, ଜାୟା, ଭଗିନୀ, ଜନନୀ ହେଉଛି ବୟସ ଓ ଅବସ୍ଥାନୁସାରେ ନାରୀପ୍ରତି ସ୍ନେହସିକ୍ତ ଓ ଆଦରସୂଚକ ସମ୍ବୋଧନ । ଆଶା ଓ ସମ୍ଭାବନାର ତୂଳୀ ଓ ଲେଖନୀରେ ଚିତ୍ରିତ । କିନ୍ତୁ ପୁରୁଷ ନିର୍ଭରଶୀଳତା ଯୋଗୁଁ ନାରୀର ଦୁର୍ବହ ଜୀବନ ସର୍ବସାଧାରଣରେ ସୁପରିଚିତ । ଅର୍ଥନୈତିକ କ୍ଷମତା, ଶିକ୍ଷା ଓ ଶକ୍ତିରୁ ବଞ୍ଚିତ ନାରୀ ସାମନ୍ତବାଦୀ ସମାଜରେ ଦୀନ, ହୀନ ହୁଏ, ଯଦିଓ ବିଦ୍ୟାପାଇଁ ସରସ୍ୱତୀ, ଧନପାଇଁ ଲକ୍ଷ୍ମୀ ଓ଼ ଶକ୍ତିପାଇଁ ଦୁର୍ଗା ପୂଜିତ ହେବାର ପରମ୍ପରା ଦିନେଥିଲା ଏବଂ ଆଜି ତୁଣ୍ଡବାଇଦ ଭାବରେ ରହିଛି । ନାରୀମାନଙ୍କର ଦୟନୀୟ ଓ ଅବହେଳିତ ଅବସ୍ଥାର ଆଭାସ ମେଘାସ୍ଥିନିସ୍‌ଙ୍କ ବିବରଣୀରୁ ଜଣାଯାଏ । ସେ ଲେଖିଛନ୍ତି ଯେ ଏହି ସମୟରେ ବ୍ରାହ୍ମଣମାନେ ମଧ ସେମାନଙ୍କ ପତ୍ନୀଙ୍କୁ ସେମାନଙ୍କ ଶାସ୍ତ୍ରୀୟ ଜ୍ଞାନ ଜଣାଉ ନଥିଲେ ।

ବ୍ୟକ୍ତିର ଧର୍ମପତ୍ନୀ ତାର ଅର୍ଦ୍ଧାଙ୍ଗିନୀ ଓ ସହଧର୍ମିଣୀ । ଦେଶ ହେଉ ବା ବିଶ୍ୱ ହେଉ ଜନସଂଖ୍ୟାର ହାରାହାରି ଅର୍ଦ୍ଧେକ ହେଉଛନ୍ତି ନାରୀ । ସମସ୍ତଙ୍କ ପାଇଁ ସର୍ବାଧିକ ଓ ସର୍ବୋତ୍ତମ ବିକାଶ ସାଧନକରି ବିକାଶର ପ୍ରକ୍ରିୟାକୁ ନିରନ୍ତର ଅବ୍ୟାହତ ରଖିବା ପାଇଁ ସାମନ୍ତବାଦ ଅପାଙ୍‌କ୍ତେୟ, ଅଯୌକ୍ତିକ ଏବଂ ଅବାଞ୍ଛିତ ପ୍ରମାଣ ହୁଏ । ପତି ଓ ପତ୍ନୀ, ତଥା ପୁରୁଷ ଓ ନାରୀ ମଧ୍ୟରେ ସମ୍ପର୍କ ପରିପୂରକ ହେବା ଏହି ଯୁଗପାଇଁ ଅତ୍ୟାବଶ୍ୟକ, ଅନିବାର୍ଯ୍ୟ ଓ ଆଧୁନିକ ବୋଲି ନିଶ୍ଚିତ ହୁଏ । ସାମନ୍ତବାଦର ଅବସାନ ଓ ଏହି ନୂତନଯୁଗର ଆବାହନ ପାଇଁ ବିଶ୍ୱର ସର୍ବତ୍ର ଗୁଞ୍ଜରଣ ଓ ପ୍ରତିବାଦ ଯଥାସମୟରେ ପ୍ରକାଶ ପାଇଛି, ବିଭିନ୍ନ ରାଷ୍ଟ୍ରରେ ଆନ୍ଦୋଳନ କରାଯାଇଛି । ବ୍ୟକ୍ତିବିଶେଷ ଓ ବିଭିନ୍ନ ସଂଗଠନ ଏହି ଆନ୍ଦୋଳନରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଛନ୍ତି । ବିଭିନ୍ନ ସ୍ତରରେ ବିପ୍ଳବର ନିଆଁ ଜଳି ଉଠିଛି । ଏସବୁ ମଧ୍ୟରେ ଶିଳ୍ପ ବିପ୍ଳବ ଅନ୍ୟତମ । ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀ ବେଳକୁ ସାମନ୍ତବାଦୀ ଏକଛତ୍ରବାଦ ଲୋକଲୋଚନରୁ ଅପସରି ଗଲା । ଇତିହାସର ରଙ୍ଗମଞ୍ଚକୁ ଅଧିକାର କରେ ପୁଞ୍ଜିବାଦୀ ବିକାଶ, ଏହା କିନ୍ତୁ ସମ୍ଭବ ନୁହେଁ ଶ୍ରମିକ ଶ୍ରେଣୀର ବିନା ସହାୟତାରେ । ଶିଳ୍ପ ବିପ୍ଳବ ଫଳରେ ମନୁଷ୍ୟକୁ ଅବସର ମିଳେ ଏବଂ ସେ ଏହି ଅବସରକୁ କଳା, ବିଜ୍ଞାନ, ଓ ସାହିତ୍ୟ ଚର୍ଚ୍ଚାରେ ଅତିବାହିତ କରେ । ଶ୍ରମିକମାନଙ୍କ

ନିର୍ଯାତନା ସେବେଳର ମୁଖ୍ୟ ଚିନ୍ତାର ବିଷୟ ହୋଇଥିଲା । ନାରୀ ଶ୍ରମିକମାନେ ଓ ଅଳ୍ପବୟସର ବାଳଶ୍ରମିକମାନେ ସ୍ୱଳ୍ପ ଅର୍ଥ ପାଇଁ ଅତ୍ୟଧିକ ପରିଶ୍ରମ କରୁଥିଲେ । ଏଥିପାଇଁ ଏକ ଯୁଗାନ୍ତକାରୀ ପଦକ୍ଷେପ ଓ ଚିନ୍ତାଭାବରେ ଶ୍ରମିକ ସଂଗଠନ ଗଠନ କରାଯାଇ ଶ୍ରମମଙ୍ଗଳର ଆବଶ୍ୟକତା ଆସେ । ବିଶ୍ୱ ଇତିହାସରେ ଅନ୍ୟ ଏକ କାଳଜୟୀ ଘଟଣା ହେଉଛି ଫରାସୀ ବିପ୍ଳବ । ରାଜତନ୍ତ୍ରର ବିଲୟ ଓ ପ୍ରଜାତନ୍ତ୍ରର ଅଭ୍ୟୁଦୟ ହେଉଛି ଏହି ବିପ୍ଳବର ପରିଣତି । ମାନବ ସମାଜକୁ ମିଳେ ସ୍ୱାଧୀନତା, ସମାନତା ଓ ଭ୍ରାତୃତ୍ୱ । ନାରୀ ଓ ଶ୍ରମିକଶ୍ରେଣୀ ବିଶେଷଭାବରେ ବଞ୍ଚିତ ହେଉଥିଲେ ଓ ସେମାନେ ସୁବିଧା ସୁଯୋଗ ନପାଇ ନିର୍ଯାତିତ ଓ ନିଷ୍ପେଷିତ ହେଉଥିଲେ । ଫରାସୀ ବିପ୍ଳବ ଏହି ଶ୍ରେଣୀର ସମସ୍ୟାକୁ ଲୋକଲୋଚନକୁ ଆଣି ଗଣତାନ୍ତ୍ରିକ ସମାଜର ଗଠନ ପାଇଁ ଆନ୍ଦୋଳନର ସୂତ୍ରପାତ କଲା । କୌଣସି ପ୍ରକାର ଭେଦ, ବିଭବ, ପଦ, ପାର୍ଥକ୍ୟ ନିର୍ବିଶେଷରେ ବ୍ୟକ୍ତିଜୀବନର ମାନବିକ ମର୍ଯ୍ୟାଦା ଏବଂ ଦେବୋପମ ଗୌରବର ପ୍ରତିଷ୍ଠା କରାଯାଏ ।

ପାଶ୍ଚାତ୍ୟ ଜଗତରେ ହୋଇଥିବା ଏହିସବୁ ବିପ୍ଳବର ସାମାଜିକ, ଅର୍ଥନୈତିକ ଓ ଆଧାତ୍ମିକ ପ୍ରଭାବରୁ ଭାରତ ଭୂଖଣ୍ଡ କେବେହେଁ ମୁକ୍ତ ହୋଇନାହିଁ । ପକ୍ଷାନ୍ତରରେ ସର୍ବଜୀବର ଏକାତ୍ମତା, ସମତା, ମମତା, ସହନଶୀଳତା, ସହଯୋଗିତା ଆଦି ସଦ୍‌ଗୁଣ ଗୁଡ଼ିକ ପୁନଃପ୍ରକାଶ ପାଇଁ ଭାରତୀୟ ଅନ୍ତରାତ୍ମାକୁ ଆନ୍ଦୋଳିତ କରୁଥାଏ । ଅତଏବ ଏହି ଦୁଇଧାରା ଯୁଗପତ୍ ପ୍ରଭାବିତ କରେ ତତ୍‌କାଳୀନ ମନୀଷୀମାନଙ୍କୁ । ଏହି ପୁନର୍ଜାଗରଣର କର୍ଣ୍ଣଧାର ଭାବରେ ଆବିର୍ଭୂତ ହୁଅନ୍ତି ରାଜା ରାମମୋହନ ରାୟ । (୧୭୭୨-୧୮୩୩) ଉପନିଷଦର ଏକେଶ୍ୱରବାଦ ଆଧାରିତ ବ୍ରାହ୍ମଧର୍ମ ପାଶ୍ଚାତ୍ୟ ଭଙ୍ଗୀରେ ସେ ଉପସ୍ଥାପନ କରନ୍ତି ବ୍ରାହ୍ମସମାଜ ମାଧମରେ । ନାରୀଶିକ୍ଷା, ସତୀଦାହ ପ୍ରଥାର ବିଲୋପ ଆଦି ଅନେକ ସଂସ୍କାରମୂଳକ କାର୍ଯ୍ୟକ୍ରମ ପାଇଁ ସେହିଁ ସ୍ୱର ଉତ୍ତୋଳନ କରନ୍ତି । ବାଲ୍ୟବିବାହ ଓ ବହୁବିବାହ ପ୍ରଥା ବନ୍ଦକରିବା ଓ ବିଧବା ବିବାହ ପ୍ରଥା ଚଳାଇବାକୁ ଦୃଷ୍ଟି ଦିଆଯାଇଥିଲା । ସ୍ୱାମୀ ଦୟାନନ୍ଦ ସରସ୍ୱତୀ ବୈଦିକ ସତ୍ୟ ଓ ଧର୍ମଜ୍ଞାନର ପୁନଃପ୍ରଚାର କରି ଜାତି-ବର୍ଣ୍ଣ ନର-ନାରୀ ନିର୍ବିଶେଷରେ ସମସ୍ତଙ୍କ ପାଇଁ ଉନ୍ମୁକ୍ତ କରିଥିଲେ । ଏ ଦିଗରେ ନାରୀମାନଙ୍କ ଶିକ୍ଷା ଓ ଧର୍ମାଧିକାରକୁ ସ୍ୱୀକୃତି ଦେଇ ଆର୍ଯ୍ୟ ସମାଜ ସେ ପ୍ରତିଷ୍ଠାକଲେ । ଏଥିରେ ମୂର୍ତ୍ତିପୂଜାର ସ୍ଥାନ ରହିଲାନାହିଁ । ଈଶ୍ୱରଚନ୍ଦ୍ର ବିଦ୍ୟାସାଗର (୧୮୨୦-୧୮୯୧) ବିଧବା ବିବାହକୁ ପ୍ରଚଳନ କରିଥିଲେ । ବାଳିକାମାନଙ୍କ ଶିକ୍ଷାପାଇଁ ୧୮୫୭ ମଧରେ ବିଦ୍ୟାଳୟ ବସାଇଥିଲେ । ଧର୍ମ ଓ ସମାଜର ସଂସ୍କାର କରି ଜାତିଭେଦ ପ୍ରଥା ଓ ମୂର୍ତ୍ତିପୂଜାର ଉଚ୍ଛେଦ

ଏବଂ ନାରୀଶିକ୍ଷାର ପ୍ରସାର ପାଇଁ ବହୁ ସଂଗଠନ ଓ ବ୍ୟକ୍ତିବିଶେଷଙ୍କ କାର୍ଯ୍ୟ ଉଲ୍ଲେଖନୀୟ । ଡ୍ରିଙ୍କ ୱାଟର ବେଥୁନ୍ ୧୮୪୯ରେ କଲିକତାଠାରେ ପ୍ରଥମ ମହିଳା ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ମିଶନାରୀମାନଙ୍କ ଭୂମିକା ମଧ୍ୟ ଉଲ୍ଲେଖଯୋଗ୍ୟ ।

ଏହି କ୍ରମରେ ବିଶ୍ଳେଷଣ କଲେ ଆମେ ନିଶ୍ଚିତ ହେବା ଯେ ନାରୀ ଜୀବନର ଉନ୍ନତି ଓ ମର୍ଯ୍ୟାଦା ଦିଗରେ ଆମ ପରିସର ଓ ପ୍ରଚେଷ୍ଟା ବଢ଼ିବାରେ ଲାଗିଛି । ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ସ୍ୱାଧୀନତା ସଂଗ୍ରାମ ଏକ ଜନ ଆନ୍ଦୋଳନରେ ପରିଣତ ହୋଇଛି । ଆମ ଦେଶର ସୁମହାନ୍ ପରମ୍ପରାର ସୁରକ୍ଷା ଓ ବିକାଶ ପାଇଁ ସଂଗ୍ରାମୀମାନେ ବଦ୍ଧପରିକର ଥିଲେ । ସେମାନେ ଅବଶ୍ୟ ପାଶ୍ଚାତ୍ୟ ଜଗତର ବିଭିନ୍ନ ସ୍ୱାଧୀନତା ଆନ୍ଦୋଳନ ଓ ବିପ୍ଳବ ଦ୍ୱାରା ପ୍ରଭାବିତ ହୋଇଥିଲେ । କିଛି ରଣକୌଶଳର ଉଦ୍ଭବ, ପ୍ରକାଶ ଓ ପ୍ରୟୋଗ ସେହି ମହାନ୍ ପରମ୍ପରା ଅନୁସାରେ ନିର୍ମାଣ କରାଯାଇଥିଲା । ସେମାନେ ଜାତୀୟବାଦୀ ହେବା ସଙ୍ଗେ ସଙ୍ଗେ ଭାରତୀୟ ସମାଜକୁ କୁସଂସ୍କାର ଓ ଅନ୍ଧବିଶ୍ୱାସରୁ ମୁକ୍ତକରି ପୁନଃନିର୍ମାଣ ପାଇଁ ଧ୍ୟାନ ଦେଇଥିଲେ । ତେଣୁ ଆମ ଜାତୀୟ ସଂଗ୍ରାମ ହେଉଛି ସତ୍ୟ, ନ୍ୟାୟ ଓ ଅହିଂସା ଆଧାରିତ ଏକ ଜନ ଆନ୍ଦୋଳନ । ଜନ ଅସନ୍ତୋଷ ଓ ଜନ ଜୀବନର ଉଚ୍ଛ୍ୱାସ ଏଥିରେ ପ୍ରତିଫଳିତ । ବିଭିନ୍ନ ଅଞ୍ଚଳ, ଭାଷା, ଧର୍ମ ଓ ଶ୍ରେଣୀର ଆବାଳବୃଦ୍ଧବନିତାଙ୍କ ଧ୍ୱନି ସମାହାର ସଂଗୀତ । ସେତିକି ନୁହେଁ, ଆମ ଅନନ୍ୟ ଗର୍ବ ଏହି ଯେ ସ୍ୱାଧୀନତା ସଂଗ୍ରାମର ପ୍ରଥମ ଅଗ୍ନିଶିଖା ଜାଳି ଦେଇଛନ୍ତି ଜଣେ ଇତିହାସର ଧନ୍ୟାନାରୀ ଓ ସେ ହେଉଚନ୍ତି ଝାନ୍ସୀର ରାଣୀ ଲକ୍ଷ୍ମୀବାଈ । ଏହି ପରମ୍ପରାର ଅନୁସରଣରେ ବହୁ ନାରୀ ଚରମ ତ୍ୟାଗ ଓ ଜୀବନ ଜଳାଞ୍ଜଳିର ଜ୍ୱଳନ୍ତ ଦୃଷ୍ଟାନ୍ତ ହୋଇ ରହିଛନ୍ତି । ପୁରୁଷ ସଂଗ୍ରାମୀମାନଙ୍କ ସହିତ ପଛଘୁଞ୍ଚା ଦେଇ ନାହାନ୍ତି, ସମକକ୍ଷ ହୋଇଛନ୍ତି । କାରାବରଣ, କଷଣ, ନିର୍ଯାତନା ଓ ଜୀବନଦାନ ଆମ ବହୁ ଉଚ୍ଚାରିତ ଅବଳାମାନଙ୍କୁ ଇତିହାସର ପୃଷ୍ଠାରେ ବଜ୍ରରୁ କଠିନ ହୃଦୟର ମଣିଷ କରିଛି । 'କର ବା ମର'ର ଡାକରା ସେମାନଙ୍କୁ ନିଭୃତକୋଣରୁ ଟାଣି ଆଣି ପର୍ଦ୍ଦାଫିଙ୍ଗା କାରାରମଣୀ କରିଛି । ପତି ଓ ପତ୍ନୀ ଆହୁରି ମଧ୍ୟ ସପରିବାର ଜାତୀୟ ଆନ୍ଦୋଳନରେ ଯୋଗଦେବା ଆମ ଦେଶରେ ଅତି ସାଧାରଣ ହେଲେହେଁ ବିଶ୍ୱ ଇତିହାସରେ ବିରଳ । ମହାତ୍ମାଗାନ୍ଧୀ କହନ୍ତି—'ପୁରୁଷ ସର୍ବଦା ନିଜ ପତ୍ନୀଙ୍କୁ ପରମ ମିତ୍ରରୂପେ ଗ୍ରହଣ କରିବା ଉଚିତ ।' ଏ କଥା ସତ୍ୟ ଯେ ପୁରୁଷ ନାରୀର ରକ୍ଷାକର୍ତ୍ତା । ଏହାବୋଲି ସେ ନାରୀ ଉପରେ ନିଜ ମାଲିକାନା ଜାହିର କରିବା ଉଚିତ ନୁହେଁ । ପୁରୁଷ ଓ ନାରୀ ଦୁହେଁ ପରମ ମିତ୍ର, ପୁରୁଷ ନାରୀର ସାରା ଦେହକୁ ତଥା ଆତ୍ମାକୁ ପବିତ୍ର ମନେ କରିବା ଉଚିତ । ଅନୁରୂପ ଭାବରେ ନାରୀ ମଧ୍ୟ ପୁରୁଷକୁ ପବିତ୍ର ବୋଲି ଜ୍ଞାନ କରିବା ଦରକାର ।

## ସ୍ତିରୀ ବା ପୁରୁଷ, ତହିଁ ନାହିଁ ବଡ଼ସାନ

ଊନବିଂଶ ଶତାବ୍ଦୀର ପ୍ରଥମ ପାଦ ଓ ସ୍ୱାଧୀନତା ସଂଗ୍ରାମର ପ୍ରାକ୍‌କାଳରେ ଓଡ଼ିଶାରେ ଆରମ୍ଭହୁଏ ଏକ ଅଦ୍ଭୂତ ସାମାଜିକ ଆନ୍ଦୋଳନ । ସେଥିରେ ବିଶ୍ୱର ଯନ୍ତ୍ରଣା ଓ ସେଥିରୁ ଉଦ୍ଭୂତ ଅଗ୍ରଗାମୀ ଚିନ୍ତା ନିହିତ ହୋଇଛି ଏଥି ସହିତ ପ୍ରାଗ୍ ଐତିହାସିକ ଯୁଗର ଭାରତୀୟ ଉଦାତ୍ତ ଉପଲବ୍ଧି ଓ ମାନବିକ ଅଙ୍ଗୀକାର ସୁସ୍ପଷ୍ଟ । ପୁନଶ୍ଚ ଜାତିଭେଦ ପ୍ରଥା, ପୌତ୍ତଳିକତା, ପୁରୋହିତବାଦ, ଆତ୍ମକୈନ୍ଦ୍ରିକତା ଓ ଅବିଶ୍ୱାସ ଏହି ପଞ୍ଚଗ୍ରହକୁଟ ଯୋଗୁଁ ସମାଜ ଅବରୁଦ୍ଧ, ପଙ୍କିଳ ଏବଂ କଳଙ୍କିତ ହୋଇଯାଏ । ଏଥିରୁ ମୁକ୍ତ, ଗତିଶୀଳ, ଅନ୍ତର୍ମୁଖୀ ସମାଜର ଆବଶ୍ୟକତା ସାକାର ରୂପନିଏ । ଆପଣା ଭିତରେ ବିଭାଜିତ, ଏବଂ ଆତ୍ମୀୟ ତଥା 'ବସୁଧୈବ କୁଟୁମ୍ବକମ୍'ରୁ ବିଚ୍ଛିନ୍ନ ମନୁଷ୍ୟ ପ୍ରସ୍ତୁତ ହୁଏ ଆତ୍ମୋପଲବ୍ଧି ଓ ବିଶ୍ୱବ୍ୟାପକତାର ସ୍ୱାଦ ପାଇବାକୁ । ଉତ୍କଳର ଏହି ଆନ୍ଦୋଳନ ଅଭୂତପୂର୍ବ ଏବଂ ଭାରତୀୟ ଧର୍ମଧାରାରେ ଉତ୍କଳର ବୈଶିଷ୍ଟ୍ୟ । ଏହାର ପ୍ରବର୍ତ୍ତକ ମହିମା ସ୍ୱାମୀଙ୍କ କାରଣ ଖୋଜିବା ଏଯାବତ୍ ଅକାରଣ ହୋଇଛି । ଯେହେତୁ ସେ ସର୍ବକାରଣ କାରଣନିଧାନ ବୋଲି ବିବେଚିତ ହୁଅନ୍ତି । ତାଙ୍କର ଆଦିକବି ଜନ୍ମାନ୍ଧ, କନ୍ଧ ଭୀମ ଭୋଇ । ଏହି ଧର୍ମ ଆନ୍ଦୋଳନର ସୁଦୂରପ୍ରସାରୀ ପ୍ରଭାବକୁ ଏ ଯାଏଁ ମୂଲ୍ୟାୟନ କରାଯାଇନାହିଁ । ସମସ୍ତ ସୃଷ୍ଟି ଚରାଚର ଜଗତ ଏକ ଓ ଅଖଣ୍ଡ । ଏଥିରେ ବିଭାଜନ ନାହିଁ । ତେଣୁ ବିଭେଦ କାହିଁ ? ଫଳତଃ :

*'ଗୁରୁ ଦୁଆରକୁ ସର୍ବେ ଅଟନ୍ତି ସମାନ*
*ସ୍ତିରୀ ବା ପୁରୁଷ ତହିଁ ନାହିଁ ବଡ଼ ସାନ ।'*

ଯେହେତୁ—

*'ଦୁଇଚାପ ଦୁଇଜାତି ରଞ୍ଜିତ ସେ ଜାଣ,*
*ଏକ ବ୍ରହ୍ମରୁ ଦ୍ୱିତୀୟ ହୋଇଲେ ଜନମ ।'*

ପୁନଶ୍ଚ—

*'ଯେସନେକ ଜଳ ପବନର ହେବ ନାହିଁ,*
*ପୁରୁଷ ଯେତିକି ଯିବ ସ୍ତିରୀ ଯିବ ତହିଁ ।*

*ଯେସନେ ମାଟି ପଥର ସର୍ଜିଲା ଦଇବ,*
*ଏମାନଙ୍କୁ ଭିନ୍ନଭିନ୍ନ କରିବେ କହିବ ?*

*ଯେସନେକ କ୍ଷୁଧା ତୃଷାଛନ୍ତି ବେନି ମୂର୍ତ୍ତି,*
*ଏକା ପାଖୁଡ଼ା ଗୋଟିକ ହୃଦେ ଫୁଟିଛନ୍ତି ।'*

ଅତଏବ——

*ସେହି ରୂପେ ପତିପତ୍ନୀ ଏକ ବ୍ରହ୍ମେ ଜାତ,*
*ଭିନ୍ନାଭିନ୍ନ ଯେ କରିବ କୁଳ ଯିବ ହତ ।*

ବେଦାନ୍ତର ବ୍ରହ୍ମବିଦ୍ୟା ଦାଣ୍ଡରେ ପଡ଼ି ମିଳିଯାଏ ସମସ୍ତଙ୍କ ପାଇଁ । ମହିମାଙ୍କ ଅଜ୍ଞା ଅନ୍ଧକବିଙ୍କ ହୃଦୟରେ ପ୍ରତିଧ୍ୱନିତ ହୁଏ । ପରାମାତ୍ମାଙ୍କ ସୃଷ୍ଟିରେ ସମସ୍ତେ ସମାନ । ସ୍ମରଣ କରିବାର କଥା ଯେ ଷୋଡ଼ଶ ଶତାବ୍ଦୀରେ ଭକ୍ତକବି ଜଗନ୍ନାଥ ଦାସ ସଂସ୍କୃତ ଭାଗବତକୁ ଓଡ଼ିଆରେ ଭାଷାନ୍ତର କରି ସାମାଜିକ ଅବମାନନା ଓ ଅବଜ୍ଞା ଭୋଗିଥିଲେ । ସଂସ୍କୃତକୁ ଜନସାଧାରଣ ବୁଝିପାରୁ ନଥିଲେ । ନାରୀମାନଙ୍କ ପାଇଁ ଧର୍ମଶାସ୍ତ୍ର ଅଧ୍ୟୟନ ମନାଥିଲା । ଠିକ୍ ସେହିପରି ଊନବିଂଶ ଶତାବ୍ଦୀରେ ବିପ୍ଳବୀ ଭୀମଭୋଇ ନିର୍ଯାତିତ ଓ ଜନ୍ମସ୍ଥାନରୁ ବିତାଡ଼ିତ ହୋଇଛନ୍ତି । 'ଜାତି ଅଜାତି' 'ସାନ ବଡ଼', 'ଉଚ୍ଚ ନୀଚ', 'ଛୁଆଁ ଅଛୁଆଁ', 'ମୂର୍ଖ ପଣ୍ଡିତ' ଇତ୍ୟାଦି ତତ୍‌କାଳୀନ ଦୁଇ ଫାଳିଆ ବିଭେଦକୁ ବର୍ଜନକରି ଭୀମଭୋଇ ଡାକରା ଦେଇଛନ୍ତି :

*'ତିନି ବ୍ରହ୍ମାଣରେ ଲୋଡ଼ି ଆସ ତୁମ୍ଭେ ଏକଜଣ ଏକଜାତି'*

'ଅହଂ ବହ୍ମାସ୍ମି' ହେବାରେ ସମସ୍ତଙ୍କର ସମାନ ଅଧିକାର । ତତ୍‌କାଳୀନ ବିଶ୍ୱବିଦିତ ଦୁର୍ଭିକ୍ଷ ବେଳରେ ଶିଶୁ ଓ ନାରୀ ସହଜରେ ମୃତ୍ୟୁମୁଖରେ ପଡ଼ିଯାଉ ଥାଆନ୍ତି । 'ବାଲ୍ୟ ଲୀଳା' ଅନୁଷ୍ଠାନ ଶିଶୁ ଜୀବନରକ୍ଷାର ସର୍ବପ୍ରଥମ ଆନୁଷ୍ଠାନିକ ରୂପ ଓ ନାରୀମାନଙ୍କୁ ବ୍ରହ୍ମଜ୍ଞାନ ଭକ୍ତିରେ ଭାଗୀଦାର କରିବା, ଧର୍ମ ଦ୍ୱାର ସେମାନଙ୍କପାଇଁ ଉନ୍ମୁକ୍ତ କରିଦେବା ହେଉଛି ସର୍ବପ୍ରଥମ ସାମ୍ୱାଜିକ ବିପ୍ଳବ ।

ପାଶ୍ଚାତ୍ୟ ବିଜ୍ଞାନ, ଦର୍ଶନ, ସାହିତ୍ୟ ଓ ଇତିହାସର ପ୍ରଭାବରେ ଆମେ ନାରୀ-ନର ସମାନତାର ଧ୍ୱନିଦେଇ ନାରୀମାନଙ୍କ ଉନ୍ନତିକଳ୍ପେ ବହୁବିଧ କାର୍ଯ୍ୟାନୁଷ୍ଠାନ କରୁଛୁଁ । ପାରମ୍ପରିକ ପୁରୁଷପ୍ରଧାନ ସମାଜର ପରିବର୍ତ୍ତନରେ ଆମେ ଅଜ୍ଞାତସାରରେ ନାରୀପ୍ରଧାନ ହେବାର ସମ୍ଭବତଃ ଲକ୍ଷ୍ୟ ରଖିଛୁଁ । ସତ୍ୟାଶ୍ରୟୀ, ସତ୍ୟନିଷ୍ଠ ସମାଜ ଅଭିମୁଖୀ ପରିବର୍ତ୍ତନ ଦିଗରେ ନାରୀର ଭୂମିକା ଗୁରୁତ୍ୱପୂର୍ଣ୍ଣ । ନାରୀ ଓ ନର ବ୍ରହ୍ମତତ୍ତ୍ୱମୟ ହୋଇ ଧନଜନ ଶକ୍ତି ସାମର୍ଥ୍ୟ ଅର୍ଜ୍ଜନ କରିବେ । ଏଠାରେ ଆମେ ଶ୍ୱେତାଶ୍ୱେତର ଉପନିଷଦର ଦୁଇଟି ଶ୍ଳୋକ ଉଦ୍ଧାର କରିବା :

*'ତ୍ୱଂ ସ୍ତ୍ରୀ ତ୍ୱଂ ପୁମାନସି ତ୍ୱଂ କୁମାର ଉତବା କୁମାରୀ,*
*ତ୍ୱଂ ଜୀର୍ଣ୍ଣଦଣ୍ଡେନ ବଞ୍ଚସି ତ୍ୱଂ ଜାତୋ ଭବତି ବିଶ୍ୱତୋମୁଖଃ ।'*

ହେ ପରମାତ୍ମନ୍, ତୁମେ ସ୍ତ୍ରୀ, ତୁମେ ପୁରୁଷ, କୁମାର ଅଥବା କୁମାରୀ, ତୁମେ ବୃଦ୍ଧ (ସମଗ୍ର ଜଗତ ରୂପରେ) ଜାତ ହୋଇ ତୁମେ ବିଶ୍ୱବ୍ୟାପକ ।

ପୁନଶ୍ଚ—

*'ଏକୋ ଦେବଃ ସର୍ବଭୂତେଷୁ ଗୂଢ଼ଃ*
*ସର୍ବବ୍ୟାପୀ ସର୍ବଭୂତାନ୍ତରାତ୍ମା*

*କର୍ମାଧକ୍ଷଃ ସର୍ବଭୂତାଧିବାସଃ*
*ସାକ୍ଷୀଚେତା କେବଳୋ ନିର୍ଗୁଣଶ୍ଚ ।'*

ଅର୍ଥାତ୍ ଏକହିଁ ପରମେଶ୍ୱର ସର୍ବ ଜୀବମଧରେ ଗୂଢ଼ ହୋଇ ରହିଛନ୍ତି । ସେ ସର୍ବବ୍ୟାପକ, ସର୍ବଭୂତର ଅନ୍ତରାତ୍ମା, କର୍ମର ଅଧକ୍ଷ, ସମସ୍ତଙ୍କ ନିବାସସ୍ଥଳୀ, ସାକ୍ଷୀ, ଚୈତନ୍ୟସ୍ୱରୂପ କେବଳ ଓ ନିର୍ଗୁଣ ।

ସେ ଅଖଣ୍ଡ, ତେଣୁ ତାଙ୍କ ସୃଷ୍ଟି ଅଶେଷ ହେଲେ ହେଁ ସେ ଖଣ୍ଡିତ ନୁହେଁ । ସେ ସର୍ବାନୁସ୍ୟୂତ । ତେଣୁ ନାରୀ ଓ ନର ସମାନ । ସେ ଦୁହେଁ ଯଥାକ୍ରମେ ଏକପତି ଓ ଏକ-ପତ୍ନୀବ୍ରତ ଗ୍ରହଣ କରିବେ । ସେମାନେ ସକଳ କର୍ମପାଇଁ ଯୋଗ୍ୟ, ଯେହେତୁ ବ୍ରହ୍ମକର୍ମାଧକ୍ଷ ଅଟନ୍ତି । ଅତଏବ କୌଣସି କର୍ମୀ ବା କର୍ମ କେବେହେଲେ ନୀଚ, ହୀନ ନୁହେଁ । ଯଦି ସବୁ ଜ୍ଞାନ ଓ କର୍ମ ବ୍ରହ୍ମ ସମର୍ପିତ, ଅର୍ଥାତ୍ ବିଶ୍ୱକଲ୍ୟାଣ ପାଇଁ କରାଯାଏ । ସମର୍ପଣ ହିଁ ଆମକୁ ମହାନ୍ କରେ । 'ପରଦାରେଶୁ ମାତୃବତ୍, ପରଦ୍ରବ୍ୟେଶୁ ଲୋଷ୍ଟ୍ରବତ୍ ।' ଏହା ଶାସ୍ତ୍ରବାଣୀ, ଶାସ୍ତ୍ରସ୍ଥ ହୋଇଛି । କିନ୍ତୁ ମହିମାଧର୍ମ ଏହାକୁ ଆଚରଣସର୍ବସ୍ୱ କରିଛି । ବ୍ରହ୍ମ ସ୍ୱୟଂ ତାତମାତ, ଓ ତାଙ୍କଠାରୁ ଜାତ ପୁରୁଷ ଓ ନାରୀ ଯଥାକ୍ରମେ ତାତ ଓ ମାତ । ଚୋରି ଓ ପରଦାରା କାୟମନୋବାକ୍ୟରେ ନିଷିଦ୍ଧ । ୧୮୬୩ ମସିହାରେ ଆମେରିକାର ରାଷ୍ଟ୍ରପତି ଆବ୍ରାହମ୍ ଲିଙ୍କନ୍ ତାଙ୍କ ଦେଶରୁ ଦାସତ୍ୱ ପ୍ରଥା ଉଚ୍ଛେଦ କରି ଦାସମାନଙ୍କର ତ୍ରାଣକର୍ତ୍ତା ହେଲେ । ତେଣୁ ସେ ଚିରସ୍ମରଣୀୟ । ସେତିକିବେଳେ ବିଶ୍ୱର ଏହି ଭୂଖଣ୍ଡ ଉତ୍କଳରେ ମହିମାସ୍ୱାମୀ ଆବିର୍ଭୂତ ହୋଇ ମାନବସମାଜକୁ—'ଏକ ଜଣ, ଏକ ଜାତି' କଲେ । ତେଣୁ ସେ ଯଥାର୍ଥତଃ ଭକ୍ତଙ୍କ ଦୃଷ୍ଟିରେ ଜୀବସୃଷ୍ଟିର କର୍ତ୍ତା, ତ୍ରାତା ଓ ପିତା ।

## ଚିନ୍ତା, ଚିନ୍ତନ ଓ ଚରିତ୍ର ନିର୍ମାଣ

ସର୍ବାଧିକାର ଭିତ୍ତିରେ ଶିକ୍ଷାର ପ୍ରସାର ଉତ୍ସର୍ଗୀକୃତ ରୀତିରେ କରାଯିବା ଉଚିତ । ଏ ଦିଗରେ ଶିକ୍ଷିତ ପୁରୁଷ ଓ ନାରୀ ଓ ସ୍ୱେଚ୍ଛାସେବୀ ସଂଗଠନ ବିଶେଷକରି ନାରୀ ସଂଗଠନ ଆପ୍ରାଣ ଉଦ୍ୟମନିଷ୍ଠ ହେବେ । ନାରୀ ଜୀବନର ସଫଳ କାହାଣୀ ଓ ଦୃଷ୍ଟାନ୍ତ ନାରୀମାନଙ୍କୁ ଅନୁପ୍ରେରିତ ଓ ପ୍ରଭାବିତ କରିପାରିବେ । ଏଥିରେ ଅସମ୍ଭବ କିଛି ଅଛି କି ? କିନ୍ତୁ ଶିକ୍ଷାର ବିଚାର, ବିଷୟ ଓ ଉପସ୍ଥାପନ କିପରି ହେବା ଉଚିତ ? ଆଧୁନିକତାର ଆଳରେ ଆମ ଅତୀତର ଐତିହ୍ୟକୁ ଭୁଲିଯିବା କି ? ଜୀବନଯାପନର କଳା, କୌଶଳ ଓ ଭିତ୍ତିଭୂମି ପ୍ରତି ସବୁସ୍ତରର ଶିକ୍ଷା ଉଚିତ ଦୃଷ୍ଟି ଦେବା ଦରକାର । ବିଭିନ୍ନ ବୃତ୍ତିପାଇଁ ସାମର୍ଥ୍ୟ ଅର୍ଜ୍ଜନକରି ଆମ ନାରୀସମାଜ ଯେ ଏକ ବୋଝ, ଏହି କଳଙ୍କରୁ ମୁକ୍ତ ହେବେ ଏବଂ ଏଥିପାଇଁ ଶ୍ରମ, ସାହସିକତା ଓ ଅଧ୍ୟବସାୟର ଚାକ୍ଷୁଷ ପ୍ରମାଣ ଦେବା ସଙ୍ଗେ ସଙ୍ଗେ ତ୍ୟାଗ, ସେବା, ବିନୟ ଓ ପରାର୍ଥପରତାର ମୂର୍ତ୍ତିମନ୍ତ ପ୍ରତୀକ ହୋଇ ରହିବେ । ମହିଳାମାନଙ୍କ ଶିକ୍ଷକ ପ୍ରଶିକ୍ଷଣ ଏହିପରି ପରିବର୍ତ୍ତିନ ଓ ପରିମାର୍ଜିତ ହେବା ଉଚିତ । ଏହି ନୂତନ ଦୃଷ୍ଟିକୋଣ କେବଳ ପରୀକ୍ଷାରେ ପାସ୍‌ପାଇଁ ନୁହେଁ, ଏହା ସେମାନଙ୍କ ଜୀବନର ଅଙ୍ଗୀଭୂତ ହେବ ।

ପାଠପ୍ରତି ଅନାଗ୍ରହଜନିତ ଉଦାସୀନତା ଓ ଉପେକ୍ଷା ଯେତିକି ପ୍ରବଳ, ପାଠତ୍ୟାଗ ସେତିକି ଅଧିକ । ଏହା ଆମ ଶିକ୍ଷାର କଳଙ୍କିତ ସଂକଟ । ସେଥିଯୋଗୁଁ ଗ୍ରାମାଞ୍ଚଳ ଓ ସେଥିରେ ନାରୀସମାଜ ବିଶେଷଭାବେ କ୍ଷତିଗ୍ରସ୍ତ । ଏହା ଫଳରେ ଅନଗ୍ରସର ନାରୀସମାଜ ଅଧିକରୁ ଅଧିକ ଅନଗ୍ରସର । ଏହାକୁ ଦୂର କରିବା ପାଇଁ ଆଲୋଚନା, ବ୍ୟୟବରାଦ ଓ କାଗଜଚାଷ ବଢ଼ିବାରେ ଲାଗିଛି । କିନ୍ତୁ ଆମ ମତିଗତି ବଦଳୁନାହିଁ ଓ ଆମ ତତ୍‌ପରତା କାର୍ଯ୍ୟତଃ ବୃଦ୍ଧି ପାଉନାହିଁ । ଫଳରେ ଆମର ଉନ୍ନୟନ ବ୍ୟାହତ ହେଉଛି ଓ ସେଥିରେ ନାରୀସମାଜ ବଳହୀନ ଅବଳା ହୋଇ ରହିଯାଉଛନ୍ତି ।

ସମାନତା ତ ନିଶ୍ଚିତ କଥା । ପ୍ରତିଭାର ବିକାଶ ପାଇଁ ଆତୁରତା ସୁଯୋଗର ବ୍ୟବସ୍ଥା ଆଣିଦେବ ସମକକ୍ଷତା, ନାରୀ ଓ ପୁରୁଷର ସର୍ବୋତ୍ତମ ତଥା ସର୍ବାଧିକ ବିକାଶ । ପରଘରର ଝିଅଟାକୁ ପଛରେ ପକାଇ ଦେବା ଅପରାଧ । 'ପୁତ୍' ନାମକ ନରକରୁ ତାରକ ପୁଅ । ସେ ମୁଖାଗ୍ନି ଦେବ, ମଲାବେଳକୁ ମୁହଁରେ ପାଣି ଦେବ । ମନଭୁଲାଣିଆ କଥା । ଅଚଳନ୍ତି ପ୍ରଥା । ସେଥିପାଇଁ ବଂଶରେ ଝିଅଟା ହୀନ, ହୀନମନା ଓ ହିନସ୍ତା । ପୁଅଟାକୁ କେତେ ସ୍ନେହ, ସରାଗ, କ୍ଷୀର କଦଳୀ । ଠିକ୍ ନ୍ୟାୟ ହେଲା କି ? ବାଲୁତବେଳରୁ ଝିଅଜନମ ଚୁଲି ମୁଣ୍ଡକୁ । ତେବେ ପୁରୁଷମାନଙ୍କ ସହ ସେ କାନ୍ଧ ମିଳାଇ ଦେଶର ପ୍ରଗତି ରଥକୁ

ଟାଣିବ କିପରି । ସମସ୍ତଙ୍କ ପ୍ରତି ସମାନ କର୍ତ୍ତବ୍ୟ ଓ ସମସ୍ତଙ୍କର ସମାନ ଅଧିକାର । ଏ ଦିଗରେ ପରିବର୍ତ୍ତନର ହାୱା ଗାଁଗହଳ ଓ ବସ୍ତି ଅଞ୍ଚଳରେ ଖେଳାଇ ଦେବା ଆବଶ୍ୟକ । ନୋହିଲେ ଆମ ଉନ୍ନତି ଓ ଉନ୍ନୟନ ଆଗେଇ ପାରିବ ନାଇଁ ।

ସମାନ ଓ ଆବଶ୍ୟକ ଅନୁରୂପ ସୁଯୋଗ ପାଇବା ବାଳିକା ଓ ମହିଳାମାନଙ୍କର ଅଧିକାର । ଏଇଟା କାହାର ଦାନ ଓ ଦୟା ନୁହେଁ କିମ୍ବା କାହାପ୍ରତି ଦକ୍ଷିଣା ନୁହେଁ । ଏହି ଦୟାରୁ ସମ୍ଭବତଃ ଯୌତୁକ ଆରମ୍ଭ ହୋଇ ଆଜି ସମାଜ ଉପରେ ଦାନବ ସାଜିଛି । ନାରୀଜୀବନକୁ ଚୂରମାର କରିଦେଉଛି, ନିର୍ଯାତନା, ଶୋଷଣ, କଷଣ, ଧର୍ଷଣ ଅକଥନୀୟ ଓ ଅସହଣୀୟ ହୋଇଛି । ଏସବୁ ଗଣତାନ୍ତ୍ରିକ ଜୀବନରେ ଏକାନ୍ତ ଅଶୋଭନୀୟ । ଏହି ଅଧିକାର ସାବ୍ୟସ୍ତ କରିବାକୁ ନାରୀମାନେ ଆଗଭର ହେବା ଉଚିତ । କିନ୍ତୁ ଅବଳାମାନେ ଏହା କରିପାରିବେ ତ ? ଭୌତିକ ବଳରେ କ'ଣ ଦେଶ ସ୍ୱାଧୀନ ହୋଇଛି । ଆତ୍ମବଳ ଓ ନ୍ୟାଯ୍ୟ ଅଧିକାର ପାଇବାରେ ବିଶ୍ୱାସହିଁ ଆମ ଆୟୁଧ ହୋଇଛି । ନାରୀଜୀବନର ସୁରକ୍ଷା ଓ ବିକାଶ ପାଇଁ ନାରୀଶକ୍ତି ସମର୍ଥ ହେବ ।

ଆମ ଦେଶର ଦାରିଦ୍ର୍ୟ, ଅଶିକ୍ଷା ଓ ନିରକ୍ଷରତା ଏ ଦିଗରେ ପ୍ରଧାନ ଅନ୍ତରାୟ । ଏସବୁ ଆମ ବିକାଶ ପ୍ରକ୍ରିୟାକୁ ଯେପରି ବ୍ୟାହତ କରୁଛି ନାରୀଶକ୍ତି ଓ ସମାନତା ସେତିକି ଆଗେଇ ପାରୁନାହିଁ । ଏହା ଏକ ବିଷବୃତ୍ତ । ଏଥିରୁ ରକ୍ଷା ପାଇବା ଦିଗରେ ନେତୃସ୍ଥାନୀୟା, ଶିକ୍ଷିତା ତଥା ସମର୍ଥା ମାଆ ଭଉଣୀମାନଙ୍କ ଦାୟିତ୍ୱ ଯଥେଷ୍ଟ ଅଛି । ବିଭିନ୍ନ ସ୍ତରରେ ଶିକ୍ଷା ପାଉଥିବା ନାରୀମାନେ ତ୍ୟାଗ ଓ ସେବା ବଳରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରି ପାରିବେ । ଶିକ୍ଷିତ ପୁରୁଷମାନେ ମଧ୍ୟ ସାମିଲ ହୋଇପାରିବେ । ସ୍ୱତନ୍ତ୍ର ନ୍ୟାସ ଗଠନ କରାଯିବା ଉଚିତ । ଏଥିରେ ପୁଞ୍ଜି ବିନିଯୋଗ କରାଗଲେ ଯୌତୁକ ଶଙ୍କାରୁ ମୁକ୍ତି ମିଳିବ । ପାରିବାରିକ ଜୀବନର ସୌରଭ, ସନ୍ତୋଷ ଶାନ୍ତି ଓ ଅଗ୍ରଗତି ସୁନିଶ୍ଚିତ ହେବ ।

ଏହି ସମାନତା ଆନ୍ଦୋଳନର ଅନ୍ତିମ ପରିଣତି ହେଉଛି ଆମ ଦେଶର ଅଗ୍ରଗତି ଓ ବିକାଶ । ଜନସଂଖ୍ୟାର ଅର୍ଦ୍ଧେକ ଦେଶର ବିକାଶ ଦୃଷ୍ଟିରୁ ଗଣନୀୟ ନୁହନ୍ତି । କାରଣ ଦେଶର ଉନ୍ନୟନ ପ୍ରତି ସେମାନଙ୍କର ଦାନ କ୍ୱଚିତ୍ ପରିଲକ୍ଷିତ ହୁଏ । ଆହୁରି ମଧ୍ୟ ନାରୀସମାଜର ଶତକଡ଼ା ୭୫ ଭାଗ ନିରକ୍ଷର । ଏମାନେ ଯନ୍ତ୍ରଣା ଜର୍ଜରିତ । ଅତଏବ ଦେଶର ପ୍ରଗତି କିପରି ସାଧିତ ହେବ ? ପ୍ରଗତି ଏକ ସାମଗ୍ରିକ ଅଭିଯାନ ଓ ଏହାର ବହୁବିଧ ଦିଗ ରହିଛି, ଯଥା—ଅର୍ଥନୀତି, ଶିକ୍ଷା, ସଂସ୍କୃତି, ସାହିତ୍ୟ, ଆଧ୍ୟାତ୍ମିକତା ଆଦି । ପୁରୁଷ ମହିଳା ଆଦି ସମସ୍ତଙ୍କର ସବୁସ୍ତରରେ ଏକନିଷ୍ଠ ସହଯୋଗ ଆବଶ୍ୟକ । ପରସ୍ପରର

ନିର୍ଭରଶୀଳତା ଓ ପରିପୂରକତା ପ୍ରଗତିର ଅଭିଯାନରେ ନିଶ୍ଚିତ ସହାୟକ । ଆହୁରି ମଧ୍ୟ ସମସ୍ତଙ୍କର ସର୍ବୋତ୍ତମ ସର୍ବାଧିକ ଦାନ ବ୍ୟକ୍ତିବିଶେଷଙ୍କ କ୍ଷମତା ଓ ପ୍ରତିଭା ଅନୁସାରେ ପ୍ରଗତିର ସ୍ରୋତକୁ ସମୃଦ୍ଧକରେ ।

ପରିଶେଷରେ ଏହା ସ୍ମରଣ କରିବାର କଥା ଯେ ଆମ ପାରିବାରିକ ଜୀବନ ବିଶ୍ୱବକ୍ଷରେ ଯୁଗେ ଯୁଗେ ଏକ ମହାନ୍ ଆକର୍ଷଣ ହୋଇ ରହିଛି । ପାଶ୍ଚାତ୍ୟ ଜଗତ ସମସ୍ତ ପ୍ରାଚୁର୍ଯ୍ୟ ଓ ସ୍ୱଚ୍ଛଳତା ସତ୍ତ୍ୱେ ନିଜେ ହିଁ ନିଜ ଉପରେ ଭାରାକ୍ରାନ୍ତ ହୋଇଛି ଓ ଭାରସାମ୍ୟ ହରାଇଛି । ପକ୍ଷାନ୍ତରରେ ଆମର ଉତ୍କଟ ଅଭାବ ସତ୍ତ୍ୱେ ପାରିବାରିକ ଜୀବନର ମହନୀୟତା ଆମକୁ ନିଜ ଭିତରେ ଓ ଅନ୍ୟମାନଙ୍କ ସହିତ ବିପର୍ଯ୍ୟସ୍ତ କରିପାରି ନାହିଁ । ଯଦିଓ ବେଳେବେଳେ ବିପଦର କଳାବଉଦ ଆମ ଆକ୍ଷିପଟଳକୁ ଘୋଟି ଯାଉଛି । କର୍ମର ଅଧିକାର ସହିତ କର୍ମର ପରିସର ପରିବ୍ୟାପ୍ତ ହେଉ ଓ ଦକ୍ଷତା ବୃଦ୍ଧିପାଉ । ଆମ ପୁତ୍ର କନ୍ୟା ଓ ଯୁବ ସମ୍ପ୍ରଦାୟ ସୁଦୃଢ଼ ହୋଇ ସମକକ୍ଷ ହୁଅନ୍ତୁ । ଦେଶ ଓ ବିଶ୍ୱ ଆମର ଏବଂ ସେଥିରେ ଯୋଗ୍ୟତା ଓ ଦକ୍ଷତା ପାଇଁ କୌଣସି ପ୍ରତିବନ୍ଧକ ନରହୁ । ଏଥିସହିତ ଆମ ସାଧନାର ପୀଠ ଓ ଜୀବନ ନିର୍ମାଣ କ୍ଷେତ୍ର ଭାବରେ ଆମ ପରିବାର ଓ ପାରିବାରିକ ଜୀବନ ସୁସଂହତ ଓ ଶ୍ରୀମଣ୍ଡିତ ହେଉ ।



# ସଦ୍‌ଭାବରୁ ସାର୍ବଜନୀନ ସଂହତି

ସାମାଜିକ ଜୀବନ ଧାରାରେ ସଦ୍‌ଭାବ ଅନିବାର୍ଯ୍ୟ ଓ ସଂସ୍କୃତ ଅଭ୍ୟାସର ଏକ ଶାଳୀନତାସର୍ବସ୍ୱ ଆଚରଣ କହିଲେ ଅତ୍ୟୁକ୍ତି ହେବନାହିଁ । ପରସ୍ପର ମଧ୍ୟରେ ସଦ୍‌ଭାବ ଏକ ସଭ୍ୟ, ମାର୍ଜିତ, ସଂସ୍କୃତ ସମାଜର ଆହ୍ନିକ ଓ ଆତ୍ମିକ ପରିଚୟ ।·ସଦ୍‌ଭାବ, ସ୍ନେହ, ମମତା, ଅନୁରକ୍ତି, ସଦିଚ୍ଛା, ଆନ୍ତରିକତା ଯେତେବେଳେ ପଶୁପରି ଇତର ପ୍ରାଣୀଙ୍କଠାରେ କେତେକାଂଶରେ ପରିଦୃଷ୍ଟ ହୋଇଥାଏ, ସେତେବେଳେ ଈଶ୍ୱରସୃଷ୍ଟି ଶ୍ରେଷ୍ଠ ଓ ଦିବ୍ୟଦ୍ରଷ୍ଟା ମନୁଷ୍ୟ ପାଇଁ ଏହାର ଆବଶ୍ୟକତା ଅପରିହାର୍ଯ୍ୟ । ସଦ୍‌ଭାବ ମନୁଷ୍ୟର ଏକ ବିଶେଷ ବିଶେଷଣ ବା ବ୍ୟକ୍ତିତ୍ୱର ଅଳଂକାର ଅଥବା ବିଶେଷ ଉପାଧି ନୁହେଁ । ବରଂ ଏହା ବଂଚିବାର ମୌଳିକ ନିୟମ ଓ ସାମାଜିକ ଶିଷ୍ଟାଚାର । ପରିବାର, ସମାଜ, ରାଷ୍ଟ୍ର, ବିଶ୍ୱ ଏସବୁ କ୍ଷେତ୍ରରେ ବ୍ୟକ୍ତି ଏକ ଗୋଷ୍ଠୀବଦ୍ଧ, ସମନ୍ୱୟଧର୍ମୀ ଜୀବନଧାରାରେ ଆବଦ୍ଧ । କୌଣସି ବ୍ୟକ୍ତି ସମାଜରେ ସ୍ୱୟଂସଂପୂର୍ଣ୍ଣ ଓ ନିର୍ଭରହୀନ ହୋଇ ବଂଚିପାରେ ନାହିଁ । ତେଣୁ ମନୁଷ୍ୟ ଏକ ଗୋଷ୍ଠୀବଦ୍ଧ ଜୀବନଧାରା ମଧ୍ୟରେ ସାମୂହିକ ଜୀବନାଦର୍ଶର ମାଙ୍ଗଳିକ ପରଂପରା ସୃଷ୍ଟି କରିଛି । ଜଣେ ବ୍ୟକ୍ତିର ଅଭାବ ଅନ୍ୟଠାରୁ ପୂରଣ ହେବା ଆଶାରେ ସମାଜ ବା ଗୋଷ୍ଠୀର ଉନ୍ମେଷ ଓ ସଭ୍ୟତାର ବିବର୍ତ୍ତିତ ଧାରା । ଏଣୁ ସଦ୍‌ଭାବର ଆବେଦନ ଏ ପରିପ୍ରେକ୍ଷୀରେ ନିଗୂଢ଼ ଓ ଗୁରୁତ୍ୱପୂର୍ଣ୍ଣ । ଏକ ସଭ୍ୟ ସମାଜର ବିଶେଷ ଚରିତ୍ର ହେଉଚି ବ୍ୟକ୍ତି ଓ ଗୋଷ୍ଠୀ ମଧ୍ୟରେ ଥିବା ସଦ୍‌ଭାବର ଆନ୍ତରିକ ପ୍ରଚେଷ୍ଟା ଓ ଏହାର କ୍ରମ ପ୍ରସାରଣ ।

ସଂସାରରେ ସଦ୍‌ଭାବ ଓ ଶ୍ରଦ୍ଧାମୟ ସମାଜ ଗଠନ ପାଇଁ ଭୂରି ଭୂରି ପ୍ରେରଣା ଧର୍ମଶାସ୍ତ୍ର ଓ ନୀତିଶାସ୍ତ୍ରରୁ ମିଳିଥାଏ । ଆଧାତ୍ମିକତା ପ୍ରତିଟି ବ୍ୟକ୍ତିକୁ ଅବିନାଶୀ ପରମାତ୍ମାଙ୍କର ଅଂଶ ବିଶେଷ ବୋଲି ସାବ୍ୟସ୍ତ କରିଥାଏ ଓ ପ୍ରତିଟି ଜୀବ ଶିବର ଅଂଶ ବିଶେଷ ଭାବରେ କ୍ରିୟାଶୀଳ ବୋଲି ପ୍ରମାଣ କରିଥାଏ । ସବୁରି ଆତ୍ମାରେ ପରମାତ୍ମାର ଦର୍ଶନ କରିବା ଏଥିପାଇଁ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଓ ସଦ୍‌ଭାବର ମୌଳିକ ଆଭିମୁଖ୍ୟ ପରି ମନେହୁଏ । ପରସ୍ପର ପ୍ରେମରେ ବାନ୍ଧି ହୋଇ ଏକ ଆନ୍ତରିକତାପୂର୍ଣ୍ଣ, ବୁଝାମଣା ପ୍ରସୂତ,

ସମ୍ବେଦନଶୀଳ ସମାଜଧାରା ସୃଷ୍ଟି କରିବା ହେଉଛି ସଦାଚାରର ବାସ୍ତବ ବର୍ଣ୍ଣନା । ବାହ୍ୟ ସଦାଚାର ବା ସଦ୍‌ଭାବର ଅନ୍ତରାଳରେ ଯେତେବେଳେ ସଂକୀର୍ଣ୍ଣ ସ୍ୱାର୍ଥ ଓ ନିଜସ୍ୱ ଛଳନା କ୍ରିୟାଶୀଳ ହୋଇଥାଏ, ଏହା ଯଥାର୍ଥ ସଦ୍‌ଭାବ ନୁହେଁ । ସଂସାରରେ ସଦ୍‌ଭାବ ପ୍ରତିଷ୍ଠା ପାଇଁ କେତେକ ମନସ୍ତାତ୍ତ୍ୱିକ ଓ ଆଧ୍ୟାତ୍ମିକ ପ୍ରସ୍ତୁତି ଆବଶ୍ୟକ ।

୧. ବ୍ୟକ୍ତି ଅନ୍ୟଠାରୁ ଯେଉଁ ଆଚରଣ, ଉଦାରତା, ସମ୍ବେଦନଶୀଳତା, ମହାନତା ଆଶାକରେ ସେ ଅନ୍ୟକୁ ସେପରି ଅନୁରୂପ ଆଚରଣ ପ୍ରଦର୍ଶନ କରିବା ଉଚିତ ।

୨. ନିଜକୁ ଅନ୍ୟଜଣେ ବ୍ୟକ୍ତି ବୁଝିବା ଯେପରି ଆଶାକରେ ସେପରି ସେ ଅନ୍ୟକୁ ବୁଝିବାର ଉଦାରତା ରଖିବା ଆବଶ୍ୟକ ।

୩. ଏକ ପ୍ରେମମୟ ଜୀବନର ପାରମାର୍ଥିକ ଗୌରବ, ହୃଦୟଦାନର ମହାନ୍ ମୂଲ୍ୟବୋଧ କିପରି ମହାମୁକ୍ତିର ବାର୍ତ୍ତାବହ ଏହା ବ୍ୟକ୍ତି ଅନୁଭବ କରି ବୁଝିବା ଦରକାର ।

୪. ସଦ୍‌ଭାବ ଦ୍ୱାରା ବ୍ୟକ୍ତି ନିଃସ୍ୱ, ଅକିଂଚନ ଅସହାୟ ନ ହୋଇ ନିଜକୁ ଦକ୍ଷ ଓ ସାମାଜିକ ଜୀବନଧାରାରେ ଗୌରବାନ୍ୱିତ କରିବାର ସୌଭାଗ୍ୟ ଲାଭ କରିଥାଏ ।

୫. ବ୍ୟକ୍ତି ରିକ୍ତ ହୋଇ ସୁଦ୍ଧା ସଦ୍‌ଭାବ ଦ୍ୱାରା ଅନ୍ୟର ସାହଚର୍ଯ୍ୟରେ, ଅବଲମ୍ବନରେ, ବିଶ୍ୱାସରେ ସ୍ୱୟଂସଂପୂର୍ଣ୍ଣ, ପରିପୂର୍ଣ୍ଣ ଓ ମହିମାଦୀପ୍ତ ହୋଇଉଠେ । ସଦ୍‌ଭାବ ପାଇଁ କୌଣସି ମୂଲ୍ୟ ନଦେଇ ବ୍ୟକ୍ତି ସାର୍ଥକତା ଲାଭ କରିପାରେ । Politeness costs nothing, but gains everything.

୬. ସଦ୍‌ଭାବ ବ୍ୟକ୍ତି ବକ୍ତି ମଧ୍ୟରେ, ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ, ଦେଶ ଦେଶ ମଧ୍ୟରେ ଏକ ସଂଯୋଜକ ସେତୁ ନିର୍ମାଣ କରିପାରେ, ଏକ ସୁସ୍ଥ, ସମୃଦ୍ଧ, ଶୃଙ୍ଖଳିତ ସାମାଜିକ ବ୍ୟବସ୍ଥା ଓ ମାନବସମାଜର ମୂଲ୍ୟବୋଧ ସୃଷ୍ଟିକରିପାରେ । ଏହି ବିଶ୍ୱାସରେ ବ୍ୟକ୍ତି ନିଜକୁ ଗଠନ କରିବା ଆବଶ୍ୟକ ।

୭. ବ୍ୟକ୍ତିର ମାନସିକ, ମନସ୍ତାତ୍ତ୍ୱିକ, ଆଧ୍ୟାତ୍ମିକ, ପାରମାର୍ଥିକ ଓ ଜାଗତିକ ସିଦ୍ଧିପାଇଁ ମଧ୍ୟ ସଦ୍‌ଭାବର ଆହ୍ନିକ ଆଚରଣ ଗୁରୁତ୍ୱପୂର୍ଣ୍ଣ ।

୮. ସଦ୍‌ଭାବ ଦ୍ୱାରା ମନୁଷ୍ୟ ଅନ୍ୟର ଆଶୀର୍ବାଦ, ପୃଷ୍ଠପୋଷକତା ପାଇବାକୁ ଯେପରି ଯୋଗ୍ୟ ହୋଇପାରେ, ବିପ୍ଳବ ଘୃଣା, ଅଧିକାର ଦ୍ୱାରା ସେପରି ସ୍ଥିର ଆଶିଷ ପ୍ରାପ୍ତ ହୋଇପାରେ ନାହିଁ ।

୯. ସଦ୍‌ଭାବ ସବୁବେଳେ ଆନ୍ତରିକ, ନିଷ୍ଠାବାନ୍ ନିଃସ୍ୱାର୍ଥପର ହେବା ଆଶା କରାଯାଏ ।

ବର୍ତ୍ତମାନ ସମାଜର ଚଳନ୍ତିଧାରାରେ ସଦ୍‌ଭାବ, ସ୍ନେହ, ମମତାର ଛନ୍ଦ ଅତିମାତ୍ରାରେ ବ୍ୟାହତ ହେବାପରି ମନେହୁଏ । ଶିଳ୍ପ ସଭ୍ୟତା, ଯନ୍ତ୍ରଶିଳ୍ପ, ବିଜ୍ଞାନର ଯାଦୁକରୀ ମାୟା ମଧ୍ୟରେ ଆବହମାନ କାଳର ଧର୍ମବିଶ୍ୱାସ, ଆତ୍ମକୈନ୍ଦ୍ରିକ ଚେତନା ବାଧାପ୍ରାପ୍ତ ହେଉଥିବାର ମନେହୁଏ । ସ୍ଥୂଳ ସଂସାରର ମାନଚିତ୍ର ଏବେ ଯେପରି ଚିତ୍ତାକର୍ଷକ, ଝଲକମୟ, ଚାରୁକଳାର ଶୋଭମାନ ରୂପ ବହନ କରିଛି, ସୃଷ୍ଟିର ଆଭ୍ୟନ୍ତରୀଣ, ଆତ୍ମିକ ରୂପ, ସେପରି ମହାନୁଭବ ହୋଇପାରୁନାହିଁ । ସମଗ୍ର ସୃଷ୍ଟି ଏବେ ପାଶବିକତା ଓ ଆସୁରିକ ବିଭୂତିର ଶିକାର ହୋଇଛି । ବାହ୍ୟ ଚାକଚକ୍ୟମୟ ସଭ୍ୟତାର ସୁନେଲି ପରଦା ଅନ୍ତରାଳରେ ମଣିଷର ଗୋପନ କୁଷ୍ଠବ୍ୟାଧି ସେପରି ସଜୀବ ରହିଛି । ଗୋଟିଏ କାଚଘରେ ଥାଇ ମଧ୍ୟ ପରସ୍ପରକୁ ଘୃଣା କରିବା, ଅବିଶ୍ୱାସ କରିବା, ଏବେ ମନୁଷ୍ୟକୁ ଏକ ଏକ ଯନ୍ତ୍ରବଦ୍ ପଶୁରେ ପରିଣତ କରିଛି । ମଣିଷ୍ ଭିତରେ ଦୈବୀ ବିଭୂତିର ଭ୍ରୂଣ ଅବଲୁପ୍ତ ହୋଇ ଆସୁରିକ ସିଦ୍ଧିର ଉଦଗ୍ର ମୋହ ଅଧିକ ପ୍ରଭାବଶାଳୀ ହୋଇ ଉଠୁଛି । ହିଂସା, ଦ୍ୱେଷ, ଘୃଣା, ତୁଚ୍ଛ ସ୍ୱାର୍ଥଚିନ୍ତା, ବ୍ୟକ୍ତିକୈନ୍ଦ୍ରିକତା, ଭୌତିକବାଦ, ବସ୍ତୁବାଦୀ ଚନ୍ତା, ନିମ୍ନ ମନସ୍ତତ୍ତ୍ୱ, ମନୁଷ୍ୟକୁ ଅଧଃପତନ ଅଭିମୁଖୀ କରୁଛି । ତେଣୁ ସଦ୍‌ଭାବ ସାର୍ବଜନୀନ ସଂହତିର ଆଶା ଏବେ ଦିବାସ୍ୱପ୍ନ ହୋଇଯାଉଛି । ସଂହତି ହେଉଛି ସଦ୍‌ଭାବଦ୍ୱାରା ପ୍ରତିଷ୍ଠିତ ଏକ ଆନ୍ତରିକତାପୂର୍ଣ୍ଣ ସାମାଜିକ ଅନୁଷ୍ଠାନର ବୁଝାମଣାସର୍ବସ୍ୱ ପରଂପରା । କୌଣସି ରାଷ୍ଟ୍ର, ସମାଜ ବା ଜାତିରେ ସଂହତିକୁ ରାଜନୈତିକ କଥନ ବା ପାର୍ଲିଆମେଣ୍ଟ ଆଇନ୍ ବଳରେ ହାସଲ କରାଯାଇ ପାରେ ନାହିଁ । ସଂହତିର ସୃଷ୍ଟିପାଇଁ ବା ଏକତାର ପ୍ରତିଷ୍ଠା ପାଇଁ କୌଣସି ଔଷଧ ଦେଇ ଏହାର ସାଧନ କରାଯାଇ ପାରେ ନାହିଁ । ସଂହତିର ପ୍ରତିଷ୍ଠା ସଂପୂର୍ଣ୍ଣ ଭାବରେ ଆଧ୍ୟାତ୍ମିକ ରୁଚି, ଆତ୍ମିକ ଚେତନା, ମହାନୁଭବ ଚିନ୍ତାଧାରା ଓ ଅନ୍ତର୍ମୁଖୀ ଭାବନା ଦ୍ୱାରା ସମ୍ଭବ । ଦେଶରେ, ରାଜ୍ୟରେ, ବିଶ୍ୱରେ ସଂହତି ପ୍ରତିଷ୍ଠିତ ହେବାର ଅର୍ଥ ନୁହେଁ ଯେ ସବୁ ବହୁଧର୍ମୀ ଗୋଷ୍ଠୀ, ଧର୍ମ, ସଂପ୍ରଦାୟ, ଜାତି, ବର୍ଣ୍ଣକୁ ବିଲୋପ କରାଯିବ । ସବୁବେଳେ ବିଶ୍ୱରେ ଏପରି ବିଭେଦାତ୍ମକ, ବିରୋଧୀଧର୍ମୀ ଅନୁଷ୍ଠାନ ବା ଗୋଷ୍ଠୀ ରହିଥିବ ନିଶ୍ଚୟ । ସେହିପରି ଅସାମଞ୍ଜସ୍ୟତା, ଅସାମ୍ୟ ମଧ୍ୟରେ ଯେଉଁ ପରସ୍ପର ବୁଝାମଣା ଓ ପ୍ରେମସର୍ବସ୍ୱ ଜୀବନ ଧାରା ସୃଷ୍ଟି କରାଯାଏ, ଏହା ହେଉଚି ସଂହତିର ବାସ୍ତବ ପରିଚୟ । ସଂହତିର ସଂଜ୍ଞା ଅତି ମାତ୍ରାରେ ପାରମାର୍ଥିକ, ଆତ୍ମିକ, ଆଧ୍ୟାତ୍ମିକ ଓ ମନସ୍ତାତ୍ତ୍ୱିକ । ସମାଜରେ ବହୁ ଗୋଷ୍ଠୀର ସମାବେଶ ସଂହତି ରେ ପ୍ରତିବନ୍ଧକ ସୃଷ୍ଟି କରେନାହିଁ । ବରଂ ପରସ୍ପର ମଧ୍ୟରେ

ସହନଶୀଳତାର ଓ ବୁଝାମଣାର ଦୈନ୍ୟହିଁ ଏହାକୁ ବ୍ୟାହତ କରିଥାଏ । ଗୋଟିଏ ଗୋଷ୍ଠୀ ବା ଜାତିର ମାନଦଣ୍ଡ ଯାହା, ଅନ୍ୟର ମାନଦଣ୍ଡ ତାହା ନୁହେଁ । ସେଥିପାଇଁ ସଂହତିର ଆବଶ୍ୟକତା ଜରୁରୀ ଓ ଅପରିହାର୍ଯ୍ୟ । ଏଥିପାଇଁ ଉଚ୍ଚାରଣ ଓ ଆଚରଣର ଭାରସାମ୍ୟ ପ୍ରତିଷ୍ଠା ଏକାନ୍ତ ଆବଶ୍ୟକ । ସଂହତି ଏକ ଅଢ଼େଇଦିନିଆଁ ସଭା ସମିତି, ଯୋଜନା, ସ୍ଲୋଗାନ୍ ବା ସମ୍ବାଦପତ୍ରରେ ପ୍ରକାଶିତ ରଚନା ଦ୍ୱାରା ସମ୍ଭବ ନୁହେଁ । ଏହାର ପ୍ରତିଷ୍ଠା ପାଇଁ ଏକ ଆନ୍ତରିକ, ଆଧାତ୍ମିକ ଓ ମନସ୍ତାତ୍ତ୍ୱିକ ନିଷ୍ଠା ଆବଶ୍ୟକ । ଏବେ ସଦ୍‌ଭାବ ଓ ସଂହତି ପାଇଁ ବହୁ ଆୟୋଜନ ବ୍ୟର୍ଥ ହେବାର କାରଣ ହେଉଛି ଉଚ୍ଚାରଣ ଓ ଆଚରଣ ମଧ୍ୟରେ ବିରାଟ ପ୍ରଭେଦ । ସ୍ଥୂଳ ଦୃଷ୍ଟି, ସ୍ଥୂଳ ବିଚାରବୋଧ ଦ୍ୱାରା ଆମେ ଅନ୍ତର୍ମୁଖୀ ହୋଇ ପାରୁନୁ ଓ ମନୁଷ୍ୟ ମଧ୍ୟରେ ଥିବା ଆତ୍ମିକ ସମ୍ବନ୍ଧକୁ ବ୍ୟବସାୟୀ ସମ୍ବନ୍ଧଠାରୁ ନ୍ୟୂନ ମନେ କରିଛୁ, ଏହାହିଁ ସଂହତିର ଘୋର ଅନ୍ତରାୟ ।

ଏବେ ସଂହତି ପ୍ରତିଷ୍ଠା କରିବାକୁ ହେଲେ ଆମକୁ କେତେକ ମୌଳିକ ଦର୍ଶନ ପ୍ରତି ଦୃଷ୍ଟି ଦେବାକୁ ହେବ—

୧. ବହିର୍ମୁଖୀ ଚେତନା, ତୁଚ୍ଛ ମର୍ଯ୍ୟାଦାଗ୍ରସ୍ତ ଚିନ୍ତାକୁ ଅନ୍ତର୍ମୁଖୀ କରିବାକୁ ହେବ । ମଣିଷର ବାହ୍ୟ ଜାଗତିକ, ରାଷ୍ଟ୍ରୀୟ, ସାଂପ୍ରଦାୟିକ ଚରିତ୍ର ଅପେକ୍ଷା ତାର ଆଧାତ୍ମିକ ସ୍ୱରୂପକୁ ଆବିଷ୍କାର କରିବାକୁ ହେବ । ଏହାହିଁ ପ୍ରାଥମିକ ପଦକ୍ଷେପ ।

୨. ସଂହତି ସମ୍ବନ୍ଧରେ ଶିକ୍ଷାନୁଷ୍ଠାନରେ ଖୁବ୍ ଗୁରୁତ୍ୱର ସହ ଅଧ୍ୟାପନା ଆବଶ୍ୟକ ।

୩. ଜାଗତିକ ସିଦ୍ଧି ସହିତ ଆମକୁ ଆଧାତ୍ମିକ ସିଦ୍ଧିପ୍ରତି ଯତ୍ନବାନ୍ ହେବାକୁ ହେବ ।

୪. ଉଚ୍ଚାରଣ ଓ ଆଚରଣ ପ୍ରତି ନିବିଡ଼ ସମନ୍ୱିତ ଦୃଷ୍ଟି ଦେବାକୁ ହେବ ।

୫. ସବୁ ଗୋଷ୍ଠୀ ମଧ୍ୟରେ ଉତ୍ତମ ବୁଝାମଣା ପ୍ରତିଷ୍ଠା କରାଯିବ ।

୬. ଧର୍ମ ଧର୍ମ ମଧ୍ୟରେ ସହନଶୀଳତା, ଉଦାର ବୁଝାମଣା, ସାର୍ବଜନୀନ ଭ୍ରାତୃଭାବ ପ୍ରତିଷ୍ଠା କରାଯିବ ।

୭. ଦକ୍ଷ ନେତୃତ୍ୱ, ଦୁର୍ନୀତିମୁକ୍ତ ଶାସକର ନିର୍ବାଚନ କରାଯିବ ।

୮. ନୈତିକତାର ମାନବୃଦ୍ଧି କରି ଧନଲିପ୍‌ସା, ଅର୍ଥଲୋଲୁପତା ପରିହାର କରାଯିବ ।

୯. ବାରମ୍ବାର ଧର୍ମାନୁଷ୍ଠାନରେ ଏକତ୍ରିତ ହେବାର ପରଂପରା ସୃଷ୍ଟି କରିବା ଓ ପୁରାତନ ଧର୍ମଶାସ୍ତ୍ରର ବହୁଳ ପ୍ରଚାର କରିବା ।

୧୦. ଗଣମାଧ୍ୟମର ସହାୟତାରେ ସଂହତି ଉପରେ ଶିକ୍ଷା ପ୍ରଦର୍ଶନ ।

